# ଅନେକ ଆକାଶ

ସଂପାଦନା ଓ ସଂକଳନ : **ଡଃ ସଂଗ୍ରାମ ଜେନା** □ ପ୍ରକାଶକ : **ଅକ୍ଷର,** କଲ୍ୟାଣୀ ନଗର, କଟକ - ୧୩ □ ମୁଦ୍ରଣ : ଟେକ୍‌ନୋ ଆର୍ଟସ ଅଫ୍‌ସେଟ୍, କଲ୍ୟାଣୀନଗର, କଟକ-୧୩ □

ମୂଲ୍ୟ: ଟ. ୭୫/-

ପ୍ରଚ୍ଛଦ : ରଂଜିତ୍ ପରିଜା

ପ୍ରଥମ ପ୍ରକାଶ : ୨୦୦୦

# ANEKA AKASH

Edited & Compiled by : **Dr. Sangram Jena** □ Publisher : **AKSHARA**, Kalyani Nagar, Cuttack-753 013 □ Printed at : Techno Arts Offset, Kalyani Nagar, Cuttack-13 □ Price : Rs.75/-

Cover : Ranjit Parija

First Edition : 2000

# ସୂଚୀ

# ଆରମ୍ଭ

***ନିଶାନ୍ତ*** ପତ୍ରିକା ପ୍ରକାଶ କରିବାବେଳେ ଅନୁବାଦ ଉପରେ ଗୁରୁତ୍ୱ ଦେବା ଏହାର ଅନ୍ୟତମ ଆଭିମୁଖ୍ୟ ଥିଲା । ସାହିତ୍ୟରେ ଦେଶ, ଭାଷା, ଜାତି, ରଂଗ, ସମୟ ଓ ସଂସ୍କୃତିର ବନ୍ଧବାଡ଼ ନଥାଏ । ଏଣୁ ପୃଥିବୀର ଯେକୌଣସି ଭାଷାରେ, ଯେକୌଣସି ପ୍ରାନ୍ତରେ, ଯେକୌଣସି ସମୟରେ ସୃଷ୍ଟି ହେଉଥିବା ସାହିତ୍ୟ ଆମ ପାଇଁ ପଠନଯୋଗ୍ୟ । ଝର୍କାଟିଏ ଖୋଲି ବାହାରକୁ ଚାହିଁ ନଈ, ପାହାଡ଼, ଜହ୍ନ, ତାରା ଦେଖିଲା ଭଳି, ନିଶାନ୍ତ ଓଡ଼ିଆ ପାଠକଙ୍କୁ ସାରା ବିଶ୍ୱର ସାହିତ୍ୟ ସହ ସଂପୃକ୍ତ କରାଇବାର ପ୍ରୟାସ କରିଛି । ଚିଲ୍ଲୀରୁ ଚୀନ୍, ନାଇଜେରିଆରୁ ନୂଆଦିଲ୍ଲୀ, ପୁଣି ମାର୍କ୍ୱେଜ୍‌ଙ୍କ ଠାରୁ ମୋରିସନ୍, ଆଚିବିଙ୍କ ଠାରୁ ଅକ୍ତାଭିଓ, କ୍ୱାସିମୋଦୋଙ୍କ ଠାରୁ କାୱାବାତାଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ନିଜସ୍ୱ ସାଂସ୍କୃତିକ ପୃଷ୍ଠଭୂମିରେ ଅନୁବାଦ କରାଇବାର ପ୍ରୟାସ କରାଯାଇଛି । ସେହି ଅନୂଦିତ ଗଳ୍ପଗୁଡ଼ିକର ସଂକଳନ ହିଁ *ଅନେକ ଆକାଶ* ।

ଗୋଟିଏ ଲେଖାକୁ ଅନୁବାଦ କରିବା ଅର୍ଥ ସେ ଲେଖକ, ତା' ସମୟ, ସମାଜ ଓ ସଂସ୍କୃତିକୁ ଅନୁସୃଜନ କରିବା । ଅନୁବାଦର ଏହି ଅନାହତ ଧାରା ବିଶ୍ୱସାହିତ୍ୟ ସହ ଆମ ପାଠକଙ୍କୁ ପରିଚିତ କରାଇବା ସଙ୍ଗେ ସଙ୍ଗେ ଆମ ସାହିତ୍ୟକୁ ଯେ ପ୍ରକାରାନ୍ତରେ ପରିପୁଷ୍ଟ କରିବ, ଏହା ଦ୍ୱିଧାହୀନ ଭାବେ ସ୍ୱୀକାର କରାଯାଇପାରେ । ଅନୁବାଦ କରିବା ସମୟରେ ଏହି ପ୍ରସଂଗ ହିଁ ଥିଲା ମୁଖ୍ୟ, କୌଣସି ଗୋଟିଏ ଅନୁବାଦର ସଫଳତା ବା ବିଫଳତା ଏଠି ଗୌଣ ।

ଏଥିରେ ସନ୍ନିବିଷ୍ଟ ସମସ୍ତ ଗଳ୍ପର ଲେଖକ, ତାଙ୍କ ମୂଳଲେଖାର ପ୍ରକାଶକ ଓ ଅନୁବାଦକଙ୍କ ନିକଟରେ ଆମେ ଗଭୀର ଭାବରେ କୃତଜ୍ଞ ।

— *ସଂଗ୍ରାମ ଜେନା*

## ଅନୁବାଦକ :

ଅରବିଂଦ ବେହେରା
ନରେନ୍ଦ୍ର ନାରାୟଣ ଦାସ
ସଂଗ୍ରାମ ଜେନା
ଅରୁଣ କୁମାର ମହାନ୍ତି
ବିଜୟ କୁମାର ନଂଦ
ଗୁରୁଚରଣ ବେହେରା
ଦୀପକ୍ ସାମନ୍ତରାୟ
ଶକୁନ୍ତଳା ବଳିଆରସିଂ
ଲୋହିତାକ୍ଷ ଯୋଶୀ
ସୁରମଣି ଖମାରୀ
ରବି ମାଝୀ
ପ୍ରଦୀପ ଦାସ

# ଗାବ୍ରିଏଲ୍ ଗାର୍ସିଆ ମାର୍କ୍ୱେଜ୍

ନୋବେଲ୍ ପୁରସ୍କାର ପାଇବାର ଗୋଟିଏ ବର୍ଷ ପୂର୍ବରୁ ଗାବ୍ରିଏଲ୍ ଗାର୍ସିଆ ମାର୍କ୍ୱେଜ ଏକ ସାକ୍ଷାତ୍‌କାରରେ କହିଥିଲେ – 'ଜଣେ ଖ୍ୟାତନାମା ଲେଖକକୁ ଲେଖାଲେଖି ଚଳାଇ ରଖିବାକୁ ହେଲେ ନିଜକୁ ଯଶ ବା ଖ୍ୟାତିଠାରୁ ସଦାସର୍ବଦା ବଂଚେଇ ରଖିବା ଉଚିତ୍ ।' ଯେଉଁଥିପାଇଁ ନିଜର ରଚନାଗୁଡ଼ିକୁ ଯଦିବା କୌଣସି ସମ୍ମାନ ମିଳିବାର ଥାଏ, ତାହା ମରଣୋତ୍ତର ହେବା ଉଚିତ ବୋଲି ସେ ମତ ବ୍ୟକ୍ତ କରିଥିଲେ । କେବଳ ମାର୍କ୍ୱେଜଙ୍କ ପର୍ଯ୍ୟାୟର ଲେଖକମାନଙ୍କଠାରୁ ହିଁ ଏ ପ୍ରକାର ବିଚାରଧାରା ଆଶା କରାଯାଏ । ଜନ୍ମ ୧୯୨୮ ମସିହା । ବାଲ୍ୟକାଳ କଟେ କଲମ୍ବିଆରେ, ଅଜା, ଆଈଙ୍କ ଘରେ । ଶିକ୍ଷା ସମାପ୍ତି ପରେ ସାମ୍ବାଦିକ ଭାବେ ନିଜକୁ ପ୍ରସ୍ତୁତ କରିବା ସମୟରେ ପତ୍ରପତ୍ରିକାରେ ଗଳ୍ପଲେଖା ଆରମ୍ଭ କରନ୍ତି । କଳ୍ପନାର ସହର 'ମାକୋଣ୍ଡ'କୁ କେନ୍ଦ୍ର କରି ପ୍ରଥମ ଉପନ୍ୟାସିକା Leaf Storm ଲେଖନ୍ତି ୧୯୫୫ ମସିହାରେ । ସାମ୍ବାଦିକ ଭାବେ ୟୁରୋପର ବିଭିନ୍ନ ସ୍ଥାନରେ ରହି କ୍ୟୁବାକୁ ଆସନ୍ତି । ଆନ୍ତର୍ଜାତିକ ସ୍ତରରେ ଫିଡେଲ୍ କାଷ୍ଟ୍ରୋଙ୍କ ବିରୁଦ୍ଧରେ ହେଉଥିବା ପ୍ରଚାର ବିରୁଦ୍ଧରେ ଜନମତ ସୃଷ୍ଟି କରିବା ପାଇଁ ବାଗୋଟାକୁ ଆସି 'Presna Latine' ସଂଗଠନ ସହ ସଂପୃକ୍ତ ହୁଅନ୍ତି । ସଂଗଠନ ପାଇଁ ନ୍ୟୁୟର୍କରେ କିଛି ଦିନ କାମ କଲା ପରେ ସେ ମେକ୍‌ସିକୋ ଫେରି ଆସନ୍ତି । ମେକ୍‌ସିକୋରେ ଏଥର ନୂଆ କାମ – ସିନେମା ଓ ବିଜ୍ଞାପନ ଏଜେନ୍‌ସି ପାଇଁ । ଏ ମଧ୍ୟରେ ସେ No One Writes to the colonel (1958), In evil Hour (1962), Big Mama's funeral (1962) ପ୍ରଭୃତି ଲେଖି ସାରିଥାନ୍ତି । ୧୯୬୫ ମସିହାରେ ହଠାତ୍ ଚାକିରି ବାକିରି ଛାଡ଼ିଦେଇ ୧୮ ମାସ କାଳ ନିରବଚ୍ଛିନ୍ନ ଭାବରେ ଲେଖି ଚାଲନ୍ତି । ଯାହାର ଫଳ ହେଉଛି ଲାଟିନ୍ ଆମେରିକାର ଜୀବନ ପ୍ରବାହର ଜୀବନ୍ତ ସ୍ୱାକ୍ଷର ବହନ କରିଥିବା ବିଶ୍ୱବିଖ୍ୟାତ

ଉପନ୍ୟାସ One Hundred years of Solitude. (1967) ।
ତାଙ୍କର ବାଲ୍ୟକାଳର ସ୍ମୃତି ଓ ଅଭିଜ୍ଞତା ବ୍ୟତୀତ ଲାଟିନ୍ ଆମେରିକାର ସାମାଜିକ ଜୀବନରେ ପ୍ରଚଳିତ ମିଥ୍, କିମ୍ବଦନ୍ତୀ, ଅନ୍ଧବିଶ୍ୱାସ ପ୍ରଭୃତିକୁ ପାଥେୟ କରି ମାର୍କ୍ୱେଜ୍ ଏହି ଉପନ୍ୟାସଟିକୁ ଏକ ଅସାଧାରଣ ନୈପୁଣ୍ୟର ସହିତ ଗଢ଼ି ତୋଳିଛନ୍ତି, ଯେଉଁଥିରେ ଗୋଟିଏ ଅନୂଢ଼ା ଯୁବତୀର ନିଷ୍ପାପ ହୃଦୟ ପରବର୍ତ୍ତୀ କାଳର ପରିସ୍ଥିତି ଚାପରେ ଆଦରି ନେଇଥିବା ଗଣିକାର ଦାସତ୍ୱଭରା ଜୀବନର କରୁଣ ହୃଦୟସ୍ପର୍ଶୀ କାହାଣୀ ବର୍ଣ୍ଣିତ ହୋଇଛି । ନିତିଦିନିଆ ଜୀବନର ନିଃସଂକୋଚତାର ଏତେ ନିଖୁଣ ଚିତ୍ର ଖୁବ୍ କମ୍ ବିଶ୍ୱଉପନ୍ୟାସରେ ଦେଖାଯାଏ । ଏଥିରେ 'Magic Realism' ଶୈଳୀର ଯେଉଁ କଳାତ୍ମକ ଉତ୍କର୍ଷ ସେ ପ୍ରଦର୍ଶନ କରିଛନ୍ତି, ତା'ର ଉତ୍ସ ଥିଲା ତାଙ୍କ ଆଈଙ୍କର ଗପ କହିବାର ଭଙ୍ଗୀ, ଯେଉଁଥିରେ କାଳ୍ପନିକ, ଉଦ୍ଭଟ ଓ ଅଲୌକିକ କଥାଗୁଡ଼ିକୁ ସେ ଅତ୍ୟନ୍ତ ସାବଲୀଳତାର ସହ ବର୍ଣ୍ଣନା କରୁଥିଲେ । ତାଙ୍କର ଅନ୍ୟାନ୍ୟ ପୁସ୍ତକଗୁଡ଼ିକ ହେଲା The Autumn of the Patriarch (1971), Innocent Erendira (1972), Chronicle of a Death Foretold (1981). ୧୯୮୨ ମସିହାରେ ନୋବେଲ୍ ପୁରସ୍କାର ପାଇବା ପରେ ସେ ଲେଖିଥିବା ଉପନ୍ୟାସଗୁଡ଼ିକ ହେଲା Love in the time of cholera (1985) ଏବଂ ସାଇମନ୍ ବଲିଭର୍‌ଙ୍କ ଜୀବନୀ ଉପରେ ଆଧାରିତ ଉପନ୍ୟାସ The General in His Labyrinth (1989). ତାଙ୍କର ଗଳ୍ପ ସଂକଳନ Strange Pilgrims (1992), Of Love and Demons (1994) ଓ ଏବେ ପ୍ରକାଶ ପାଇଥିବା ତାଙ୍କର ଉପନ୍ୟାସ The News of a Kidnapping ।

Women who sold dreams ପ୍ରଥମେ ଗ୍ରାଣ୍ଟା ପତ୍ରିକାରେ ଓ ପରେ I sale my dreams ନାମରେ Strange Pilgrims ଗଳ୍ପ ସଂକଳନରେ ପ୍ରକାଶ ପାଇଥିଲା । ଯାହାର ଓଡ଼ିଆ ଅନୁବାଦ 'ସ୍ୱପ୍ନ ବିକୁଥିବା ଜଣେ ନାରୀ' ।

ଏକ ପରିତ୍ୟକ୍ତ ସହରରେ ପ୍ରଚଣ୍ଡ ଖରାରେ କଳାଛତା ଧରି କଳାପୋଷାକ ପରିହିତା ଜଣେ ମହିଳା ଓ ଝିଅଟିଏ ଚାଲୁଥିବାର ଦୃଶ୍ୟ ମାର୍କ୍ୱେଜଙ୍କୁ 'The Tuesday Siesta' ଗଳ୍ପଟିକୁ ଲେଖିବାର ପ୍ରେରଣା ଯୋଗାଇଥିଲା । Fragrance of Guavaରେ ଦେଇଥିବା ସାକ୍ଷାତକାର ଅନୁଯାୟୀ ଏଇଟି ତାଙ୍କର ଶ୍ରେଷ୍ଠ ଗଳ୍ପ । ଏଇ ଗଳ୍ପର ଓଡ଼ିଆ ଅନୁବାଦ 'ମଙ୍ଗଳବାର ଦି' ପହରର ନିଦ' ।

# ସ୍ୱପ୍ନ ବିକୁଥିବା ଜଣେ ନାରୀ

ସୂର୍ଯ୍ୟ କିରଣରେ ଝଲମଲ ଶାନ୍ତ ସକାଳ । ସମୟ ୯ଟା । ହାଭାନର ହୋଟେଲ୍ ରିଭିରାର ଛାତ ଉପରେ ବସି ଆମେ ବ୍ରେକ୍‌ଫାଷ୍ଟ ଖାଉଥାଉ, କୁଆଡୁ କେଜାଣି ଏ ଭୟଙ୍କର ଢେଉ ଆମ ଆଡ଼କୁ ମାଡ଼ି ଆସିଲା । ସମୁଦ୍ରକୂଳ ରାସ୍ତାରେ ଯାଉଥିବା ରାସ୍ତା ଓ ରାସ୍ତା କଡ଼ରେ ରଖା ଯାଇଥିବା ଅନେକ ମୋଟର ଗାଡ଼ିକୁ ସେ ଢେଉ ଶୂନ୍ୟକୁ ଉଠାଇ ଦେଇ ପୁଣି ତଳେ କଚାଡ଼ି ଦେଲା । ସେଥିରୁ ଗୋଟିଏ ଯେତେବେଳେ ଆମ ହୋଟେଲ୍ ନିକଟରେ କଚାଡ଼ି ହୋଇ ପଡ଼ି, ଡିନାମାଇଟ୍ ବିସ୍ଫୋରଣ ହେବା ପରି ଶବ୍ଦ ହେଲା, ହୋଟେଲ୍‌ର କୋଡ଼ିଏଟି ଯାକ ମହଲାରେ ଆତଙ୍କ ଖେଳିଗଲା । ଲବିଟି ଭଙ୍ଗା କାଚ ଗଦାରେ ପରିଣତ ହେଇଗଲା । ଅନେକ ଅତିଥି କାଚ ଟୁକୁରା ଆଘାତରେ ଖଣ୍ଡିଆ ଖାବରା ହୋଇଗଲେ । ହୋଟେଲ୍ ଓ ସମୁଦ୍ର ମଝିରେ ଗୋଟିଏ କାନ୍ଥ ଓ ଦୁଇପ୍ରସ୍ଥ ଚଉଡ଼ା ରାସ୍ତା, କିନ୍ତୁ ଜୁଆର ଏତେ ବିଶାଳ ଓ ଶକ୍ତିଶାଳୀ ଥିଲା ଯେ, ହୋଟେଲ୍‌ର କାଚ ଲଗା ବୈଠକଖାନାର ଅସ୍ତିତ୍ୱ ରହିଲା ନାହିଁ ।

ହୋଟେଲ୍‌କୁ ଗୋଟିଏ ବିକଳ୍ପ ପ୍ରବେଶ ପଥ ତିଆରି କରିବା ପାଇଁ ଫାୟାର ବ୍ରିଗେଡ଼ କର୍ମଚାରୀ ଓ ସ୍ୱେଚ୍ଛାସେବକମାନଙ୍କୁ ପ୍ରାୟ ଛ'ଘଣ୍ଟା ଅକ୍ଳାନ୍ତ ପରିଶ୍ରମ କରିବାକୁ ପଡ଼ିଲା । ସକାଳ ତମାମ୍ ହୋଟେଲ୍ କାନ୍ଥରେ ଧକ୍‌କା ଲାଗି ଭାଙ୍ଗି ପଡ଼ିଥିବା କାର୍‌ଟିକୁ କେହି ନଜର ଦେଇନଥିଲେ । ସମସ୍ତେ ଭାବିଥିଲେ ଯେ ରାସ୍ତା କଡ଼ରେ ରଖା ହୋଇଥିବା କାର୍‌ଗୁଡ଼ିକ ଭିତରୁ ଏହା ଗୋଟିଏ ହୋଇଥିବ । କ୍ରେନ୍‌ରେ ଗାଡ଼ିଟିକୁ ଉଠାଯିବା ପରେ ଯାଇ ଡ୍ରାଇଭର ସିଟ୍‌ରେ ଜଣେ ମହିଳା ବସିଥିବା କଥା ଜଣାପଡ଼ିଲା । ଦେହରେ ସିଟ୍ ବେଲ୍‌ଟ ଲାଗିଥାଏ ସେ ପର୍ଯ୍ୟନ୍ତ । ଏତେ ଜୋର୍‌ରେ ଧକ୍‌କା ଲାଗିଥିଲା ଯେ ତା' ଦେହରେ ଗୋଟିଏ ବି ହାଡ଼ ଅଭଙ୍ଗା ନଥାଏ । ମୁହଁକୁ ଚିହ୍ନି ହେଉ ନଥାଏ । ଦେହର ପୋଷାକ ବି ଟୁକୁରା ଟୁକୁରା ହୋଇ ଯାଇଥାଏ, ଜୋତା ଫାଟି ଯାଇଥାଏ । ଏହା ସତ୍ତ୍ୱେ ତା'ର ଆଙ୍ଗୁଳିରେ ପିନ୍ଧିଥିବା ମୁଦିଟି ଅତୁଟ ଥାଏ । ସାପ ଆକୃତିର ମୁଦିଟି । ସେ ମଧ୍ୟରେ ଗାଢ଼ ନୀଳ ସବୁଜ ମାଣିକ୍ୟ ଆଖି । ଏହା ଭିତରେ ସ୍ତ୍ରୀ ଲୋକଟି ନୂଆ ହୋଇ ଆସିଥିବା ରାଷ୍ଟ୍ରଦୂତ ଓ ତାଙ୍କ ପତ୍ନୀଙ୍କର ପରିଚାରିକା ପୋଲିସ୍ ପତ୍ତା ଲଗାଇ ସାରିଥା'ନ୍ତି । ବାସ୍ତବରେ ସେ ମାତ୍ର ପନ୍ଦର ଦିନ ତଳେ ରାଷ୍ଟ୍ରଦୂତଙ୍କ ସହ ସହରକୁ

ଆସିଥିଲା ଏବଂ ସକାଳେ ତାଙ୍କ ନୂଆ ଗାଡ଼ିରେ ବଜାରକୁ ଯାଇଥିଲା । ମୁଁ ଯେତେବେଳେ ଏ ଘଟଣା ଜାଣିଲି ମୋ ପାଇଁ ତା' ନାଁର କିଛି ଅର୍ଥ ନଥିଲା । କିନ୍ତୁ ତା'ର ସାପ ଆକୃତିର ମୁଦିଟି ମୋ ପାଇଁ ରହସ୍ୟାବୃତ ହୋଇ ରହିଗଲା । ଦୁର୍ଭାଗ୍ୟବଶତଃ ସେ କେଉଁ ଆଙ୍ଗୁଳିରେ ମୁଦିଟି ପିନ୍ଧିଥିଲା, ସେ କଥା ମୁଁ ଠଉରେଇ ପାରି ନଥିଲି ।

ମୋ ଭୟ ଥିଲା, ଏଇ ସ୍ତ୍ରୀ ଲୋକଟିକୁ ମୁଁ ହୁଏତ ଜାଣିଥିଲି, କିନ୍ତୁ ନାଁ ଜାଣି ନଥିଲେ ବି ତାକୁ ଭୁଲିବା ମୋଟେ ସମ୍ଭବ ନଥିଲା । ତା'ର ମଧ୍ୟ ମୁଦିଟିଏ ଥିଲା ସାପ ଆକୃତିର, ଯାହାର ଆଖିରେ ସବୁଜ ମାଣିକ୍ୟର ପଥର ଝଟକୁ ଥାଏ । ସେ ମୁଦିଟିକୁ ପିନ୍ଧିଥିଲା ଡାହାଣ ହାତର ପ୍ରଥମ ଆଙ୍ଗୁଠିରେ । ସେତେବେଳେ ସାଧାରଣତଃ ଇମିତି କେହି ପିନ୍ଧୁନଥିଲେ ।

ସେଦିନ ସକାଳେ ମୁଁ ରୋମ୍‌ରୁ ଫେରିଥାଏ । ତା'ର ଚେହେରା ମୋର **ସ୍ପଷ୍ଟ** ମନେ ପଡୁଛି । ପୂରିଲା ଛାତି, କୋଟ୍ କଲରର ଉପରେ ପଡ଼ିଥିବା ଛୋଟ ଛୋଟ ବେଣୀ ଏବଂ ସାପ ପରି ଦିଶୁଥିବା ମିଶରୀୟ ମୁଦିଟି । ସେ ସାମାନ୍ୟ ସ୍ପାନିଶ୍ ଭାଷା କହି ପାରୁଥାଏ । ଅଷ୍ଟ୍ରିଆ ଦେଶର ହୋଇଥିବ ଭାବି ମୁଁ ମନେ ମନେ ସ୍ଥିର କରିନେଲି । ପ୍ରକୃତରେ କିନ୍ତୁ ସେ୍ କଲମ୍ବିଆରେ ଜନ୍ମ ହୋଇଥିଲା ଏବଂ ଦୁଇ ବିଶ୍ୱଯୁଦ୍ଧ ମଧ୍ୟରେ ଗୀତ ଶିଖିବା ପାଇଁ ଅଷ୍ଟ୍ରିଆକୁ ଯାଇଥିଲା । ତାକୁ ସେତେବେଳେ ହୁଏତ ତିରିଶ ବର୍ଷ ହୋଇଥିବ, ଅଥବା କିଛି ବେଶୀ ବି ହୋଇପାରେ । ଏହା ସତ୍ତ୍ୱେ ତା' ଚେହେରାରେ ଯେମିତି କ'ଣ କୁହୁକ ଥିଲା !

ଚତୁର୍ଥ ଦଶକର ଶେଷଭାଗ ବେଳକୁ ଇତିହାସର କାଳଚକ୍ରରେ ଭିଏନା, ସାମ୍ରାଜ୍ୟର ଏକ ମହାନ୍ ନଗରୀର ସ୍ଥିତି ହରାଇ ପ୍ରାଦେଶିକ ରାଜଧାନୀରେ ପରିଣତ ହୋଇ ସାରିଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପୃଥକ୍ ହୋଇ ଯାଇଥିବା ଦୁଇ ଭୂଖଣ୍ଡର ମଝିରେ ଭିଏନା ଥିଲା କଳାବଜାର ଓ ଆନ୍ତର୍ଜାତିକ ଗୋଇନ୍ଦାଗିରି ପାଇଁ ଏକ ସ୍ୱର୍ଗ । ମୋର ପଳାତକ ସାଥୀଟି ପାଇଁ ଏହାଠାରୁ ଭଲ ସ୍ଥାନ ଆଉ କ'ଣ ହୋଇ ପାରିଥା'ନ୍ତା ? ଧନର ଅଭାବ ନଥିଲେ ବି ନିଜ ଅତୀତକୁ ମନେ ପକାଇବା ପାଇଁ ସେ ଛାତ୍ରମାନଙ୍କ ପାଇଁ ଉଦ୍ଦିଷ୍ଟ ରେସ୍ତୋରାଁରେ ଖାଉଥିଲା । ସେ ନିଜର ପ୍ରକୃତ ନାମ ଆମକୁ କେବେ କହିନଥିଲା । ଆମେ ସବୁବେଳେ ତାକୁ ଫ୍ରାଇଡ଼ା ବୋଲି ଡାକୁଥାଉ । ପରସ୍ପର ସହ ଭଲ ଭାବେ ପରିଚୟ ନ ହେଉଣୁ କଲମ୍ବିଆର ଅତି ଉଚ୍ଚ ପାର୍ବତ୍ୟ ଅଞ୍ଚଳରୁ ଏତେ ଦୂରକୁ ସେ କିପରି ଆସିଲା ବୋଲି ନ ପଚାରି ମୁଁ ରହି ପାରି ନଥିଲି । ନିରୁଦ୍‌ବିଗ୍ନ ଭାବେ ସେ କହିଲା, 'ମୁଁ ସ୍ୱପ୍ନ ଦେଖିବାକୁ ଭଲ ପାଏ ।'

ତାହା ହିଁ ଥିଲା ତା'ର ଜୀବିକା । ପୁରୁଣା କାଲଡାସ୍‌ର ଜଣେ ସମୃଦ୍ଧ ଦୋକାନୀର ଏଗାରଟି ସନ୍ତାନ ମଧ୍ୟରୁ ସେ ଥିଲା ତୃତୀୟ । କଥା କହି ଶିଖିବା ବେଳକୁ ସେ ନିଜେ ଦେଖିଥିବା ସବୁ ସ୍ୱପ୍ନ ଗଡ଼ଗଡ଼ କହିପାରୁ ଥିଲା । ବୋଧହୁଏ ପ୍ରାତଃ ସମୟରେ ହିଁ

ତା'ର କଳ୍ପନା ଶକ୍ତି ସବୁଠାରୁ ପ୍ରଖର ଭାବେ କାମ କରୁଥିଲା । ତାକୁ ଯେତେବେଳେ ମାତ୍ର ସାତ ବର୍ଷ, ତା' ସାନ ଭାଇ ଗୋଟିଏ ପ୍ରଖର ସ୍ରୋତରେ ଭାସି ଯାଉଥିବା କଥା ସେ ସ୍ୱପ୍ନ ଦେଖିଥିଲା । ଏଇ ପିଲାଟି ପହଁରିବାକୁ ସବୁଠାରୁ ବେଶି ଭଲ ପାଉଥିଲେ ମଧ ତା'ର ମା' ତାକୁ ମୋଟେ ନଦୀରେ ପହଁରିବା ପାଇଁ ଅନୁମତି ଦେଉ ନଥିଲେ । ପ୍ରତ୍ୟେକ ସ୍ୱପ୍ନର ନିଜେ ଅର୍ଥ ବାହାର କରୁଥିଲା ଫ୍ରାଇ ଫ୍ରିଡ଼ା । ତା' ସାନଭାଇ ନଈରେ ବୁଡ଼ି ଯାଉଥିବା ସ୍ୱପ୍ନର ଅର୍ଥ ନଥିଲା ଯେ ସତରେ ବୁଡ଼ି ଯାଇଥିଲା । ଏହାର ପ୍ରକୃତ ଅର୍ଥ ହେଲା ଯେ, ସେ ମିଠା ଖାଇବା ଅନୁଚିତ ।

ସ୍ୱପ୍ନର ଏପରି ଅର୍ଥ ବାସ୍ତବରେ ପାଞ୍ଚବର୍ଷର ପିଲାଟି ପାଇଁ ଏକ ବଡ଼ ଦଣ୍ଡ ଥିଲା । ଲମ୍ବା ଛୁଟି ଦିନମାନଙ୍କରେ ମିଠା ନ ଖାଇ ପାରିବାଠାରୁ ବଡ଼ ଦଣ୍ଡ କ'ଣ ବା ଥାଇପାରେ ? କିନ୍ତୁ ଝିଅର ଅଲୌକିକ ଶକ୍ତି ସମ୍ପର୍କରେ ମା'ଙ୍କ କିଛି ସନ୍ଦେହ ନଥିଲା ଏବଂ ତା'ର ଆଦେଶ ଯେପରି ପାଳନ ହୁଏ ମା' ଏଥିପାଇଁ ସତତ ଯତ୍ନ କରୁଥିଲେ । ଏହା ସତ୍ତ୍ୱେ ଗୋଟିଏ ଅସତର୍କ ମୁହୂର୍ତ୍ତରେ ଲଡୁଟିଏ ପିଲାଟିର ତଣ୍ଟିରେ ଲାଗିଗଲା ଏବଂ ତା'ପରେ ତାକୁ ବଞ୍ଚାଇବା ସମ୍ଭବ ନଥିଲା । ଭିଏନାର ପ୍ରବଳ ଶୀତରେ ଫ୍ରାଇ ଯେତେବେଳେ ଆଶ୍ରୟ ଖୋଜେ, ସ୍ୱାଭାବିକ ଭାବେ ପ୍ରଶ୍ନ ହୁଏ – 'ତୁମେ କ'ଣ କରି ପାରିବ ?' ସେ କହେ – 'ମୁଁ ସ୍ୱପ୍ନ ଦେଖି ପାରିବି' । ସଂକ୍ଷିପ୍ତ ଉପକ୍ରମଣିକା ପରେ ଗୃହକର୍ତ୍ତା ତା'କୁ ଘରକୁ ଡାକି ନିଅନ୍ତି ।

ଦରମା, ପକେଟ ଖର୍ଚ୍ଚ ଠାରୁ ସାମାନ୍ୟ ମାତ୍ର ଅଧିକ । କିନ୍ତୁ ରହିବା ପାଇଁ ଗୋଟିଏ ରୁଚିକର କୋଠରୀ ଏବଂ ଦିନକୁ ତିନିଥର ଖାଇବାକୁ ମିଳିଲା । ଏହାଛଡ଼ା ସବୁଦିନ ସକାଳେ ସମସ୍ତେ ବସି ଯେତେବେଳେ ଆପଣାର ଭବିଷ୍ୟତ ସମ୍ପର୍କରେ ଜାଣିବାକୁ ଚାହାନ୍ତି, ଜଳଖିଆଟା ମଧ ମିଳିଯାଏ । ଗୃହକର୍ତ୍ତା ଥିଲେ ଜଣେ ରୁଚିମନ୍ତ ଧନୀଲୋକ । ମା' ଖୁସି ମିଜାଜ୍‌ର, ରୋମାଣ୍ଟିକ୍ ସଂଗୀତରେ ସଉକ; ଆଉ ଏଗାର ଓ ନ'ବର୍ଷ ବୟସର ଦୁଇଟି ପିଲା । ସେମାନେ ସମସ୍ତେ ଧର୍ମଭୀରୁ ଥିବାରୁ ପୁରୁଣା କାଳିଆ ଅନ୍ଧବିଶ୍ୱାସରୁ ମୁକ୍ତ ନଥିଲେ । ପ୍ରତିଦିନ ସ୍ୱପ୍ନ ମାଧ୍ୟମରେ ପରିବାରର ଭାଗ୍ୟ ଓ ଭବିଷ୍ୟତ ସମ୍ପର୍କରେ ଶୁଣିବାକୁ ମିଳିବ ବୋଲି ସେମାନେ ସମସ୍ତେ ଫ୍ରାଇକୁ ସ୍ୱାଗତ କଲେ ।

ଏମିତି ଯୁଦ୍ଧ ବର୍ଷଗୁଡ଼ିକ ଫ୍ରାଇର ଭଲରେ କଟିଗଲା । ଏ ଦିନଗୁଡ଼ିକରେ ଦୁଃସ୍ୱପ୍ନଠାରୁ ଭୟଙ୍କର ଥିଲା ବାସ୍ତବତା । ସକାଳେ ଜଳଖିଆ ଟେବୁଲ୍ ଉପରେ ପରିବାରର ସବୁ ସଭ୍ୟ କିଏ କ'ଣ କରିବ, ଓ କିପରି କରିବ– ସେ ଠିକ୍ କରୁଥିଲା । ଏପରି ଭାବରେ ସମଗ୍ର ପରିବାର ଉପରେ ତା'ର କର୍ତ୍ତୃତ୍ୱ ଥିଲା ଅଖଣ୍ଡ ।

ଭିଏନାର ଜଣେ ଗରିବ ଛାତ୍ର ପରି ମୁଁ ମାସଟିଏ ସମୟ କଟାଇଲି । ଟଙ୍କାକୁ ଅପେକ୍ଷା କରୁଥାଏ, କିନ୍ତୁ ତାହା କେବେ ବି ଆସିଲାନି । ଏ ପରିସ୍ଥିତିରେ ଯେତେବେଳେ

ଫ୍ରାଇ ଫ୍ରିଡ଼ା ଆମ ରେସ୍ତୋରାଁକୁ ଅଚାନକ ଚାଲି ଆସୁଥିଲା, ଆମେ ଉଲ୍ଲସିତ ହୋଇ ପଡୁଥିଲୁ । ଦିନେ ସେ ମୋ କାନରେ ଫୁସ୍‌ଫୁସ୍ କରି କହିଲା, 'ମୁଁ କାଲି ଆପଣଙ୍କୁ ସ୍ୱପ୍ନରେ ଦେଖିଲି, ଆପଣ ତୁରନ୍ତ ଭିଏନା ଛାଡ଼ି ଚାଲି ଯାଆନ୍ତୁ ଏବଂ ପାଞ୍ଚବର୍ଷ ପାଇଁ ଏଠାକୁ ଆସନ୍ତୁ ନାହିଁ ।'

ସେଇ ରାତିରେ ହିଁ ରୋମ୍‌କୁ ଯାଇଥିବା ଶେଷ ଟ୍ରେନ୍‌ରେ ବସି ମୁଁ ଭିଏନା ଛାଡ଼ି ଚାଲି ଆସିଲି । ଆଜି ପର୍ଯ୍ୟନ୍ତ ମୁଁ ଆଉ କେବେ ସେଠାକୁ ଯାଇ ନାହିଁ ।

ହାଭାନାରେ ଏ ଘଟଣା ଘଟିବା ପୂର୍ବରୁ ଫ୍ରାଇ ଫ୍ରିଡ଼ା ସହିତ ମୋର ଆଉ ଥରେ ବାର୍ସେଲୋନାରେ ଦେଖା ହୋଇଥିଲା । ଏ ସାକ୍ଷାତ ହୋଇଥିଲା ରହସ୍ୟମୟ ପରିସ୍ଥିତିରେ । ଗୃହଯୁଦ୍ଧ ପରେ ସେ ଦିନ ପ୍ରଥମ ଥର ପାଇଁ ଚିଲ୍ଲିକୁ ଯିବା ରାସ୍ତାରେ ପାବ୍ଲୋ ନେରୁଦା ସ୍ପେନ୍ ଭୂଇଁରେ ପାଦ ଦେଇଥାନ୍ତି । ସକାଳଟି ସେ ଆମ ସହିତ କଟାଇଲେ । ପୁରୁଣା ବହି ଦୋକାନରୁ ଅଧିକ ମୂଲ୍ୟ ଦେଇ ଛିଣ୍ଡା ଜ୍ୟାକେଟ ଲାଗିଥିବା ଗୋଟିଏ ମଇଳା ବହି ସେ କିଣିଲେ । ହାତୀ ପରି ମଣିଷଟିଏ, କିନ୍ତୁ ଶିଶୁ ପରି ମନ । ପ୍ରତ୍ୟେକ ଜିନିଷ କିପରି କାମ କରୁଛି ଜାଣିବା ପାଇଁ ପ୍ରବଳ ଆଗ୍ରହ । ରେନାସାଁ ପୋପ୍‌ଙ୍କ ସହ ଏତେ ମେଳ ଥିବା ମୁଁ ଆଉ କାହାକୁ ଦେଖି ନାହିଁ । ଯେଉଁଠି ଥା'ନ୍ତୁ ନା କାହିଁକି ସେ ନିଜ ଉପସ୍ଥିତି ଜାହିର୍ କରିବେ ଅନାୟାସା ରେ । ପତ୍ନୀ ମାଟିଲ୍‌ଡ଼ା ତାଙ୍କ ବେକରେ ଆପ୍ରନ୍‌ଟିଏ ବାନ୍ଧିଦେଲେ – ଯାହା ଭଣ୍ଡାରି ଆପ୍ରନ୍ ପରି ଦେଖା ଯାଉଥାଏ । ଅବଶ୍ୟ ଆପ୍ରନ୍‌ଟି ନଥିଲେ ତାଙ୍କର ପୋଷାକ ସାରା ମସିଆ ଲାଗି ଯାଇଥା'ନ୍ତା । ନିଜ ପ୍ଲେଟରୁ ଖାଇବା ସଙ୍ଗେ ସଙ୍ଗେ ସେ ଅନ୍ୟମାନଙ୍କ ପ୍ଲେଟ୍ ଉପରେ ଆଖି ବୁଲାଇ ଆଣୁଥା'ନ୍ତି ଏବଂ ବିନା ଦ୍ୱିଧାରେ ଖାଇବା ଜିନିଷମାନ ଉଠାଇ ମଧ୍ୟ ଆଣୁଥାନ୍ତି । ପୃଥିବୀଯାକର ରୋଚକ ଖାଦ୍ୟ ଉପରେ ଆଲୋଚନା ମଧ୍ୟ ଚାଲୁଥାଏ । ହଠାତ୍ ସେ ଖାଇବା ବନ୍ଦ କରିଦେଲେ, ମୋତେ ଫୁସ୍‌ଫୁସ୍ କରି କହିଲେ, 'ଆମ ପଛରେ ବସି କିଏ ମୋତେ ବାରମ୍ବାର ଚାହୁଁଛି ?'

ମୁଁ ତାଙ୍କ କାନ୍ଧ ଉପରକୁ ଚାହିଁ ଦେଖିଲି ଟେବୁଲ୍‌ର ତିନିଧାଡ଼ି ପଛରେ ଜଣେ ସ୍ତ୍ରୀଲୋକ ପୁରୁଣାକାଳିଆ ଫେଲ୍‌ଟ ଟୋପି ଓ ସ୍କାର୍ଫ ପିନ୍ଧି .ବସିଛନ୍ତି । ସ୍ତ୍ରୀଲୋକ ଜଣକ ଆସ୍ତେ ଆସ୍ତେ ଖାଉଥିଲେ ଏବଂ ନେରୁଦାଙ୍କୁ ଚାହିଁ ରହିଥିଲେ । ମୁଁ ତତ୍‌କ୍ଷଣାତ୍ ତାଙ୍କୁ ଚିହ୍ନି ନେଲି । ତା'ର ବୟସ ଓ ଆକାର ତ ବଢ଼ି ଯାଇଥିଲା ନିଶ୍ଚୟ, କିନ୍ତୁ ଆଙ୍ଗୁଳିରେ ସାପ ପରି ମୁଦିଟି ବାରି ହୋଇ ଯାଉଥାଏ ।

ନେପଲ୍‌ସ୍‌ରୁ ଏକା ଜାହାଜରେ ଆସିଥିଲେ ମଧ୍ୟ ନେରୁଦାଙ୍କ ସହ ତା'ର ପରିଚୟ ହୋଇ ନ ଥିଲା । ଆମେ ତାକୁ ଆମ ସହିତ କଫି ପିଇବା ପାଇଁ ଏବଂ ସ୍ୱପ୍ନ ବିଷୟରେ କହିବା ପାଇଁ ଡାକିଲୁ । କିନ୍ତୁ ସ୍ୱପ୍ନରେ ନେରୁଦାଙ୍କ ବିଶ୍ୱାସ ନ ଥିଲା, ବା ସେ ସମ୍ପର୍କରେ ଶୁଣିବା ପାଇଁ ମଧ୍ୟ ଆଗ୍ରହ ନ ଥିଲା । ସେ ବିଶ୍ୱାସ କରୁଥିଲେ ଯେ କେବଳ କବିତା

ହିଁ ଭବିଷ୍ୟତ କଥା କହିପାରେ । ମଧ୍ୟାହ୍ନ ଭୋଜନ ପରେ ଆମେ ଯେତେବେଳେ ଚାଲିବାକୁ ଗଲୁ ମୁଁ ଜାଣି ଜାଣି ଟିକିଏ ପଛେଇ ଗଲି ଫ୍ରଉ ଫ୍ରିଡ଼ା ସହ ପରିଚୟକୁ ନୂଆ କରିବା ପାଇଁ । ସେ ଅଷ୍ଟ୍ରିଆରେ ସବୁ ସମ୍ପତ୍ତିକୁ ବିକିଦେଇ ପର୍ତ୍ତୁଗାଲରେ ପର୍ଟୋ ସହରରେ ରହୁଥିଲା । ପର୍ବତ ଧାରରେ ରାଜପ୍ରାସାଦ ପରି ଦିଶୁଥିବା ତା' ଘରୁ ଚାହିଁଲେ ଆମେରିକା ପର୍ଯ୍ୟନ୍ତ ବ୍ୟାପିଥିବା ଆଟଲାଣ୍ଟିକ୍ ମହାସାଗର ଦେଖାଯାଉଥିଲା । ଫ୍ରାଉ ଆହୁରି କେତେ ସମ୍ପତ୍ତିର ମାଲିକ ହୋଇଛି ବୋଲି କହିବା ବେଳେ ମୁଁ ତାକୁ ଜମା ବିଶ୍ୱାସ କରୁ ନଥିଲି । ମୁଁ ଜାଣିଥିଲି ସ୍ୱପ୍ନ ଥିଲା ତା'ର ବଞ୍ଚିବା ପାଇଁ ଏକ ମାଧ୍ୟମ ।

ପରିହାସର ହସଟିଏ ହସି ସେ କହିଲା, ଆପଣ ସବୁବେଳେ ଏମିତି ନିର୍ଲ୍ଲଜ । ଆମ ଦଳର ଅନ୍ୟମାନେ ନେରୁଦାଙ୍କ ପାଇଁ ଅଟକି ଯାଇଥିଲେ । ଏହା ଭିତରେ ଚଢ଼େଇ ବଜାରରେ ପହଞ୍ଚି ନେରୁଦା ଚଢ଼େଇମାନଙ୍କ ସହ କଥିତ ଚିଲ୍ଲୀ ଭାଷାରେ କଥା ଆରମ୍ଭ କରିଦେଇ ଥିଲେ । ଆମେ ଆଉଥରେ କଥା ଆରମ୍ଭ କଲାବେଳକୁ ଫ୍ରାଉ ଫ୍ରିଡ଼ା କଥାବାର୍ତ୍ତା ବିଷୟ ବଦଳାଇ ଦେଇଥିଲା ।

'ଆପଣ ଚାହିଁଲେ ଏବେ ଭିଏନା ଯାଇ ପାରନ୍ତି' — ସେ କହିଲା ।

'ମୁଁ ଉପଲବ୍ଧି କଲି ଆମର ପ୍ରଥମ ସାକ୍ଷାତ ପରେ ଏ ଭିତରେ ତେରବର୍ଷ ବିତି ଯାଇଛି ।'

'ତୁମର ସ୍ୱପ୍ନ ସତ ନହେଲେ ବି ମୁଁ ଆଉ କେବେ ଭିଏନାକୁ ଫେରିବି ନାହିଁ ।'

ନେରୁଦାଙ୍କର ବିଶ୍ରାମ ନେବା ସମୟ ହୋଇ ଯାଇଥିଲା । ତିନିଟା ବେଳେ ଆମେ ନେରୁଦାଙ୍କ ସହିତ ଆମ ଘରକୁ ଫେରିଲୁ । ବିଶ୍ରାମ ନେବା ପୂର୍ବରୁ କେଉଁ ଝରକା ଖୋଲା ରହିବ, ନେରୁଦା ଆଖି ବୁଜିଲେ ଏବଂ ଅଳ୍ପ କେତୋଟି ମୁହୂର୍ତ୍ତ ପରେ ତାଙ୍କୁ ଗାଢ଼ ନିଦ ହୋଇଗଲା । ଦଶ ମିନିଟ୍ ପରେ ସେ ପୁଣି ଡ୍ରଇଂ ରୁମ୍‌ରେ ହାଜର ଠିକ୍ ଛୋଟ ପିଲାଟିଏ ପରି ।

'ମୁଁ ସେଇ ସ୍ୱପ୍ନ ଦେଖୁଥିବା ସ୍ତ୍ରୀ ଲୋକଟିକୁ ସ୍ୱପ୍ନରେ ଦେଖିଲି', ସେ କହିଲେ ।

'କ'ଣ ସ୍ୱପ୍ନ ଦେଖିଲ ?' ମାଟିଲ୍‌ଡା ପଚାରିଲେ ।

'ସେ ମୋ ବିଷୟରେ ସ୍ୱପ୍ନ ଦେଖୁଛି ବୋଲି ମୁଁ ସ୍ୱପ୍ନରେ ଦେଖିଲି ।'

'ଏହା ବୋର୍ଜଙ୍କ କଥା ପରି ଶୁଣା ଯାଉଛି', ମୁଁ କହିଲି ।

ହତୋତ୍ସାହିତ ହୋଇ ସେ ମୋତେ ଚାହିଁଲେ ।

'ସେ କ'ଣ ଏ କଥା ଲେଖି ସାରିଛନ୍ତି ?'

'ଲେଖିଛନ୍ତି କି ନା ମୁଁ ଜାଣେ ନା, କିନ୍ତୁ ସେ ଦିନେ ନିଶ୍ଚୟ ଏ କଥା ଲେଖିବେ', ମୁଁ କହିଲି : ଛଅଟା ବେଳେ ନେରୁଦା ଜାହାଜ ଚଢ଼ିବା ପରେ ଆମକୁ ବିଦାୟ ଜଣାଇଲେ ଏବଂ ଏକପାଖିଆ ହୋଇ ପଡ଼ିଥିବା ଗୋଟିଏ ଟେବୁଲ୍‌ରେ ବସି ତାଙ୍କ ଚିର ପରିଚିତ ସବୁଜ କାଳିର ପେନ୍‌ରେ କବିତା ଲେଖିବା ଆରମ୍ଭ କଲେ । ଓହ୍ଲାଇବା ପାଇଁ ଶେଷ

ଘୋଷଣା ହେବାରୁ ଆମେ ଫ୍ରାଉ ଫ୍ରିଡ଼ାକୁ ଖୋଜି ଖୋଜି ଶେଷରେ ତାକୁ ଟୁରିଷ୍ଟ ଡେକ୍‌ରେ ପାଇଲୁ ।

ସେ ଏଇମାତ୍ର ନିଦରୁ ଉଠିଥାଏ ।

'ମୁଁ ଆପଣଙ୍କର କବିଙ୍କୁ ସ୍ୱପ୍ନରେ ଦେଖିଲି', ସେ କହିଲା । ବିସ୍ମିତ ହୋଇ ମୁଁ ସ୍ୱପ୍ନ ସମ୍ପର୍କରେ ଅଧିକ ଜାଣିବାକୁ ଚାହିଁଲି ।

'ମୁଁ ଦେଖିଲି ସେ ମୋ ବିଷୟରେ ସ୍ୱପ୍ନ ଦେଖୁଛନ୍ତି ।'

ମୋ ଆଖିରେ ଅବିଶ୍ୱାସ ଦେଖି ସେ ଆଶ୍ଚର୍ଯ୍ୟ ହେଉଥିଲା ।

'ଆପଣ କ'ଣ ଆଶା କରୁଛନ୍ତି ସବୁବେଳେ ସ୍ୱପ୍ନ ସତ ହେବ ?'

ବେଳେବେଳେ ଏମିତି ସ୍ୱପ୍ନ ଅଛି ଯାହାର ବାସ୍ତବତା ସହ ମୋଟେ ସମ୍ପର୍କ ନଥାଏ ।

ରିଭିରା ହୋଟେଲ୍ ନିକଟରେ ସାମୁଦ୍ରିକ ଝଡ଼ରେ ଭାଙ୍ଗି ପଡ଼ିଥିବା ଗାଡ଼ି ଭିତରେ ସାପ ପରି ମୁଦି ପିନ୍ଧା ସ୍ତ୍ରୀ ଲୋକଟିକୁ ଦେଖିବା ପର୍ଯ୍ୟନ୍ତ ମୁଁ ତା' କଥା ସମ୍ପୂର୍ଣ୍ଣ ଭାବେ ଭୁଲି ଯାଇଥିଲି । କେତେ ମାସ ପରେ ଗୋଟିଏ ଭୋଜି ସଭାରେ ପର୍ତ୍ତୁଗାଲର ରାଷ୍ଟ୍ରଦୂତଙ୍କ ସହିତ ଦେଖା ହେଲା ଏବଂ ତାଙ୍କୁ ଏକଥା ନପଚାରି ରହି ପାରିଲିନି ।

ପ୍ରବଳ ଉତ୍ସାହରେ ରାଷ୍ଟ୍ରଦୂତ ତା'ର ପ୍ରଶସ୍ତି ଗାଇ ଚାଲିଲେ ।

'ସେଇ ଅସାଧାରଣ ସ୍ତ୍ରୀ ଲୋକଟା ସମ୍ପର୍କରେ ପଦଟିଏ ନ ଲେଖି ଆପଣ ରହି ପାରନ୍ତେ ନାହିଁ ।'

ସ୍ତ୍ରୀ ଲୋକଟି ବିଷୟରେ ସେ ଅନେକ କଥା ନିଶ୍ଚୟ ଜାଣି ଥିଲେ । ସେ ସବୁ ବିଶଦ୍ ଭାବେ କହିବାରେ ତାଙ୍କର ସାମାନ୍ୟ କ୍ଳାନ୍ତି ନଥିଲା ।

ଶେଷରେ ମୁଁ ପଚାରିଲି, 'ପ୍ରକୃତରେ ତା' ହେଲେ ସେ ସ୍ତ୍ରୀଲୋକ କିଛି କରୁନଥିଲା ବୋଲି କୁହାଯାଇପାରେ ।'

'ସେ ସ୍ୱପ୍ନ ହିଁ ଦେଖୁଥିଲା ।'

କଥାଟିକୁ ଆଡ଼େଇ ଦେବା ଭଙ୍ଗୀରେ ସେ କହିଲେ ।

■■■

*ଅନୁବାଦ* **ଅରବିନ୍ଦ ବେହେରା**

# ମଙ୍ଗଳବାର ଦି'ପହରର ନିଦ

ବାଲି ପଥରର କଂପମାନ ସୁଡ଼ଂଗରୁ ରେଳଗାଡ଼ି ବାହାରି ଆସି ଧାଡ଼ି ହୋଇ ଲମ୍ବିଥିବା କଦଳୀ ଜଙ୍ଗଲକୁ ପାର ହେବାରେ ଲାଗିଲା । ଏଣିକି ପବନରେ ଆର୍ଦ୍ରତା ଚାଲି ଆସିଲା ଏବଂ ସମୁଦ୍ରର ହାଲୁକା ପବନ ମଧ୍ୟ ସେମାନଙ୍କ ଦେହରେ ଆଉ ଲାଗୁ ନଥିଲା । ଡବାର ଝରକା ଦେଇ ନିଃଶ୍ୱାସ ବନ୍ଦ ହୋଇଗଲା ଭଳି ଦମକାଏ ଧୂଆଁ ଭିତରକୁ ପଶିଆସିଲା । ରେଲ୍‌ଲାଇନ୍ କଡ଼ରେ ସମାନ୍ତରାଳ ଭାବରେ ଯାଇଥିବା ସରୁ ରାସ୍ତାଟିରେ ସବୁଜ କଦଳୀ କାନ୍ଧିରେ ଭର୍ତ୍ତି ହୋଇଥିବା ଶଗଡ଼ଗୁଡ଼ିକ ଚାଲିଥାନ୍ତି । ରାସ୍ତା ଆରପାଖରେ ଥିବା ପଡ଼ିଆରେ ବିକ୍ଷିପ୍ତଭାବରେ ବିଜୁଳି ପଙ୍ଖା ଲଗା ଅଫିସ୍, ଲାଲ୍ ଇଟାରେ ତିଆରି କୋଠା ଓ ତାଳଗଛ ଓ ଗୋଲାପ ବୁଦା ମଧ୍ୟବର୍ତ୍ତୀ ଅଗଣାରେ ଚଉକି ଓ ଛୋଟ ଧଳା ଟେବୁଲ୍‌ମାନ ରଖା ଯାଇଥିବା ଘରମାନ ଦେଖାଯାଉଥିଲା । ଏଗାରଟା ବାଜିଥିଲା, ତେଣୁ ଗରମ ସେଯାଏଁ ପଡ଼ିନଥିଲା ।

'ତୁ ବରଂ ଝରକାଟା ବନ୍ଦ କରିଦେ, ନଚେତ୍ କୋଇଲା ଗୁଣ୍ଡରେ ମୁଣ୍ଡ ଭର୍ତ୍ତି ହୋଇଯିବ ।' ସ୍ତ୍ରୀଲୋକ ଜଣକ କହିଲେ ।

ଝିଅଟି ଚେଷ୍ଟା କଲା, ମାତ୍ର କଳଙ୍କି ଲାଗି ଯାଇଥିବା ଯୋଗୁ ତାହା ହଲୁନଥାଏ ।

ତୃତୀୟ ଶ୍ରେଣୀର ଏକମାତ୍ର ଡବାଟିରେ ସେମାନେ ହିଁ ଯାହା ଯାତ୍ରୀ ଥିଲେ । ଝରକା ବାଟେ ଇଂଜିନ୍‌ର ଧୂଆଁ ଅବିରାମ ଭାବରେ ଆସୁଥିବାରୁ ଝିଅଟି ବସିଥିବା ସ୍ଥାନରୁ ଉଠିଗଲା ଏବଂ ସାଙ୍ଗରେ ଥିବା ସ୍ୱଳ୍ପ ଜିନିଷ - ଖାଦ୍ୟ ଥିବା ପ୍ଲାଷ୍ଟିକ୍‌ର ଏକ ମୁଣି ଏବଂ ଖବର କାଗଜରେ ଗୁଡ଼ା ହୋଇଥିବା ଫୁଲତୋଡ଼ାଟିଏ – ଏସବୁକୁ ସେଠାରେ ରଖିଦେଇ ଝରକାର ଅନ୍ୟ ଦିଗରେ ଥିବା ସିଟ୍‌ରେ ମା'ଙ୍କୁ ସାମ୍ନା କରି ବସିଗଲା । ଉଭୟେ ଛିଡ଼ି ଯାଇଥିବା ମଳିନ ଶୋକବସ୍ତ୍ର ପରିଧାନ କରିଥିଲେ ।

ଝିଅଟିକୁ ବାରବର୍ଷ ହୋଇଥିଲା ଓ ତାହା ତା'ର ପ୍ରଥମ ରେଳଯାତ୍ରା ଥିଲା । ଆଖି ପତାରେ ଥିବା ତାଙ୍କର ନୀଳ ଶିରାପ୍ରଶିରା ଏବଂ ଗାଉନ୍ ମଧ୍ୟରେ ଥିବା ତାଙ୍କର କଅଁଳ କ୍ଷୁଦ୍ର କଦାକାର ଶରୀରଟି ଯୋଗୁ ସ୍ତ୍ରୀ ଲୋକଟି ଝିଅଟିର ମା' ହେଲେ ହେଁ ଯଥେଷ୍ଟ ବୟସ୍କା ଜଣା ପଡୁଥିଲେ । ପିଠିକୁ ସିଟ୍‌ର ପଛପାଖରେ ଭରା ଦେଇ କୋଳରେ ଥିବା ହାତ ବ୍ୟାଗ୍‌ଟିକୁ ଦୁଇ ହାତରେ ଧରି ସେ ବସିଥିଲେ । ଅନଟନ ସହ ଅଭ୍ୟସ୍ତ ଥିବା ଏକ ଅମାୟିକ ନିର୍ମଳତାର ଭାବ ବହନ କରୁଥିଲେ ସେ ।

ବାରଟା ବେଳକୁ ଗରମ ପଡ଼ି ଯାଇଥିଲା । ଆଖପାଖର ସହର ନଥିବା ଗୋଟିଏ ଷ୍ଟେସନ୍‌ରେ ପାଣି ନେବା ପାଇଁ ଗାଡ଼ିଟି ଦଶ ମିନିଟ୍ ଅଟକିଲା । ବାହାରେ କଦଳୀ ବଗିଚାର କୁହେଳିକାମୟ ନିସ୍ତବ୍‌ଧତା ମଧ୍ୟରେ ଛାଇଗୁଡ଼ିକ ଖୁବ୍ ପରିଷ୍କାର ଭାବରେ ଦେଖା ଯାଉଥା'ନ୍ତି । କିନ୍ତୁ ଡବା ଭିତରେ ନିଶ୍ଚଳ ପବନ କମଣ ହୋଇନଥିବା ଚମଡ଼ା ପରି ଦୁର୍ଗନ୍ଧ କରୁଥାଏ । ଟ୍ରେନ୍‌ଟି ଚାଲିଲାବେଳେ ଆଉ ତା' ବେଗ ବଢ଼ାଇଲାନି । ଗାଢ଼ ରଙ୍ଗର କାଠଘରମାନ ଥିବା ଦୁଇଟି ଏକାଭଳି ଦିଶୁଥିବା ସହରରେ ଗାଡ଼ିଟି ଦୁଇଥର ଅଟକିଥିଲା । ମହିଳା ଜଣକ ମୁଣ୍ଡ ଝୁଙ୍କାଇ ତନ୍ଦ୍ରାଭିଭୂତ ହେଲେ । ଝିଅଟି ଗୋଡ଼ରୁ ଯୋତା ବାହାର କରି ଶୌଚାଳୟକୁ ଗଲା ଫୁଲ ତୋଡ଼ାରେ ପାଣି ସିଞ୍ଚିବା ପାଇଁ ।

ସେ ଫେରି ଆସିଲାବେଳକୁ ମା' ଖାଇବାକୁ ଅପେକ୍ଷା କରିଥିଲେ । ସେ ତାଙ୍କୁ କିଛି ଛେନା, ଫାଳେ ମକାପିଠା ଓ ବିସ୍କୁଟ୍‌ଟିଏ ଦେଲା ଏବଂ ମୁଣିରୁ ନିଜ ପାଇଁ ମଧ୍ୟ ସେତିକି ବାହାର କଲା । ସେମାନେ ଖାଇଲାବେଳେ ଟ୍ରେନଟି ଅତି ଆସ୍ତେ ଆସ୍ତେ ଗୋଟିଏ ଲୁହାପୋଲ ଉପର ଦେଇ ଆଉ ଏକ ସହରକୁ ଅତିକ୍ରମ କରୁଥାଏ । କେବଳ ବଜାରର ଗହଳିକୁ ବାଦ୍‌ଦେଲେ ଯାହା ପଛରେ ଛାଡ଼ି ଆସିଥିବା ଅନ୍ୟ ସହରଗୁଡ଼ିକ ଭଳି ଦେଖାଯାଉଥାଏ । ଦୁଃସହ ଖରାରେ ବାଦକମାନେ ଏକ ପ୍ରାଣସ୍ପର୍ଶୀ ମୂର୍ଚ୍ଛନା ତୋଳି ଗା'ଣ ବାଜଣା କରୁଥାନ୍ତି । ସହରର ଅନ୍ୟ ପ୍ରାନ୍ତରେ ଥିବା ମରୁଡ଼ିଗ୍ରସ୍ତ ଫଟାଭୂଇଁରେ ହିଁ କଦଳୀ ବଗିଚା ଶେଷ ହୋଇଯାଇଥିଲା ।

ସ୍ତ୍ରୀଲୋକ ଜଣକ ଖାଇବା ବନ୍ଦ କରି କହିଲେ 'ଯୋତା ପିନ୍ଧିପକା ।'

ଝିଅଟି ଝରକାବାଟେ ବାହାରକୁ ଚାହିଁଲା । ଟ୍ରେନ୍‌ଟି ବେଗ ବଢ଼ାଇଲାବେଳେ ନିଶୂନ୍ ସମତଳ ଭୂମି ବ୍ୟତୀତ ଆଉ କିଛି ନ ଦେଖିପାରିଲେ ହେଁ ସେ ବିସ୍କୁଟ୍‌ଟିକୁ ମୁଣିରେ ରଖିଦେଇ ଚଟ୍‌କରି ଯୋତା ପିନ୍ଧି ପକାଇଲା । ମହିଳାଟି ତାକୁ ଗୋଟିଏ ପାନିଆ ଦେଇ କହିଲେ – 'ମୁଣ୍ଡ କୁଣ୍ଢେଇପକା ।'

ଝିଅଟି ମୁଣ୍ଡ କୁଣ୍ଢାଇଲା ବେଳେ ଟ୍ରେନ୍ ହ୍ୱିସିଲ୍ ଦେଲା । ସ୍ତ୍ରୀଲୋକଟି ଆଙ୍ଗୁଠିରେ ବେକରୁ ଝାଳ ଓ ମୁହଁରେ ବସିଥିବା ତେଲକୁ ପୋଛିନେଲେ । ଝିଅଟି ମୁଣ୍ଡ କୁଣ୍ଢାଇବା ସାରିବାବେଳକୁ ଟ୍ରେନ୍‌ଟି ପୂର୍ବଠାରୁ ବଡ଼ ମାତ୍ର ବିମର୍ଷ ଏକ ସହରର ଦୂରବର୍ତ୍ତୀ ଘରଗୁଡ଼ିକୁ ଟପି ଚାଲିଥାଏ ।

'କିଛି କରିବାର ଥିଲେ ଜଲଦି କରିନେ, ପରେ ମଲେ ବି କୋଉଠି ଯେମିତି ପାଣି ପିଇବାକୁ ମନା କରିବୁନି । କାନ୍ଦଫାନ୍ଦ ଚଳିବନି –।' ମହିଳା ଜଣକ କହିଲେ ।

ଝିଅଟି ମୁଣ୍ଡ ଟୁଙ୍ଗାରିଲା । ଟ୍ରେନ୍‌ର ହ୍ୱିସିଲ୍ ଓ ପୁରୁଣା ଡବାଗୁଡ଼ିକର କେଁକଟର ଶବ୍ଦ ସହିତ ଝାଞ୍ଜିପବନ ଝରକାବାଟେ ପଶିଆସିଲା । ସ୍ତ୍ରୀଲୋକଟି ବଳକା ଜିନିଷ ଥିବା ପ୍ଲାଷ୍ଟିକ୍ ମୁଣିଟିକୁ ଚଉତାଚଉତି କରି ହାତ ବ୍ୟାଗ୍‌ଟିରେ ରଖିଦେଲେ । କ୍ଷଣକ

ପାଇଁ ଝରକା ମଧ ଦେଇ  ସାରା ସହରଟାର ଦୃଶ୍ୟ ଝଲସି ଉଠିଲା ଅଗଷ୍ଟ ମାସର ସେହି ଉଜ୍ଜ୍ୱଳ ମଙ୍ଗଳବାରଟିରେ । ଝିଅଟି ଓଦା ଖବରକାଗଜଟିରେ ଫୁଲତୋଡ଼ାଟିକୁ ଗୁଡ଼ାଇ ଦେଲା ଏବଂ ଝରକାଠାରୁ ଟିକିଏ ଦୂରକୁ ଘୁଞ୍ଚିଯାଇ ମା' ଆଡ଼େ ଚାହିଁଲା । ମା'ଙ୍କ ମୁହଁରେ ପ୍ରସନ୍ନତାର ଛାପ ସେ ଦେଖିପାରିଲା । ହ୍ୱିସିଲ୍ ଦେଇ ଟ୍ରେନ୍‌ଟି ଗତି ଶିଥିଳ କଲା । କିଛିକ୍ଷଣ ପରେ ଏହା ଅଟକିଲା ।

ଷ୍ଟେସନ୍‌ଟା ସମ୍ପୂର୍ଣ୍ଣ ନିର୍ଜନ ଥିଲା । ରାସ୍ତାର ଆର ପାଖରେ, ବାଦାମ୍ ଗଛର ଛାଇରେ ଫୁଟ୍‌ପାଥ୍ ଉପରର ସଭାଗୃହଟି ଖୋଲା ଥିଲା । ସହରଟା ଗରମରେ ସିଝୁଥିଲା । ସ୍ତ୍ରୀଲୋକଟି ଏବଂ ଝିଅଟି ଟ୍ରେନ୍‌ରୁ ଆସ୍ତେ ଆସ୍ତେ ଓହ୍ଲାଇଲେ ଏବଂ ଜନଶୂନ୍ୟ ଷ୍ଟେସନ୍‌ଟିକୁ ପାର ହୋଇ ଟାଇଲକୁ ଫଟାଇ ବଢ଼ି ଯାଇଥିବା ଘାସ ଉପର ଦେଇ ରାସ୍ତାର ଛାଇ ହୋଇଥିବା ପାର୍ଶ୍ୱକୁ ବାହାରି ଆସିଲେ ।

ସମୟ ପ୍ରାୟ ଦୁଇଟା ହୋଇଯାଇଥିଲା । ତନ୍ଦ୍ରାଭାରରେ ସାରା ସହରଟା ସେତେବେଳକୁ ଘୁମାଇ ପଡ଼ିଥିଲା । ଦୋକାନ, ନଗର ଅଫିସ୍, ପବ୍ଲିକ୍ ସ୍କୁଲ୍ ସବୁ ଏଗାରଟାବେଳୁ ବନ୍ଦ ହୋଇଯାଇଥାଏ ଏବଂ ୪ଟା ପୂର୍ବରୁ, ଅର୍ଥାତ୍ ଟ୍ରେନ୍‌ଟି ଫେରିବାର କିଛି ସମୟ ପୂର୍ବରୁ ହିଁ ଯାହା ଖୋଲିଥାଏ । କେବଳ ଷ୍ଟେସନ୍‌ର ଆରପାଖରେ ଥିବା ହୋଟେଲ୍ ଓ ଏହାର ମଦ୍ୟଶାଳା, ସଭାଗୃହ ଏବଂ ବଜାରର ଗୋଟିଏ ମୁଣ୍ଡରେ ଥିବା ଡାକଘର ଅଫିସ୍ ଖୋଲା ଥିଲା । କଦଳୀ କମ୍ପାନୀ ନମୂନାରେ ତିଆରି ହୋଇଥିବା ଘରର କବାଟଗୁଡ଼ିକ ଭିତର ପାଖରୁ ବନ୍ଦ ଥିଲା । କେତେକ ଘରେ ଏତେ ଗରମ ହେଉଥାଏ ଯେ ଲୋକମାନେ ବାରଣ୍ଡାରେ ଦିବାହାର କରୁଥା'ନ୍ତି । ଆଉ କେତେକ ବାଦାମ ଗଛ ଛାଇରେ କାନ୍ଥକୁ ଲାଗିଥିବା ଚଉକିରେ ଆଉଜି ବିଚ୍‌ରାସ୍ତା ଉପରେ ଘୁମେଇ ପଡ଼ିଥା'ନ୍ତି ।

ବାଦାମ ଗଛର ଛାଇରେ କାହାରି ବିଶ୍ରାମରେ ବ୍ୟାଘାତ ନ ଘଟାଇ ସ୍ତ୍ରୀଲୋକଟି ଓ ଅନ୍ୟ ଝିଅଟି ସହର ମଧ୍ୟରେ ପ୍ରବେଶ କଲେ । ସିଧାସଳଖ ଯାଇ ଫାଦରଙ୍କ ଘରେ ପହଞ୍ଚିଲେ । ସ୍ତ୍ରୀଲୋକଟି ଦରଜାର ରେଲିଂକୁ ନଖରେ ରାମ୍ପିଲେ, କ୍ଷଣକ ପାଇଁ ଅପେକ୍ଷା କରି ପୁଣିଥରେ ରାମ୍ପିଲେ । ଭିତରୁ ବିଜୁଳି ପଙ୍ଖାଟିର ଶବ୍ଦ ଆସୁଥାଏ । ସେମାନେ ତେଣୁ ପାଦ ଶବ୍ଦ ଶୁଣିପାରିଲେ ନାହିଁ । ଦରଜା ଖୋଲିବାର କଟକଟ ଶବ୍ଦ ଶୁଣିଛନ୍ତି କି ନାହିଁ ରେଲିଂ ଆର ପାଖରୁ ସତର୍କତାର କଣ୍ଠସ୍ୱର ଭାସିଆସିଲା – 'କିଏ ସେ ?'

'ସ୍ତ୍ରୀଲୋକଟି ପାଦ୍ରୀମହାଶୟଙ୍କୁ ଭେଟିବାକୁ ଚାହୁଁଛି ।' ମହିଳାଟି କହିଲେ ।

'ସେ ତ ବର୍ତ୍ତମାନ ଶୋଇଛନ୍ତି ।'

'ଖୁବ୍ ଜରୁରୀ କାମ ଥିଲା ।' ମହିଳା ଜଣକ କହିଲେ, କଣ୍ଠରେ ତାଙ୍କର ଅବିଚଳିତ ସଂକଳ୍ପର  ଆଭାସ ।

ଦରଜା ଅଳ୍ପ ଖୋଲି ନିଃଶବ୍ଦରେ ଏବଂ ଲୁହା ରଙ୍ଗର ବାଳ ଓ ଶେତା ଚମଡ଼ାର ପୃଥୁଳାକାୟା ମହିଳା ଜଣକ ଦେଖାଦେଲେ । ମୋଟା ଚଷମା କାଚ ତଳେ ତାଙ୍କ ଆଖି

ଦୁଇଟି ଖୁବ୍ ଛୋଟ ଦେଖାଯାଉଥାଏ । 'ଭିତରକୁ ଆସ' – କହି ସେ ଦରଜାକୁ ପୂରା ଖୋଲିଦେଲେ ।

ବାସିଫୁଲର ମହକରେ ପରିବ୍ୟାପ୍ତ କୋଠରୀଟି ଭିତରେ ସେମାନେ ପ୍ରବେଶ କଲେ । ସ୍ତ୍ରୀଲୋକଟି ସେମାନଙ୍କୁ ଗୋଟିଏ ବେଞ୍ଚ ନିକଟକୁ ନେଇଯାଇ ବସିବାକୁ ଇଙ୍ଗିତ କଲେ । ଝିଅଟି ବସିଗଲା, ମାତ୍ର ତା'ର ମା' ବ୍ୟାଗ୍‌ଟିକୁ ଦୁଇହାତରେ ଧରି ଅନ୍ୟମନସ୍କ ଭାବରେ ଛିଡ଼ା ହୋଇ ରହିଲେ ।

ସ୍ତ୍ରୀଲୋକ ଜଣକ ପୁଣିଥରେ କୋଠରିର ଅନ୍ୟ ପାଖରେ ଥିବା ଦୁଆର ପାଖରେ ଥିବା ଦୁଆର ଦେଇ ବାହାରି ଆସିଲେ ।

'ସେ କହୁଛନ୍ତି ତୁମକୁ ତିନିଟା ପରେ ଆସିବା ପାଇଁ । ମାତ୍ର ପାଞ୍ଚମିନିଟ୍ ହେବ ସେ ଶୋଇବାକୁ ଗଲେ ।' – ଧୀର ଗଳାରେ ସେ କହିଲେ ।

'ଟ୍ରେନ୍ ସାଢ଼େ ତିନିଟାବେଳେ ଛାଡ଼ିଦିଏ ।' ମହିଳା ଜଣକ ଉତ୍ତର ଦେଲେ । ଜବାବ୍‌ଟି ଆତ୍ମପ୍ରତ୍ୟୟଭରା ଓ ସଂକ୍ଷିପ୍ତ ଥିଲେ ମଧ୍ୟ ଖୁବ୍ ଶାନ୍ତ ଓ ପ୍ରୀତିକର ଥିଲା ।

ଏହା ଶୁଣି ମହିଳାଟି ପ୍ରଥମ ଥର ପାଇଁ ସ୍ମିତହାସ୍ୟ କଲେ ।

''ଆଚ୍ଛା ହଉ ।'' ସେ କହିଲେ ।

କବାଟଟା ପୁଣିଥରେ ବନ୍ଦ ହୋଇଗଲା ପରେ ମହିଳା ଜଣକ ଝିଅ ପାଖରେ ବସି ପଡ଼ିଲେ । ଅଣ ଓସାରିଆ ଦାଣ୍ଡଘରଟି ଖୁବ୍ ସାଧାରଣ ଓ ପରିଷ୍କାର ପରିଚ୍ଛନ୍ନ ଥାଏ । ଘରଟିକୁ ଦୁଇ ଭାଗରେ ଭାଗ କରୁଥିବା କାଠର ରେଲିଂର ଅପର ପାର୍ଶ୍ୱରେ କପଡ଼ା ପଡ଼ିଥିବା ସାଧାରଣ ଟେବୁଲ୍‌ଟେ ଏବଂ ଟେବୁଲ୍ ଉପରେ ଫୁଲଦାନୀକୁ ଲାଗି ପୁରୁଣା ଟାଇପ୍‌ମେସିନ୍‌ଟେ ପଡ଼ିଥାଏ । ତା'ପରେ ଅଞ୍ଚଳ କାର୍ଯ୍ୟାଳୟର କାଗଜପତ୍ର । ଅଫିସ୍ ଯେ ଜଣେ ଅବିବାହିତ ମହିଳାଙ୍କ ତତ୍ତ୍ୱାବଧାନରେ ଥିଲା, ତାହା ସ୍ପଷ୍ଟ ବାରି ହୋଇ ଯାଉଥିଲା ।

ସେ ପଟର କବାଟ ଖୋଲିଲା ଏବଂ ଏଥର ଧର୍ମଯାଜକ ରୁମାଲରେ ଚଷମା ପୋଛି ପୋଛି ବାହାରି ଆସିଲେ । ଚଷମା ଲଗାଇଲା ପରେ ହିଁ ସେ ଦୁଆର ଖୋଲିଥିବା ମହିଳାଙ୍କ ଭାଇ ବୋଲି ଜଣା ପଡ଼ିଲା ।

''କି ଧରଣର ସାହାଯ୍ୟ ଦରକାର ?'' – ସେ ପଚାରିଲେ ।

''ସମାଧିସୁନ୍ଦର ଚାବି ।'' – ସ୍ତ୍ରୀଲୋକଟି ଉତ୍ତର ଦେଲେ ।

ବେଞ୍ଚ ତଳେ ଗୋଡ଼କୁ ଛନ୍ଦି ଝିଅଟି ଫୁଲତୋଡ଼ାଟିକୁ କୋଳରେ ଧରି ବସିଥାଏ । ଫାଦର୍ ତା'ଆଡ଼େ ଥରେ ଚାହିଁଲେ, ତାହାପରେ ସ୍ତ୍ରୀଲୋକଟି ଆଡ଼େ ଚାହିଁ ଶେଷକୁ ଝରକାର ତାରଜାଲି ଦେଇ ନିର୍ମଳ ମେଘମୁକ୍ତ ଆକାଶକୁ ଚାହିଁଲେ ।

''ଏତେ ଗରମରେ ! ତମେ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଅପେକ୍ଷା କରିପାରିଥା'ନ୍ତ !' – ସେ କହିଲେ ।

ସ୍ତ୍ରୀ ଲୋକଟି ନୀରବରେ ମୁହଁ ପୋତିଲେ । ଫାଦର୍ ରେଲିଂର ଆରପାଖକୁ ଯାଇ ଆଲମାରୀରୁ ବନ୍ଧାଇ ହୋଇଥିବ ଖାତାଟିଏ, କାଠ କଲମ ଓ ଦୁଆତ ବାହାର କଲେ ଏବଂ ଟେବୁଲ୍ ପାଖରେ ବସିଗଲେ । ହାତ ତାଙ୍କର ଖୁବ୍ ଲୋମଶ ଥିଲା, ବୋଧହୁଏ ମୁଣ୍ଡରେ ବାଳ ନଥିବା ଯୋଗୁ ।

"କାହାର କବର ନିକଟକୁ ଯିବାକୁ ଚାହୁଁଛ ?" – ସେ ପଚାରିଲେ ।

"କାର୍ଲୋ ସେଣ୍ଟେନୋର" – ସ୍ତ୍ରୀ ଲୋକଜଣକ ଉତ୍ତର ଦେଲେ ।

"କିଏ ?"

"କାର୍ଲୋ ସେଣ୍ଟେନୋ" – ମହିଳାଜଣକ ଦୋହରାଇଲେ ।

ଫାଦର୍ ତଥାପି ବୁଝି ପାରିଲେ ନାହିଁ ।

"ସେ ହେଉଛି ସେହି ଛେର, ଯେ ଗତ ସପ୍ତାହରେ ଏଠାରେ ମରି ଯାଇଥିଲା । ମୁଁ ତା'ର ମା" – ସେହି କଣ୍ଠରେ ସେ କହିଲେ ।

ଫାଦର୍ ତାଙ୍କୁ ଯାଞ୍ଚ କଲାଭଳି ଚାହିଁଲେ । ସେ ମଧ୍ୟ ତାଙ୍କୁ ଆତ୍ମସଂଯମର ସହ ନିରୀକ୍ଷଣ କରିବାରୁ ଫାଦର୍ ଲାଜେଇଗଲେ । ସେ ମୁହଁ ତଳକୁ କରି ଲେଖା ଆରମ୍ଭ କଲେ । ପୃଷ୍ଠାଟି ପୂରଣ କଲାବେଳେ ସେ ସ୍ତ୍ରୀ ଲୋକଟିକୁ ଉପଯୁକ୍ତ ଚିହ୍ନଟ ଦେବା ପାଇଁ କହିଲେ, ଏବଂ ନିଃସଙ୍କୋଚରେ ସେ ପୁଙ୍ଖାନୁପୁଙ୍ଖ ଭାବରେ ନିଜ ବିଷୟରେ କହିଗଲେ, ସତେ ଯେପରି ସେସବୁକୁ ସେ ପଢୁଥିଲେ । ଫାଦର୍ ଝାଳେଇଗଲେ । ଝିଅଟି ବାଁପଟେ ଯୋତାର ବକଲ୍ସ ଖୋଲି ଗୋଡ଼କୁ ବେଞ୍ଚ ଉପରେ ଲମ୍ୱେଇଦେଲା । ଡାହାଣ ଗୋଡ଼ଟିକୁ ମଧ୍ୟ ସେ ସେଇୟା କଲା ।

ଏ ସବୁର ଅୟମାରମ୍ଭ ହୋଇଥିଲା ଗତ ସପ୍ତାହ ସୋମବାର ଭୋର ତିନିଟାବେଳେ – ସେଠାରୁ ଅଳ୍ପ କେତୋଟି ଘର ଛାଡ଼ି । ଛୋଟ ଜିନିଷରେ ଭର୍ତ୍ତି ହୋଇଥିବା ଘରଟିରେ ଏକୁଟିଆ ଅବସ୍ଥାନ କରୁଥିବା ବିଧବା ରିବେକା ଝିପିଝିପି ବର୍ଷାରେ ସାମ୍ନା କବାଟକୁ କେହି ବାହାରପଟୁ ଖୋଲୁଥିବାର ଶବ୍ଦ ଶୁଣିପାରିଲେ । ସେ ଉଠିପଡ଼ି ଆଲମାରୀ ଦରାଣ୍ଡି କର୍ଣ୍ଣେଲ୍ ଅରେଲିଆନୋ ବୁଏନ୍ଦାଙ୍କ ସମୟରୁ ଫୁଟାଯାଇ ନଥିବା ପୁରୁଣା ରିଭଲ୍ଭରଟି ଧରି ଲାଇଟ୍ ନ ଜଳାଇ ଶୋଇବା ଘରକୁ ଚାଲିଗଲେ । ତାଲା ପାଖରୁ ଆସୁଥିବା ଶବ୍ଦ ନୁହେଁ, ବରଂ ଅଠେଇଶ ବର୍ଷର ନିଃସଙ୍ଗତା ଯୋଗୁ ନିଜ ମଧ୍ୟରେ ଜମି ଆସିଥିବା ଭୟର ପ୍ରଭାବରେ ସେ କେବଳ ଦୁଆର ଦିଗରେ ନୁହେଁ, ତାଲାର ସଠିକ୍ ଉଚ୍ଚତାକୁ ମଧ୍ୟ କଳ୍ପନା କରିନେଇ ନିଶାଣ ଲଗେଇଲେ । ଦୁଇ ହାତରେ ରିଭଲ୍ଭରଟିକୁ ଯାବୁଡ଼ି ଧରି ଆଖିବୁଜି ସେ ଟ୍ରିଗର୍ ଦବେଇ ଦେଲେ । ଜୀବନରେ ବର୍ଷାର ଶବ୍ଦ ବ୍ୟତୀତ ସେ ଆଉ କିଛି ଶୁଣିପାରିଲେ... ଧୀର, ମଧୁର ଅଥଚ ଅବସାଦଗ୍ରସ୍ତ ଏକ କଣ୍ଠସ୍ୱର – "ଓଃ ମା' !" ନାକ ଉଡ଼ି ଯାଇଥିବା ଯେଉଁ ଲୋକଟି ଫୁଙ୍ଗୁଳା ପାଦରେ ଘର ସାମ୍ନାରେ ମରି ପଡ଼ିଥିଲା, ତା' ଦେହରେ ରଙ୍ଗୀନ୍ ଗାରଗାରର

ଗୋଟିଏ ଢ଼ିଲା ଜାମା ଓ କମରପଟି ବଦଳରେ ଦଉଡ଼ିଟିଏ ବନ୍ଧା ହୋଇଥିବା ସାଧାରଣ ପ୍ୟାଣ୍ଟଟିଏ ଥିଲା । ସହରର କେହି ତାକୁ ଚିହ୍ନି ନଥିଲେ ।

''ତା'ହେଲେ ତା'ର ନାଁ ଥିଲା କାର୍ଲୋ ସେଣ୍ଟେନୋ !'' ଫାଦର୍ ଲେଖିସାରି ଗୁଣୁଗୁଣୁ ହେଲେ ।

''ସେଣ୍ଟେନୋ ଆୟାଲା ! ସେ ମୋର ଗୋଟିଏ ବୋଲି ପୁଅ ।'' ସ୍ତ୍ରୀ ଲୋକ ଜଣକ କହିଲେ ।

ଫାଦର୍ ଆଲମାରୀ ନିକଟକୁ ଫେରିଗଲେ । କବାଟର ଭିତର ପାଖରେ ଦୁଇଟି କଳଙ୍କିଗଲା ଚାବି ଲଟକା ହୋଇଥିଲା । ତା'ର ମା' ତା'ରି ଭଳି ଝିଅଟିଏ ଥିଲେ ଯାହା କଳ୍ପନା କରିଥା'ନ୍ତେ ଓ ଫାଦର ମଧ କେତେବେଳେ ନିଶ୍ଚୟ ଯେଭଳି କଳ୍ପନା କରିଥିବେ, ସେପରି ଝିଅଟି ସେଗୁଡ଼ିକୁ ସେଣ୍ଟପିଟର୍‌ଙ୍କ ଚାବି ବୋଲି କଳ୍ପନା କଲା । ସେଗୁଡ଼ିକୁ ତଳକୁ ଆଣି ରେଲିଂ ଉପରେ ଥିବା ଖୋଲା ଖାତାଟି ଉପରେ ଥୋଇ ସଦ୍ୟ ଲେଖା ହୋଇଥିବା ପୃଷ୍ଠାଆଡ଼େ ଆଙ୍ଗୁଳି ନିର୍ଦ୍ଦେଶ କରି ଫାଦର୍ ସ୍ତ୍ରୀ ଲୋକଟି ଆଡ଼େ ଚାହିଁ କହିଲେ – ''ଏଇଠି ଦସ୍ତଖତ କର ।''

ବ୍ୟାଗ୍‌ଟିକୁ କାଖ ତଳେ ରଖି ମହିଳାଜଣଙ୍କ ତାଙ୍କର ନାଁଟିକୁ ଲେଖିଲେ । ଝିଅଟି ଫୁଲତୋଡ଼ାଟିକୁ ଉଠାଇ ଆଣି ଘୋଷାରି ଘୋଷାରି ରୋଲିଂ ନିକଟକୁ ଆସି ସ୍ତ୍ରୀଲୋକଟି ଆଡ଼େ ମନଯୋଗ ଦେଇ ଚାହିଁ ରହିଲା ।

ଫାଦର୍ ଦୀର୍ଘଶ୍ୱାସ ଛାଡ଼ିଲେ ।

''ତାକୁ କ'ଣ ତମେ କେବେ ହେଲେ ବାଟକୁ ଆଣିବାକୁ ଚେଷ୍ଟା କରି ନଥିଲ ?''

ଦସ୍ତଖତ କରିସାରିବା ପରେ ହିଁ ସ୍ତ୍ରୀ ଲୋକଟି ଉତ୍ତର ଦେଲେ – ''ସେ ଖୁବ୍ ଭଲ ମଣିଷଟେ ଥିଲା ।''

ଫାଦର୍ ପ୍ରଥମେ ସ୍ତ୍ରୀଲୋକଟି ଆଡ଼େ ଏବଂ ପ'ରେ ଝିଅଟିଆଡ଼େ ଚାହିଁ ଏକ ପବିତ୍ର ବିସ୍ମୟବୋଧ ସହିତ ହୃଦୟଙ୍ଗମ କଲେ ଯେ ସେମାନେ କାନ୍ଦିବାକୁ ଯାଉ ନାହାନ୍ତି ।

ସେଇ ଗଳାରେ ସ୍ତ୍ରୀଲୋକ ଜଣକ କହିଲେ – ''କାହାର ଖାଇବା ପାଇଁ ଥିବା ଜିନିଷକୁ କେବେହେଲେ ଚୋରୀ ନ କରିବା ପାଇଁ ମୁଁ ତା'କୁ କହିଥିଲି ଏବଂ ସେ ମୋର କଥା ମାନିଥିଲା । ଅନ୍ୟ ପକ୍ଷରେ, ପୂର୍ବରୁ ବକ୍‌ସିଂ କଲାବେଳେ ସେ ଆଘାତ ପାଇ ତିନିତିନି ଦିନ ବିଛଣାରେ ପଡ଼ି ରହୁଥିଲା ।''

''ତା'ର ସବୁଯାକ ଦାନ୍ତ କଢ଼ା ହୋଇଯାଇଥିଲା'' – ଝିଅଟି ମଝିରେ କହି ପକାଇଲା ।

''ସତ କଥା ।'' ସ୍ତ୍ରୀ ଲୋକ ଜଣକ କହିଲେ – ''ସେତେବେଳେ ମୁହଁକୁ ନେଉଥିବା ପ୍ରତ୍ୟେକ ଗୁଣ୍ଡା ଶନିବାର ରାତିରେ ମୋ ପୁଅ ପାଉଥିବା ଆଘାତର ସ୍ୱାଦ ବହନ କରୁଥିଲା ।''

''ଈଶ୍ୱରଙ୍କ ଇଚ୍ଛା ସଂପୂର୍ଣ୍ଣ ଦୁର୍ବୋଧ୍ୟ !'' କହିଲେ ଫାଦର୍ । ସେ କିନ୍ତୁ ଏହାକୁ ଦୃଢ଼ ବିଶ୍ୱାସର ସହିତ ନକହିବାର କିଛି କାରଣ ଥିଲା ତାଙ୍କର ଅଭିଜ୍ଞତା – ଯାହା

ତାଙ୍କୁ କିଛିଟା ସନ୍ଦେହୀ କରି ଦେଇଥିଲା ଏବଂ ଆଉ କିଛି କାରଣ ଥିଲା ଅସହ୍ୟ ଗରମ । ସୂର୍ଯ୍ୟ ତାପରୁ ରକ୍ଷା ପାଇବା ପାଇଁ ମୁଣ୍ଡରେ କିଛି ଘୋଡ଼ାଇ ଦେବା ପାଇଁ ସେ ଉପଦେଶ ଦେଲେ । ହାଇ ମାରି ଓ ନିଦରେ ଟଳବଳ ହୋଇ ସେ କାର୍ଲୋ ସେଣ୍ଟେନୋର କବରସ୍ଥଳ କିପରି ପାଇବାକୁ ହେବ, ତାହା ବତାଇ ଦେଲେ । ଫେରି ଆସିବା ପରେ ତାଙ୍କର ଆଉ ଦରଜାରେ ଆଘାତ କରିବାର ଆବଶ୍ୟକତା ନାହିଁ । 'ଚାବିକୁ ଦରଜା ତଳେ ରଖିଦେବେ ଏବଂ ଯଦି ସମ୍ଭବ ଗୀର୍ଜା ପାଇଁ କିଛି ଚାନ୍ଦା ମଧ୍ୟ ।' ଖୁବ୍ ଧ୍ୟାନର ସହିତ ମହିଳାଜଣକ ତାଙ୍କ କଥା ଶୁଣିଗଲେ, କିନ୍ତୁ ଧନ୍ୟବାଦ ଦେଲେ ନିରାନନ୍ଦରେ ।

କବାଟ ଖୋଲିବା ପୂର୍ବରୁ ନାକକୁ ସେଥିରେ ଚାପି କେହି ଜଣେ ଘର ଭିତରକୁ ଚାହିଁବାର ଲକ୍ଷ୍ୟ କରିପାରିଲେ ଫାଦର୍ । ବାହାରେ ଦଳେ ପିଲା ଥିଲେ । କବାଟକୁ ସମ୍ପୂର୍ଣ୍ଣ ଖୋଲିଦେଲା ପରେ ପିଲାମାନେ ଏଣେତେଣେ ପଳେଇଗଲେ । ଦିନର ସେହି ସମୟରେ ରାସ୍ତାରେ କେହି ପ୍ରାୟ ନଥାନ୍ତି । ବର୍ତ୍ତମାନ କିନ୍ତୁ ଖାଲି ପିଲା ନୁହଁନ୍ତି, ଦଳେ ଲୋକ ମଧ୍ୟ ବାଦାମ ଗଛ ତଳେ ଛିଡ଼ା ହୋଇଥା'ନ୍ତି । ଗରମରେ ସନ୍ତରଣ କରୁଥିବା ରାସ୍ତାଟିକୁ ଫାଦର ଅନୁଧ୍ୟାନ କଲେ ଏବଂ କଥାଟା ବୁଝିଗଲେ । କବାଟଟିକୁ ଆଉ ଥରେ ସେ ଆଉଜାଇ ଆଣିଲେ ଆସ୍ତେ କରି ।

''ଟିକିଏ ଅପେକ୍ଷା କର ।'' ସ୍ତ୍ରୀଲୋକ ଆଡ଼େ ନ ଚାହିଁ ସେ କହିଲେ ।

ବାଳକୁ କାନ୍ଧ ଉପରକୁ ପକାଇ ରାତିପୋଷାକ ଉପରେ କଳା କୋଟ୍‌ଟିଏ ଗଳେଇ ଆରପଟ ଦୁଆର ବାଟେ ତାଙ୍କ ଭଉଣୀ ପଶି ଆସିଲେ । ଫାଦର୍‌ଙ୍କୁ ସେ ଚୁପ୍‌ଚାପ୍ ଚାହିଁ ରହିଲେ ।

''କ'ଣ ହେଲା କି ?'' ଫାଦର ପଚାରିଲେ ।

''ଲୋକମାନେ ଦେଖିନେଲେଣି !'' ଅସ୍ପଷ୍ଟ ଭାବରେ ତାଙ୍କ ଭଉଣୀ କହିଲେ ।

''ତମେ ବରଂ ଦୁଆର ବାଟ ଦେଇ ଅଗଣାକୁ ବାହାରିଯାଅ ।'' ଫାଦର୍ କହିଲେ ।

''ଏକା କଥା । ସମସ୍ତେ ଝରକା ପାଖରେ ଅଛନ୍ତି ।'' ଭଉଣୀ କହିଲେ ।

ମହିଳା ଜଣକ ଏଯାଏଁ କଥାଟା ବୁଝି ନଥିଲେ । ଦୁଆର ରେଲିଂ ମଧ୍ୟଦେଇ ସେ ରାସ୍ତାଟିକୁ ଦେଖିବା ପାଇଁ ଚେଷ୍ଟା କଲେ । ତା'ପରେ ଝିଅ ହାତରୁ ଫୁଲତୋଡ଼ାଟିକୁ ନେଇ ସେ ଦୁଆର ଆଡ଼େ ଚାଲିଲେ । ଝିଅଟି ମଧ୍ୟ ପଛେ ପଛେ ଚାଲିଲା ।

''ବେଳ ବୁଡ଼ିବାଯାଏଁ ଅପେକ୍ଷା କରିଯାଅ !'' ଫାଦର୍ କହିଲେ ।

''ତମେ ତରଳିଯିବ ! ଟିକିଏ ରୁହ, ମୁଁ ତୁମକୁ ଗୋଟିଏ ଛତା ଦଉଛି !'' ଘରଟିରେ ନିଶ୍ଚଳ ଭାବରେ ଛିଡ଼ା ହୋଇ ପଛପଟରୁ ତାଙ୍କ ଭଉଣୀ କହିଲେ ।

''ଧନ୍ୟବାଦ ! ଆମେ ଇମିତି ଠିକ୍ ଅଛୁ ।'' ସ୍ତ୍ରୀ ଲୋକ ଜଣକ କହିଲେ ।

ଝିଅଟିର ହାତକୁ ଧରି ସେ ରାସ୍ତା ଉପରକୁ ବାହାରି ଆସିଲେ ।



*ଅନୁବାଦ :* **ନରେନ୍ଦ୍ର ନାରାୟଣ ଦାସ**

# ଆଇଜାକ୍ ବେସେଭିସ୍ ସିଙ୍ଗର୍

*ଔପନ୍ୟାସିକ ଓ କଥାକାର ଆଇଜାକ୍ ବେସେଭିସ୍ ସିଙ୍ଗର ହେଉଛନ୍ତି ଇଦିଶ୍ ଭାଷାରେ ଇହୁଦୀ ଜନଜୀବନର ଏକ ନିଛକ ଚିତ୍ରକର । ସାହିତ୍ୟ ପାଇଁ ସେ ନୋବେଲ୍ ପୁରସ୍କାର ପାଆନ୍ତି ୧୯୭୮ ମସିହାରେ । ପୋଲାଣ୍ଡ ଓ ଆମେରିକାର ଇହୁଦୀ ସମାଜର ଚାଲିଚଳଣ, ପ୍ରଥା, ପରମ୍ପରା ଦ୍ୱରା ତାଙ୍କ ସାହିତ୍ୟ ପରିପୁଷ୍ଟ । ସାମ୍ପ୍ରତିକ ସମୟର anti-novel ବା anti-hero ଧାରାରୁ ନିଜକୁ ଦୂରେଇ ରଖି ପାରମ୍ପରିକ କାହାଣୀ ଓ ଚରିତ୍ରକୁ ନେଇ ସେ ସାହିତ୍ୟ ରଚନା କରିଛନ୍ତି । ଏକ ବଳିଷ୍ଠ ନୈତିକ ଜୀବନାଦର୍ଶ ଏବଂ ଶକ୍ତିଶାଳୀ ଆବେଗଭରା ଜୀବନ ଜିଜ୍ଞାସା ତାଙ୍କର କାହାଣୀ ଓ ଚରିତ୍ରମାନଙ୍କୁ ଚମତ୍କୃତ ଭାବେ ଜୀବନ୍ତ କରିଛି । କବିଙ୍କୁ ସିଙ୍ଗର ଦେବଦୂତଙ୍କ ସହିତ ତୁଳନା କରିଛନ୍ତି । ତାଙ୍କର ବିଶ୍ୱାସ, ଏ ସମାଜରେ କବି ବା ସାହିତ୍ୟିକର ଏକ ଉଚ୍ଚ ନୈତିକ ବା ଆଧ୍ୟାତ୍ମିକ ଭୂମିକା ରହିଛି । ନିଜର ନୋବେଲ୍ ବକ୍ତୃତାରେ ସେ କହିଛନ୍ତି – ଯେତେବେଳେ ସମସ୍ତ ସାମାଜିକ ତତ୍ତ୍ୱ ଭୁଶୁଡ଼ି ପଡ଼େ ଏବଂ ଯୁଦ୍ଧ ଓ ବିପ୍ଳବ ମାନବ ସମାଜକୁ ଘନ ଅନ୍ଧାର ଭିତରକୁ ଠେଲିଦିଏ, ସେତିକିବେଳେ ଯେଉଁ କବିକୁ ପ୍ଲାଟୋ ତାଙ୍କର ରିପବ୍ଲିକ୍‌ରୁ ନିର୍ବାସିତ କରିଥିଲେ, ସେହି କବି ହିଁ ଆମର ତ୍ରାଣକର୍ତ୍ତା ରୂପେ ଆବିର୍ଭୂତ ହୁଅନ୍ତି ।' 'ତାଙ୍କ ରଚିତ, 'The Estate', 'Shosha', 'The Slave', 'A Crown of Feathers and Other Stories', 'Enemises', ' A Love Story', 'A Friend of Kafka and Other Stories' ଆଦି ଉପନ୍ୟାସ ଓ ଗଳ୍ପ ସଂକଳନମାନଙ୍କରେ ଏହି ସତ୍ୟ ସ୍ପଷ୍ଟ ଅନୁରଣିତ ହୁଏ । ଏ ପ୍ରକାର ଜୀବନଦୃଷ୍ଟିର ରୂପାନ୍ତର ହେଉଛି 'ମରଣ ଫେରନ୍ତା ଲୋକ' – ସିଙ୍ଗରଙ୍କ ଓଡ଼ିଆ The Man Who Has Returned From Deathର ଓଡ଼ିଆ ଅନୁବାଦ ।*

# ମରଣ ଫେରନ୍ତା ଲୋକ

କଥାଟାକୁ ଆପଣଙ୍କୁ ହୁଏତ ମିଛ, କିନ୍ତୁ ମୋ ପାଇଁ ସତ —ସଂସାରରେ ଏମିତି କିଛି ଲୋକ ଥିବାର ଦେଖାଯାଏ, ଯେଉଁମାନଙ୍କୁ କି ମୃତ୍ୟୁ କବଳରୁ ଅଣାଯାଇଥାଏ । ଆମ ସହର ଟରବିନ୍‌ରେ ଏକଦା ସେଭଳି ଜଣେ ଧନାଢ୍ୟ ବ୍ୟକ୍ତିଙ୍କ ସହ ମୋର ପରିଚୟ ଥିଲା । ସେ କୌଣସି ଏକ ମାରାତ୍ମକ ବ୍ୟାଧିରେ ଆକ୍ରାନ୍ତ ହୁଅନ୍ତି – ଈଶ୍ୱର ନ କରନ୍ତୁ ଆମ କାହା ଭାଗ୍ୟରେ ସେଭଳି ବିପତ୍ତି ନପଡୁ ! ଡାକ୍ତର କହିଲେ, 'ତୁମ ହୃତ୍‌ପିଣ୍ଡର ନିମ୍ନ ପ୍ରଦେଶରେ ମାଂସପିଣ୍ଡୁଳାଟିଏ ବୃଦ୍ଧିଲାଭ କରିଛି ।'

ଚର୍ବିବହୁଳତାର ନିରାକରଣ ପାଇଁ ସେ ଅନେକ ଉଷ୍ଣ ପ୍ରସ୍ରବଣ ପରିଦର୍ଶନ କଲେ; କିନ୍ତୁ ସବୁ ନିଷ୍ଫଳ ହେଲା । ତାଙ୍କ ନାଁ ଆଲ୍‌ତର୍ ଏବଂ ସ୍ତ୍ରୀର ନାଁ ସିଫ୍ରା ଲେହ ।

ଆଜିକାଲି ବି ଯଦି କେବେ ସେମାନଙ୍କ କଥା ମନେ ପଡ଼ିଯାଏ, ପତିପତ୍ନୀ ଦୁହେଁ ମୋ ଆଖି ଆଗରେ ଅବିକଳ ଜୀବନ୍ତ ଛିଡ଼ା ହୋଇଥିଲା ପରି ଦେଖାଯାନ୍ତି ।

ସିଫ୍ରା କାଠି ପରି କ୍ଷୀଣତନ୍ୱୀ ଥିଲା; କୋଦାଳ ପରି କଳା ବର୍ଣ୍ଣର ତା'ର ଦେହଟି ପ୍ରାୟ ଅସ୍ଥିଚର୍ମସାର ଥିଲା । ଆଲ୍‌ତର୍ ଖର୍ବକାୟ ହେଲେ ବି ସୁଦର୍ଶନ ଥିଲେ – ହାଣ୍ଡି ପରି ବିଶାଳ ପେଟ ସହିତ ଛୋଟିଆ ଗୋଲ ଦାଢ଼ି । ଜଣେ ଧନାଢ୍ୟ ବ୍ୟକ୍ତିଙ୍କ ସ୍ତ୍ରୀ ହେଲେ ବି ବେଶଭୂଷାରେ ସିଫ୍ରା ବେଶ୍ ସରଳ ଥିଲା; ହଳେ ଦଦରା କ୍ଲଡ୍ ହପରସ୍ ସହିତ ମୁଣ୍ଡରେ ସାଲ୍‌ଟିଏ ଘୋଡ଼େଇ ଦେଉଥିଲା । ଶସ୍ତାରେ କେଉଁଠି ଗହମ ମିଳୁଛି, ସେଇ ସନ୍ଧାନରେ ସବୁବେଳେ ଥାଏ । ଯେବେ କୌଣସି ଖବର ପାଏ ଯେ ଅମୁକ ଗାଁରେ କମ୍ ଦରରେ ଗହମ କିମ୍ବା ଅନ୍ୟ କିଛି ଶସ୍ୟ ମିଳୁଛି, ସାଙ୍ଗେ ସାଙ୍ଗେ ପାଦରେ ଚାଲି ଚାଲି ସେଠାରେ ଉପସ୍ଥିତ ହୁଏ ଏବଂ ଚାଷୀମାନଙ୍କ ସହିତ ସେ ଏମିତି ଜୋର୍‌ଦାର୍ ମୂଲେଇ, ଦର କଷାକଷି କରେ ଯେ ଶେଷରେ ଅତି ଅଳ୍ପ ଦରରେ ଶସ୍ୟ ବିକ୍ରୟ କରିବାକୁ ସେମାନେ ବାଧ୍ୟ ହୁଅନ୍ତି । କଥାଟି ପ୍ରକାଶ କରିବା ପୂର୍ବରୁ ମୁଁ ଯଥାରୀତି କ୍ଷମା ପ୍ରାର୍ଥନା କରି ନେବା ଉଚିତ୍ ମନେ କରୁଛି ଯେ ସିଫ୍ରା ଆଦୌ କୌଣସି ଭଲ ପରିବାରର ଝିଅ ନଥିଲା । ଆଲ୍‌ତର୍ ଜଣେ କାଠ ବ୍ୟବସାୟୀ ଥିଲେ; ସହରର ପ୍ରାୟ ଅଧାଅଧି ଲୋକ ତାଙ୍କଠୁଁ କାଠ କିଣୁଥିଲେ । ଖାଦ୍ୟପେୟ ଓ ପୋଷାକ ପରିଚ୍ଛଦରେ ତାଙ୍କର ବେଶ୍ ଉନ୍ନତ ଓ ପରିମାର୍ଜିତ ରୁଚି ଥିଲା । ସମ୍ଭ୍ରାନ୍ତ ସୁଲଭ ସର୍ଟ୍‌କୋର୍ଟ ଓ

ସୁନ୍ଦର ଚମଡ଼ା ତିଆରି ଜୋତା ପିନ୍ଧୁଥିଲେ । ଦାଢ଼ିକୁ ଏଭଳି ସୁନ୍ଦର ଭାବେ ସଜାଉଥିଲେ ଯେ ଆପଣ ଚାହିଁଲେ ଗୋଟା ଗୋଟା କରି ଗଣି ପାରିବେ ।

ଆଲ୍‌ତର୍ ରୁଚିପୂର୍ଣ୍ଣ ଓ ସୁସ୍ୱାଦୁ ଆହାର ପସନ୍ଦ କରୁଥିଲେ । ସିଫ୍ରା ପ୍ରତ୍ୟେକ ବସ୍ତୁ ଉପରେ ବ୍ୟୟ ସଂକୋଚନ ପାଇଁ ଯଥାସମ୍ଭବ ଚେଷ୍ଟା କରୁଥିଲା । କିନ୍ତୁ ସ୍ୱାମୀଙ୍କ ମିଜାଜ୍ ଥିଲା ଭିନ୍ନ । ଚର୍ବିବହୁଳ ସୁପ୍ ପ୍ରତି ଆଲ୍‌ତରଙ୍କ ଏକ ବିଶେଷ ଆକର୍ଷଣ ଥାଏ । ସେଥିପାଇଁ ସିଫ୍ରା ସବୁବେଳେ କଂସେଇକୁ ତାଗିଦା କରେ – ବାବୁଙ୍କ ପାଇଁ ସୁପ୍ ହେବ, ମାଂସ ସାଙ୍ଗକୁ ଯେମିତି ପ୍ରଚୁର ଚର୍ବି ଓ ମଜ୍ଜା ଲାଗିଥିବ । ଆମ କାଳ କଥା ଭିନ୍ନ ଥିଲା; ସେତେବେଳେ ବିବାହ ପରେ ସ୍ୱାମୀ ସ୍ତ୍ରୀ ପରସ୍ପରକୁ ଭଲ ପାଇବା ଶିଖୁଥିଲେ, ଛାଡ଼ପତ୍ର କଥା ଶୁଣିବାକୁ ମିଳୁ ନଥାଏ । ସିଫ୍ରା ଲେହ୍ ସ୍ୱାମୀଙ୍କ ପ୍ରଣୟରେ ଏତେ ନିବିଡ଼ ଭାବେ ନିମଜ୍ଜିତ ଯେ ଲୋକେ ତାକୁ ଥଟ୍ଟା କରିବାକୁ ବାଧ୍ୟ ହେଉଥାନ୍ତି । ତା' ତୁଣ୍ଡରେ ଦିନରାତି ସେଇ ଗୋଟାଏ କଥା, 'ଆଲ୍‌ତର୍ ମୋ ସ୍ୱାମୀ, ଆଲ୍‌ତର୍ ଦୁର୍ଲଭ, ଅନନ୍ୟ, ମହାନ୍ ।' ସେମାନେ ନିଃସନ୍ତାନ ଥିଲେ । ପିଲାପିଲି ନଥିବା ସ୍ତ୍ରୀ ଲୋକମାନେ ସାଧାରଣତଃ ନିଜ ସ୍ୱାମୀକୁ ଖୁବ୍ ଭଲ ପାଆନ୍ତି । ଡାକ୍ତର କହନ୍ତି – ସ୍ୱାମୀଙ୍କ ତ୍ରୁଟି ଅଛି, କିନ୍ତୁ ପ୍ରକୃତ ତଥ୍ୟ କିଏ ବା' ଜାଣେ ?

ଯାହାହେଉ ଆଲ୍‌ତର୍ ରୋଗାକ୍ରାନ୍ତ ହେବା ଫଳରେ ପରିସ୍ଥିତି ବେଦନାଦାୟକ ହୁଏ । ବହୁ ପ୍ରବୀଣ ଚିକିତ୍ସକ ଆସି ତାଙ୍କୁ ପରୀକ୍ଷା କରନ୍ତି । କିନ୍ତୁ କିଛି ଲାଭ ହୁଏ ନାହିଁ । ସେ ଶେଯରେ ନିସ୍ତେଜ ଭାବରେ ପଡ଼ି ରହନ୍ତି ଏବଂ ଦିନକୁ ଦିନ କ୍ରମଶଃ ଦୁର୍ବଳ ହେଉଥାନ୍ତି । ଅବଶ୍ୟ ତାଙ୍କର ଖିଆପିଆ ରୀତିମତ ଠିକ୍ ଚାଲିଥାଏ; ସିଫ୍ରା ସ୍ୱାମୀଙ୍କୁ ନିୟମିତ ପାରାରୋଷ୍ଟ ଇତ୍ୟାଦି ଉତ୍ତମ, ସୁସ୍ୱାଦୁବ୍ୟଞ୍ଜନ ପରଷୁଥାଏ – ମାତ୍ର ସେ କ୍ରମଶଃ କ୍ଷୀଣତର ହେଉଥାନ୍ତି । ବାପା ପଠାଇଥିବା ପ୍ରାର୍ଥନା ପୁସ୍ତକଟିଏ ଭେଟି ଦେବା ଉଦ୍ଦେଶ୍ୟରେ ଦିନେ ତାଙ୍କ ଘରେ ମୁଁ ପହଞ୍ଚିଲି । ସବୁଜ ରଙ୍ଗର ଡ୍ରେସିଂ ଗାଉନ୍ ସହିତ ଧଳା ମୋଜା ପିନ୍ଧି ସୁଦର୍ଶନ ଆଲ୍‌ତର୍ ସୋଫାରେ ଶୋଇଥା'ନ୍ତି । ସେ ବେଶ୍ ସୁସ୍ଥ ଜଣା ପଡୁଥା'ନ୍ତି, ଯଦିଓ ତାଙ୍କ ଉଦରଟି ଢ଼ୋଲ ପରି ଫୁଲି ଯାଇଥାଏ ଏବଂ କଥା କହିବା ବେଳେ ଅଣନିଃଶ୍ୱାସୀ ହୋଇ ପଡୁଥାନ୍ତି । ପୁସ୍ତକଟି ମୋ'ଠାରୁ ଗ୍ରହଣ କଲେ ଏବଂ ମୋତେ ଗୋଟାଏ କୁକି ବିସ୍କୁଟ୍ ଦେଇ ଗାଲକୁ ଟିକିଏ ଚିମୁଟି ଦେଲେ ।

ଦିନେ ଦୁଇଦିନ ପରେ ଦାରୁଣ ସଂବାଦ ଆସି ପହଞ୍ଚେ ଯେ ଆଲ୍‌ତରଙ୍କ କାଳ ପୂରିବାକୁ ଯାଉଛି । ପୁରୁଷଲୋକମାନେ ରୁଣ୍ଡ ହୁଅନ୍ତି ଏବଂ ସମାଧି-ସମାଜର କର୍ମୀମାନେ ତତ୍ପରତା ସହ ଦ୍ୱାର ଆଗରେ ଅପେକ୍ଷା କରନ୍ତି । ତା'ପରେ କ'ଣ ହେଲା, ମନ ଦେଇ ଶୁଣନ୍ତୁ । ସ୍ୱାମୀଙ୍କ ଆସନ୍ନ ମୃତ୍ୟୁରେ ବିବ୍ରତା ହୋଇ ସିଫ୍ରା ଡାକ୍ତରଙ୍କ ନିକଟକୁ ଧାଇଁଯାଏ । କିନ୍ତୁ ଡାକ୍ତରଙ୍କ ସହିତ ଘରକୁ ଲେଉଟି ସେ ଦେଖେ – ସମାଧି-ସମାଜର ବରିଷ୍ଠ କର୍ମୀ ଲିଜର୍ ଗୋଡ଼ଲ୍ ତା' ନାକ ସାମ୍ନାରେ ପରଟିଏ ଧରି ଛିଡ଼ା ହୋଇଛନ୍ତି ।

ତା'ହେଲେ ସବୁ କଥା ସରି ଯାଇଛି ଏବଂ ସେମାନେ ପ୍ରଥାନୁଯାୟୀ ଆଲ୍‌ତରଙ୍କୁ ଉଠେଇବା ପାଇଁ ଉଦ୍ୟତ ହେଉଛନ୍ତି । ଅପ୍ରତ୍ୟାଶିତ ଦୃଶ୍ୟଟି ଦେଖି ସିପ୍ରା ହଠାତ୍ ପାଗଳିନୀଙ୍କ ପରି ଚିତ୍କାର କରି ଉଠିଲା - 'ତୁମେ ସବୁ ଘାତକ, ପଶୁ ଶୟତାନ୍ ଦଳ ! ଅତି ଶୀଘ୍ର ମୋ ଘରୁ ବାହାରି ଯାଅ । ସିଏ ବଂଚିବେ, ନିଶ୍ଚୟ ବଂଚିବେ ।'

ତା'ର କରୁଣ ବିଳାପ ସହରର ସୀମାନ୍ତ ଅଞ୍ଚଳ ପର୍ଯ୍ୟନ୍ତ ପ୍ରତିଧ୍ୱନିତ ହେଲା । ଝାଡୁଟିଏ ଧରି କ୍ରୋଧରେ ସେ ଜୋର୍‌ରେ ବୁଲେଇବାକୁ ଲାଗିଲା । ସମବେତ ଜନତା ଭାବିଲେ ନିଶ୍ଚୟ ତା'ର ମୁଣ୍ଡ ଖରାପ ହୋଇଗଲାଣି । ତା'ପରେ ସେ ଆଲ୍‌ତରଙ୍କ ଶବ ପାର୍ଶ୍ୱରେ ଆଣ୍ଠୁ ନୁଆଇଁ ବସିପଡ଼େ । ତାଙ୍କୁ ଜୋର୍‌ରେ ହଲାଇ କରୁଣ ଚିତ୍କାର କରି ଉଠେ – 'ନା, ମୋତେ ଛାଡ଼ି ଯାଅନା, ଆଲ୍‌ତର୍ ! ସାଙ୍ଗରେ ନେଇ ଯା ।'

ତା'ର ଏଇ ଚିତ୍କାରରେ ଚତୁର୍ଦ୍ଦିଗ ପ୍ରକମ୍ପିତ ହୋଇଯାଏ ।

ଆମେ ଜାଣୁ ଯେ ଗୋଟିଏ ଶବକୁ ହଲାହଲି କରିବା କଦାପି ଧର୍ମସଂଗତ ନୁହଁ । ସମସ୍ତଙ୍କ ବାରଣ ସତ୍ତ୍ୱେ ସିପ୍ରା ସ୍ୱାମୀଙ୍କ ଶବ ଉପରେ ଆଉଜି ପଡ଼େ ଏବଂ ନାକ କାନ ପାଖରେ ଚିତ୍କାର କରେ – 'ଉଠ, ଉଠ ଆଲ୍‌ତର୍ ଉଠ !'

ତା' ଚିତ୍କାର ଏତେ ପ୍ରଚଣ୍ଡ ଥିଲା ଯେ କୌଣସି ଜିଅନ୍ତା ମଣିଷ ପକ୍ଷେ ବି ସହ୍ୟ କରିବା ସମ୍ଭବ ନଥିଲା । ହୁଏତ କାନର ପରଦା ଫାଟି ଯାଇଥାଆନ୍ତା । ସେମାନେ ତା'ପରେ ଯେତେବେଳେ ସିପ୍ରାକୁ ଟାଣି ଦେବା ପାଇଁ ଉଦ୍ୟତ ହୁଅନ୍ତି, ହଠାତ୍ ଶବଟି ସାମାନ୍ୟ ହଲ୍‌ଚଲ୍ ହୁଏ ଏବଂ ଗୋଟାଏ ଦୀର୍ଘ ନିଃଶ୍ୱାସ ଛାଡ଼େ । ଓ !, ତା'ହେଲେ ସିପ୍ରା ନିଜର ସ୍ୱାମୀଙ୍କୁ ମୃତ୍ୟୁ କବଳରୁ ଫେରାଇ ଆଣି ପାରିଛି । ଆମେ ଏକଥା ଜାଣି ରଖିବା ଉଚିତ୍ ଯେ ଯେତେବେଳେ କୌଣସି ବ୍ୟକ୍ତି ଦେହ ତ୍ୟାଗ କରେ, ତା'ର ଆତ୍ମାଟି ସଙ୍ଗେ ସଙ୍ଗେ ସିଧା ସଳଖ ସ୍ୱର୍ଗକୁ ଚାଲି ଯାଇପାରେ ନାହିଁ । ନାକପୁଡ଼ା ପାଖରେ ତାହା ଭଣ ଭଣ ହେଉଥାଏ ଏବଂ ପୁନରାୟ ଅଭ୍ୟସ୍ତ ପୁରୁଣା ଶରୀର ଭିତରକୁ ପ୍ରବେଶ କରିବା ପାଇଁ ମନ କରୁଥାଏ । ସେତେବେଳେ ଯଦି କେହି ପ୍ରବଳ ଚିତ୍କାର କରିବସେ, ବାସଚ୍ୟୁତ ଆତ୍ମାଟି ଭୟଭୀତ ହୋଇ ପୁରୁଣା ଶରୀର ଭିତରକୁ ପଶି ଆସେ । ଅଳ୍ପ କେଇକ୍ଷଣ ପରେ ପୁଣି ଚାଲିଯାଏ, କାରଣ ବ୍ୟାଧିଗ୍ରସ୍ତ ଶରୀରଟି ଧାରଣ କ୍ଷମତା ହରାଇ ବସିଥାଏ । କିନ୍ତୁ କଦବା କେମିତି ଏଭଳି ଘଟିଥିବାର ଦୃଷ୍ଟାନ୍ତ ରହିଛି ଯେ ଆତ୍ମାଟି ଫେରି ନଯାଇ ପୁଣି ସେମିତି ରହିଯାଏ । ଏବଂ ଲୋକେ ତାକୁ କହନ୍ତି – 'ମରଣ ଫେରନ୍ତା ଲୋକ ।'

କଥାଟି ଆଦୌ ଭଲ ନୁହେଁ, ନିଷିଦ୍ଧ । ଯେତେବେଳେ ଯାହାର କାଳ ପୂରି ଯାଉଛି, ସିଏ ଯଥାଶୀଘ୍ର ବିଦାୟ ନେଇ ଚାଲିଯିବା ଉଚିତ୍ । ପ୍ରତ୍ୟାବର୍ତ୍ତନକାରୀ ମଣିଷଟି ଆଉ ପୂର୍ବର ସ୍ୱଭାବ ଫେରିପାଏ ନାହିଁ; ସେ ଅନ୍ୟମାନଙ୍କଠୁ ଭିନ୍ନ, ସମ୍ପୂର୍ଣ୍ଣ ଅଲଗା ମଣିଷଟିଏ ହୋଇଯାଏ । ସେ ଏଇଠି ଥାଇ ସୁଦ୍ଧା ନଥାଏ; ଇତର ଜଗତମାନଙ୍କରେ

ଘୂରି ବୁଲୁଥାଏ; ତେଣୁ ସମାଧି ହିଁ ତା'ପାଇଁ ଶ୍ରେଷ୍ଠ ନିବାସସ୍ଥଳୀ । ଲୋକଟି ଶ୍ୱାସପ୍ରଶ୍ୱାସ ନେଉଥାଏ, ଖିଆ ପିଆ କରୁଥାଏ ଏବଂ ବଂଚି ରହିଥାଏ । ଏପରିକି ସେ ନିଜ ସ୍ତ୍ରୀ ସହିତ ବେଶ୍ ସୁଖପ୍ରଦ ଦାମ୍ପତ୍ୟ ଜୀବନଯାପନ କରିପାରେ । କେବଳ ଗୋଟିଏ ବ୍ୟତିକ୍ରମ - ତା'ର କୌଣସି ଛାୟା ପଡ଼େ ନାହିଁ । ଜନଶ୍ରୁତି ଅଛି, ଲୁବ୍‌ଲିନ୍ ସହରରେ ଏଭଳି ମରଣ ଫେରନ୍ତା ଲୋକ ଥିଲା । ଦୀର୍ଘ ବାରବର୍ଷ କାଳ ସେ ଦିନସାରା ପ୍ରାର୍ଥନା ଗୃହ ଭିତରେ ବସିଥାଏ । କିଛି କଥା କୁହେନି । ଏପରିକି ଜାଲମ୍ ଆବୃତ୍ତି ମଧ୍ୟ କରେ ନାହିଁ । ଏଇ ଦୀର୍ଘ କାଳ ମଧ୍ୟରେ ତା'ର ଶରୀରଟି କ୍ରମଶଃ ପଚୁଥାଏ ଏବଂ ମାଂସତକ ଧୂଳିରେ ପରିଣତ ହୋଇଯାଇଥାଏ । ଶେଷରେ ପୋତିଲା ବେଳକୁ ପ୍ରାୟ ଆଉ କିଛି ନଥାଏ । ଅଲ୍‌ତର୍‌ଙ୍କ କଥା ନିଆରା । ସେ ତତ୍‌କ୍ଷଣାତ୍ ଆଶ୍ୱସ୍ତି ଲାଭ କରି କଥାବାର୍ତ୍ତା, ଥଟ୍ଟା ପରିହାସ ଆରମ୍ଭ କରିଦେଲେ, ସତେ ଯେମିତି ଅଘଟଣ କିଛି ଘଟି ନଥାଏ ! ତାଙ୍କ ବିଶାଳ ଉଦରଟି ସଂକୁଚିତ ହୋଇ ଯାଇଥାଏ ଏବଂ ଡାକ୍ତର କହିଲେ – 'ତୁମ ହୃତ୍‌ପିଣ୍ଡରେ ଆଉ ଚର୍ବି ନାହିଁ ।'

ଟର୍‌ବିନ୍ ସହରର ଚାରିଆଡ଼େ ଚହଳ ପଡ଼ିଗଲା । ଅନ୍ୟ ସହରର ଲୋକେ ତାଙ୍କ ଦର୍ଶନ ପାଇଁ ବ୍ୟାକୁଳ ହେଲେ । ଗୁଜବ ରଟିଲା ଯେ 'ସମାଧି ସମାଜ' ଜୀଅନ୍ତା ମଣିଷମାନଙ୍କୁ କବର ଦେଇ ଦେଉଛନ୍ତି; କାରଣ ଯଦି ଅଲ୍‌ତର୍‌ଙ୍କୁ ଫେରାଇ ଅଣାଗଲା, ଅନ୍ୟମାନଙ୍କ କ୍ଷେତ୍ରରେ କାହିଁକି ତାହା ସଂଭବ ହୋଇ ପାରିବନି ? ଅନ୍ୟ ସମସ୍ତେ କ'ଣ ଅପସ୍ମାର ରୋଗୀ ଥିଲେ କି ?

ସିଫ୍ରା ଯଥାଶୀଘ୍ର ସମ୍ଭବ ଅନ୍ୟ ସମସ୍ତଙ୍କୁ ବାହାର କରିଦେଲା; ଘର ଭିତରକୁ କାହାରିକୁ ପ୍ରବେଶ ଅନୁମତି ଦେଲା ନାହିଁ, ଡାକ୍ତରଙ୍କୁ ମଧ୍ୟ । କବାଟରେ ତାଲା ଝୁଲେଇ ଦେଲା; ପରଦାଗୁଡ଼ିକ ଟାଣିଦେଲା ଏବଂ ସ୍ୱାମୀଙ୍କ ଶୁଶ୍ରୂଷାରେ ଲାଗି ପଡ଼ିଲା । ପଡ଼ୋଶୀଙ୍କ ସମ୍ବାଦରୁ ଯାହା ଜଣାପଡ଼େ ଆଲ୍‌ତର୍ ଆସ୍ତେ ଆସ୍ତେ ବସାଉଠା କଲେଣି; ଖାଇବା ପିଇବା ଚାଲିଛି; ବ୍ୟବସାୟ ସମ୍ପର୍କିତ ହିସାବପତ୍ର ତଦାରଖ କରୁଛନ୍ତି ।

ଗୋଟିଏ ମାସର ବିଶ୍ରାମ ପରେ ସୁଦର୍ଶନ ଆଲ୍‌ତର୍ ପୁଣି ବଜାର ସ୍ଥଳୀରେ ଦୃଶ୍ୟମାନ ହେଲେ – ହାତରେ ସେଇ ପୁରୁଣା ବେତ, ମୁହଁରେ ସଯତ୍ନ ବର୍ଦ୍ଧିତ ଦାଢ଼ୀ ଏବଂ ପାଦରେ ପିନ୍ଧିଥାନ୍ତି ସମୁଜ୍ଜ୍ୱଳ ଜୋତା । ଲୋକେ ତାଙ୍କ ଚାରିପାଖେ ବେଢ଼ିଗଲେ; ଅଭିନନ୍ଦନ ଜଣାଇଲେ ଏବଂ ଉତ୍ତମ ସ୍ୱାସ୍ଥ୍ୟ କାମନା କଲେ । ସେ ପ୍ରତ୍ୟୁତ୍ତରରେ କହିଲେ, 'ତା'ହେଲେ ଆପଣମାନେ ବୋଧହୁଏ ଭାବୁଥିଲେ ଆଲ୍‌ତର୍ କବଳରୁ ସବୁଦିନ ପାଇଁ ରକ୍ଷା ପାଇଗଲୁ ? ନା, ଏତେ ଜଲ୍‌ଦି ନୁହେଁ । ଅନେକ ବିଳମ୍ବ ଅଛି ।'

'ଆଚ୍ଛା, ଶ୍ୱାସପ୍ରଶ୍ୱାସ ବନ୍ଦ ହୋଇଯିବା ପରେ ତୁମେ କ'ଣ କଲ ?'

ଲୋକେ ଜିଜ୍ଞାସା କରନ୍ତି ।

ଆଲ୍‌ତର୍ କୁହନ୍ତି, 'ମୁଁ କିଛି ଲେଭିଆଥାନ୍ ଖାଇଲି ଏବଂ ତାକୁ ସୋରିଷ ଭିତରେ ପୋତି ପକାଇଲି ।'

ପୂର୍ବଭଳି ତାଙ୍କ କଥାବାର୍ତ୍ତାରେ ହସ କୌତୁକ ଓ ଥଟ୍ଟା ପରିହାସ ଭରପୂର ଥାଏ । ଶୁଣାଯାଏ – ରାବି କୁଆଡ଼େ ଥରେ ତାଙ୍କୁ ସମନ କରିଥିଲେ; ବିଚାର କକ୍ଷରେ ଉଭୟେ କ'ଣ ସବୁ କଥାବାର୍ତ୍ତା କଲେ, କେହି ଜାଣନ୍ତି ନାହିଁ ।

ଆଲ୍‌ତର୍‌ଙ୍କୁ ଏଣିକି ନୂତନ ଆଖ୍ୟାଟିଏ ମିଳେ, 'ମରଣ ଫେରନ୍ତା ଲୋକ' । ସେ ପୁନରାୟ ନିଜ କାଠ ବ୍ୟବସାୟରେ ବ୍ୟସ୍ତ ରହିଲେ । କବର ଖୋଳାଳିଙ୍କ ମୁହଁ ଶୁଖିଗଲା; ସେମାନେ ଉଚ୍ଚ ଅଙ୍କର ପାଉଣା ଆଶା କରିଥିଲେ, ତାହା ବୃଥା ହୋଇଗଲା । ପ୍ରଥମେ ଲୋକେ ତାଙ୍କୁ ସାମାନ୍ୟ ଭୟ କରୁଥିଲେ । କିନ୍ତୁ ଭୟ କରିବାର କ'ଣ ବା ଥିଲା ? ସେ ତ ସେଇ ସମାନ ବ୍ୟବସାୟୀ; ବ୍ୟଧି ଯୋଗୁଁ ଅବଶ୍ୟ ବେଶ୍ କିଛିଟା ଖର୍ଚ୍ଚାନ୍ତ ହୋଇ ପଡ଼ିଥିଲେ; ତଥାପି ତାଙ୍କର ଆହୁରି ଅନେକ ସମ୍ପତ୍ତି ରହିଥିଲା । ଶନିବାରମାନଙ୍କରେ ସେ ପ୍ରାର୍ଥନା ସଭାକୁ ଆସୁଥିଲେ; ଧର୍ମଗ୍ରନ୍ଥ ପାଠ କରିବା ପାଇଁ ତାଙ୍କୁ କୁହାଯାଉଥିଲା; ସମବେତ ଜନତାଙ୍କୁ ସେ ଧନ୍ୟବାଦ ଅର୍ପଣ କରୁଥିଲେ । ଦରିଦ୍ର ନିବାସକୁ କିଛି ଅର୍ଥଦାନ ଦେବେ ବୋଲି ଲୋକେ ଆଶା କରୁଥିଲେ; ସହରବାସୀଙ୍କୁ ଗୋଟାଏ ଭୋଜି ଦେବାର କଥା । ଆଲ୍‌ତର୍ କିନ୍ତୁ ସମ୍ପୂର୍ଣ୍ଣ ନୀରବ ରହିଗଲେ । ଆଉ ସିଫ୍ରା କଥା କହିଲେ ନସରେ – ମୟୂରୀ ପରି ଛାତି ଫୁଲେଇ ଚାଲୁଛି ଏବଂ ଲୋକ ଦେଖିଲେ ନାକ ଟେକୁଚି । ତା'ର ସଫଳତା କିଛି ସାମାନ୍ୟ ନଥିଲା – ସ୍ୱାମୀଙ୍କୁ ମୃତ୍ୟୁ କବଳରୁ ଫେରାଇ ଆଣି ପାରିଛି । ଆମ ସହରଟା ବେଶ୍ ବଡ଼ ଥିଲା । ଏମିତି ଅନେକ ଲୋକଙ୍କ ଦେହ ଖରାପ ହୋଇଚି – ମୃତ୍ୟୁ ବରଣ କରିଛନ୍ତି; କିନ୍ତୁ ସିଫ୍ରା ଭଳି ଅନ୍ୟ କାହାରି ସ୍ତ୍ରୀ ପାଟିରେ ଏତେଟା ଜୋର୍ ନଥିଲା । ଯଦି ପ୍ରତ୍ୟେକ ମଣିଷକୁ ଏଭଳି ମୃତ୍ୟୁ କବଳରୁ ଫେରାଇ ଅଣାଯାଇ ପାରୁଥା'ନ୍ତା, ତେବେ ଯମଦୂତଙ୍କ ହାତରୁ ତରବାରି ଆପେ ଖସି ପଡ଼ନ୍ତା ।

ତା'ପରେ ଘଟଣାବଳୀ ଭିନ୍ନ ମୋଡ଼ ନିଏ । କରତକଳ ବ୍ୟବସାୟରେ ଆଲ୍‌ତର୍‌ଙ୍କ ଜଣେ ଅଂଶୀଦାର୍ ଥିଲେ; ତାଙ୍କ ନାଁ ଥାଏ ଫାଲିକ୍ ଓ୍ୱେନ୍ ଗାର୍ଟେନ୍ । ଫାଲିକ୍ ଜଣେ ସମ୍ଭ୍ରାନ୍ତ ବ୍ୟକ୍ତି ଥିଲେ । ସେ ଥରେ ଆସି ରାବିଙ୍କୁ ଅଦ୍ଭୁତ କଥାଟିଏ କହନ୍ତି ଯେ ତାଙ୍କ ଅଂଶୀଦାର ଅଲ୍‌ତର୍ ଗୋଟାଏ ପ୍ରବଞ୍ଚକ ପାଲଟି ଯାଇଛି । ସେ ଅର୍ଥ ଚୋରି କରି ନେଇ ଯାଇଛି ଏବଂ ନାନା କୌଶଳ ଓ ଶଠ ଆଚରଣ ଦ୍ୱାରା ଫାଲିକ୍‌ଙ୍କୁ ବ୍ୟବସାୟରୁ ବାହାର କରି ଦେବା ପାଇଁ ଉଦ୍ୟମ ଚଳାଇଛି ।

ରାବି ପ୍ରଥମେ କଥାଟିକୁ ବିଶ୍ୱାସ କରି ପାରିଲେ ନାହିଁ । ଜୀବନରେ ଏକଦା ଦାରୁଣ ସଂକଟର ସମ୍ମୁଖୀନ ହୋଇଥିବା ମଣିଷଟି ପୁଣି କ'ଣ ହଠାତ୍ ଗୋଟାଏ ଭଣ୍ଡ ହୋଇ ଯାଇପାରେ ? ନା, କଥାଟି ଗ୍ରହଣଯୋଗ୍ୟ ନୁହେଁ । କିନ୍ତୁ ଫାଲିକ୍ ମିଛ କହିବା ଲୋକ ନଥିଲେ । ଆଲ୍‌ତର୍‌କୁ ଡକାଯାଏ – ସେ ଯେଉଁଭଳି ଛଳନା, ଅଭିନୟ କରି କଳାକୁ ଧଳା ଓ ଧଳାକୁ କଳା ସାବ୍ୟସ୍ତ କରିଦିଏ, ଏମାନେ ଦୁହେଁ ସ୍ତମ୍ଭୀଭୂତ

ହୋଇଯା'ନ୍ତି । ପୁରୁଣା ଚିଠା, ପୁରୁଣା ହିସାବ, ଏପରିକି ରାଜା ଗୋବିସ୍କିଙ୍କ ଅମଳର ଦଲିଲ୍ ପତ୍ର ସବୁ ଦେଖାଏ ଏବଂ ଦାବୀ କରେ ଯେ ତା'ର ଅଂଶୀଦାରଠୁଁ ସେ ଆହୁରି ଅନେକ ଅର୍ଥ ପାଇବାର ଅଛି, ଯଦି ସେ ନ ଦିଅନ୍ତି ସେ ମୋକଦ୍ଦମା କରିବାକୁ ବାଧ ହେବ ।

ସହରର ଭଦ୍ରଲୋକମାନେ ଆଲ୍‌ତର୍‌ଙ୍କୁ ବୁଝେଇବା ପାଇଁ ଚେଷ୍ଟା କଲେ – 'ତୁମେ ଦୁହେଁ ଏତେବର୍ଷ ଧରି ଏକାଠି ବ୍ୟବସାୟ କରି ଆସୁଥିଲ, ଆଉ ହଠାତ୍ ଏମିତି କ'ଣ ହେଲା ?'

କିନ୍ତୁ ଆଲ୍‌ତର୍ ତ ସମ୍ପୂର୍ଣ୍ଣ ବଦଳି ଯାଇଥିଲା, ସେ କଳହର ସୂତ୍ର ଖୋଜୁଥାଏ । ସେ ମୋକଦ୍ଦମା ରୁଜୁ କଲା; କଚେରୀରେ ମାମଲା ଦୀର୍ଘ କାଳ ଧରି ପଡ଼ି ଚାଲିଲା ଏବଂ ପ୍ରଭୂତ ଅର୍ଥ ବ୍ୟୟ ହେଲା । ଫାଲିକ୍ ଏ ଘଟଣାରେ ମର୍ମାହତ ହୋଇ ଦେହ ତ୍ୟାଗ କଲେ । ଅବଶ୍ୟ ମୋକଦ୍ଦମାରେ କିଏ ଜିଣିଲା, ମୋର ମନେ ପଡୁନି । ଯାହା ମନେ ଅଛି –କରତକଳ ଋଣଦାତାମାନଙ୍କ ହାତରୁ ଚାଲିଯାଏ ଏବଂ ଫାଲିକ୍‌ର ବିଧବା ପତ୍ନୀ ଦରିଦ୍ର ଜୀବନ ଯାପନ କରନ୍ତି । ରାବି ଆଲ୍‌ତର୍‌କୁ ଭର୍ତ୍ସନା କଲେ – 'ଈଶ୍ୱର ତା'ହେଲେ କ'ଣ ଏଥିପାଇଁ ତୁମକୁ ପୁନର୍ଜୀବନ ପ୍ରଦାନ କଲେ ? ଏଇସବୁ ଅପକର୍ମ କ'ଣ ଈଶ୍ୱରଙ୍କ ପ୍ରତି ତୁମର କୃତଜ୍ଞତା ?'

ଆଲ୍‌ତର୍ ଶ୍ୱାନଟିଏ ପରି ବୋବାଳି ଉଠିଲା – 'ପରଲୋକ କଥା ସବୁ ମିଛ – ମୃତ ଅବସ୍ଥାରେ ମୁଁ ବରଂ ଭଲ ଥିଲି । କହି ରଖୁଛି – ସ୍ୱର୍ଗ ନର୍କ ବୋଲି କିଛି ନାହିଁ, ସବୁ ମିଛ, ସବୁ ବାଜେ କଥା ।'

ରାବି ଚିନ୍ତା କଲେ, ଆଲ୍‌ତର୍‌ର ନିଶ୍ଚୟ ମୁଣ୍ଡ ଗୋଳମାଳ ହୋଇ ଯାଇଛି ।

ବାକି କଥା ଧୈର୍ଯ୍ୟର ସହ ଶୁଣନ୍ତୁ ।

ସିପ୍ରା ଲେହ୍ ଗୋଟାଏ ବୀଭତ୍ସ ନାରୀ ଥିଲା । ଲୋକେ କହୁଥିଲେ, କୁଆଡ଼େ ସେ ଯେଉଁଠି ଛିଡ଼ା ହେଉଥିଲା, ସେଠାରେ ଗଦାଏ ମଇଳା ଜମା ହୋଇ ଯାଉଥାଏ । ଦିନେ ହଠାତ୍ ଆଲ୍‌ତର ଦାବୀ କରେ, 'ସିପ୍ରା, ନିଜକୁ ସୁନ୍ଦର ପୋଷାକ ଓ ରତ୍ନ ଅଳଙ୍କାରରେ ସଜାଅ । ନାରୀର ସ୍ଥାନ, କେବଳ ଶଯ୍ୟା ନୁହେଁ । ମୁଁ ଚାହେଁ, ଲୁବ୍‌ଲିନ୍ ରାଜପଥରେ ତୁମେ ମୋ ପ୍ରମୋଦ ବିହାରର ସଙ୍ଗିନୀ ହୁଅ !'

ସମଗ୍ର ସହରରେ ଚହଳ ପଡ଼ିଗଲା । ସିପ୍ରା ନୂଆ କାର୍ପାସ ପୋଷାକଟିଏ ତିଆରି କରାଇଲା ଏବଂ ଦିନେ ସାବାଥ୍ ଅପରାହ୍ନରେ ସହଧର୍ମିଣୀ ସିପ୍ରା ସହିତ ଆଲ୍‌ତର୍ କେଇ ଜଣ ଦରଜୀ ଓ ମୋଚି ବାଳକଙ୍କ ଗହଣରେ ଯାତ୍ରାରମ୍ଭ କଲା । ଏ ବିରଳ ଦୃଶ୍ୟଟି ଆବାଳ ବୃଦ୍ଧ ବନିତା ସଭିଙ୍କର ବେଶ୍ ଉପଭୋଗ୍ୟ ହୋଇଥିଲା ।

ଆଲ୍‌ତର୍ ତାର ଅପେକ୍ଷାକୃତ ଦୀର୍ଘ ଶ୍ମଶ୍ରୁକୁ ଛୋଟ କରି ନେଲେ ଏବଂ ଜଣେ ନିରୀଶ୍ୱରବାଦୀ ହେଲା । ଆଜିକାଲି ସେଗୁଡ଼ା ବହୁ ସଂଖ୍ୟାରେ ଚାରିଆଡ଼େ ଦେଖା

ଯାଉଛନ୍ତି – କିଏ ମନା କରୁଛି, ଯେ କୌଣସି ଗଧ ବି ଛୋଟ ଜାକେଟ୍ ପିନ୍ଧି ଦାଢ଼ି ଖିଅର କରି ନିଜକୁ ନାସ୍ତିକ ଘୋଷଣା କରିପାରେ । କିନ୍ତୁ ଆମ ସମୟରେ ଜଣେ ମାତ୍ର ନାସ୍ତିକ ଥିଲା – ସେ ହେଉଛି ସ୍ଥାନୀୟ କବିରାଜ । ଲୋକେ କହିବାକୁ ଲାଗିଲେ ଯେ ଯେତେବେଳେ ଚିକ୍କାର ପୂର୍ବକ ସିଫ୍ରା ଲେହ୍ ଆଲ୍ତର୍‌କୁ ଫେରାଇ ଆଣିଲା ସେତେବେଳେ କୁଆଡ଼େ ଆଗନ୍ତୁକ ଆତ୍ମାଟିଏ ତା' ଶରୀରରେ ପ୍ରବେଶ କରି ଯାଇଥିଲା । ଯେତେବେଳେ କେହି ମୃତ୍ୟୁବରଣ କରେ, ମୃତ ଶରୀରକୁ ଦଖଲ କରିବା ପାଇଁ କୁଆଡ଼େ ଅନେକ ଆତ୍ମା ଆତ୍ମୀୟ ସ୍ୱଜନଙ୍କର ହେଉ ବା ଅନ୍ୟ କାହାରି ହେଉ, ଧାଇଁ ଆସନ୍ତି । ସେମାନଙ୍କର ଭିତରେ ଅସୁର, ପିଶାଚଙ୍କ ଆତ୍ମା ବି ଥାଆନ୍ତି ।

ବୁଢ଼ା ରାବିଙ୍କ ଭିତରେ ଏରିକ୍ ଭିସ୍‌ନିଜର ଘୋଷଣା କରନ୍ତି ଯେ ବର୍ତ୍ତମାନର ଆଲ୍ତର୍ ପୂର୍ବ ଆଲ୍ତର୍ ନୁହେଁ । କଥାଟି ସତ । ଏବେ ସେ ଅଲଗା ରକମର କଥାବାର୍ତ୍ତା କରୁଛି, ଅଲଗା ରକମର ହସୁଛି, ତା'ର ଚାହାଣୀର ଢ଼ଙ୍ଗ ଏକବାର ବଦଳି ଯାଇଛି । ଯେବେ ସ୍ତ୍ରୀଲୋକମାନଙ୍କ ଆଡ଼େ ଚାହେଁ, ବାଜପକ୍ଷୀ ପରି ତା'ର ଶାଣିତ ଦୃଷ୍ଟିରେ ସେମାନେ କ୍ଷତ ବିକ୍ଷତ ଓ ସନ୍ତ୍ରସ୍ତ ହୋଇ ପଡ଼ନ୍ତି । ଆଜିକାଲି ସେ ବାଜାବାଲା, ନାଚବାଲା ଇତ୍ୟାଦି ବାଜେ ଲୋକଙ୍କ ସହିତ ମିଳାମିଶା କରୁଛି । ଆଉ ତା'ର ସ୍ତ୍ରୀଟା ତ ଗୋଟାଏ ଗାଈ; କିଛି ଜାଣି ପାରେନି, ବରଂ କହେ କ'ଣ ନା – 'ମୋ ଆଲ୍ତର୍ ଭାରି ଭଲ, ତା'ପରି ଆଉ କିଏ ଅଛି ?'

ସେତେବେଳେ ୱାରସ୍ ନଗରୀରୁ ଆସି ସ୍ତ୍ରୀ ଲୋକଟିଏ ଆମ ସହରରେ ପହଞ୍ଚେ । ସେ କୁଆଡ଼େ ତା' ନାନୀଘରକୁ ଆସିଥିଲା । ଭିଶୋଇ ଗୋଟାଏ ଭଣ୍ଡାରୀ, ନାନୀ କଥା ନକହିଲେ ଭଲ । ଭଣ୍ଡାରୀ ହାଟପାଳି ଦିନରେ ଚାଷୀମାନଙ୍କୁ ଖିଅର କରେ; ବିଚରା କ୍ଷତ ବିକ୍ଷତ ହୁଅନ୍ତି । ସେଭଳି ଲୋକଙ୍କ କ'ଣ ଥାଏ କହୁ ନାହାନ୍ତି, – ପଞ୍ଜୁରୀ ଭିତରେ ଦଳେ ପକ୍ଷୀ ଏବଂ ଗୋଟାଏ ଦେଶୀ କୁକୁର । ୱାରସ୍‌ରୁ ଆସିଥିବା ସ୍ତ୍ରୀ ଲୋକଟି ଗୋଟାଏ ଛାଡ଼ରୀ ଥିଲା; ଅବଶ୍ୟ ତା'ସ୍ୱାମୀ ନାଁ କେହି ଜାଣନ୍ତି ନାହିଁ । ବହୁ ବିଚିତ୍ର ବସ୍ତ୍ରଭୂଷଣରେ ସଜ୍ଜିତା ହୋଇ ସିଏ ଆମ ଗହଣକୁ ଆସିଥିଲା; କିନ୍ତୁ ଦ୍ୱିତୀୟ ଥର ପାଇଁ କାହିଁ ବା କିଏ ତା' ଆଡ଼େ ଚାହାନ୍ତେ ? ଝାଡୁ ମୁଠାଏକୁ ଲୁଗା ଗହଣା ପିନ୍ଧେଇ ଦେଲେ ବି ସୁନ୍ଦର ଦିଶିବ । ଏଠାକାର ମହିଳାମାନଙ୍କୁ ସେ ତା'ର ଅନ୍ତର୍ବାସ ସଂଲଗ୍ନ ଲମ୍ବା ମୋଜା ପ୍ରଦର୍ଶନ କରୁଥାଏ । ଏଭଳି ବ୍ୟବହାରରୁ ତା'ର ମତଲବ୍ ବେଶ୍ ଅନୁମାନ କରି ହେଉଥାଏ ଯେ ଜଣେ କାହାକୁ ଫାନ୍ଦରେ ପକେଇବା ପାଇଁ ସେ ଆମ ସହରକୁ ଆସିଥିଲା ଏବଂ ତା' ଫାନ୍ଦରେ କିଏ ପଡ଼ିପାରେ ବୋଲି ଆପଣ ଆଶା କରୁଛନ୍ତି ? ଆଲ୍ତର୍ ? ସହରବାସୀ ଏ କଥା ଯେତେବେଳେ ଶୁଣିବାକୁ ପାଇଲେ ଓ ଆଲ୍ତର୍ ଭଣ୍ଡାରୀର ଶାଳୀ ସାଙ୍ଗରେ ଲଣ୍ଡଭଣ୍ଡ ହେଉଛି, ସେମାନେ ବିଶ୍ୱାସ କରି ପାରିଲେନି । ମୋଚି, ମେହେନ୍ତରଙ୍କର ବି ସେ କାଳରେ ଶିଷ୍ଟାଚାର ପ୍ରତି କିଛିଟା

ସମ୍ମାନ ଥିଲା । କିନ୍ତୁ ଆଲ୍‌ତର୍ ଏବେ ଏକ ଭିନ୍ନ ମଣିଷ, ଇଜ୍ଜତ୍-ମହତ ସବୁ ହରାଇ ବସିଛି । ସେଇ ଛାଡ଼ରୀ ମାଇକିନିଆ ସହିତ ହାଟ ବଜାରରେ ବୁଲୁଛି; ଲୋକେ ଝରକା ଭିତରୁ ସେମାନଙ୍କୁ ଚାହିଁ ମୁଣ୍ଡ ହଲଉଛନ୍ତି; ବିରକ୍ତିରେ ଛେପ ପକାଉଛନ୍ତି । ଆଲ୍‌ତର୍ ସେ ସ୍ତ୍ରୀ ସହିତ ମଦଭାଟିକୁ ଯାଉଛି, ଯେମିତି ଚଷାମାନେ ନିଜ ସ୍ତ୍ରୀ ସହିତ ଆସନ୍ତି ଏବଂ ସେଠାରେ ଗହଳି ମଝିରେ ବସି ଦୁହେଁ ଧୂମ ପିଉଛନ୍ତି ।

ସିପ୍ରା ଲେହ୍ କାନ୍‌ରେ ଯେବେ କଥାଟି ପଡ଼େ, ସେ ଜାଣିଲା ଯେ ତା'ର ଘୋର ଦୁର୍ଦ୍ଦିନ ଆସି ଯାଇଛି । ବିବ୍ରତ ମନରେ ସେ ମଦଭାଟିକୁ ମାଡ଼ିଗଲା; କିନ୍ତୁ ତା'ର ସ୍ୱାମୀ ତାକୁ ବହୁ ଅଶ୍ରାବ୍ୟ ଗାଲିଗୁଲଜ କଲା । ନବାଗତା ଦୋଚାରୁଣୀ ତାକୁ ବିଦ୍ରୂପ ଓ ଉପହାସ କଲା । ସିପ୍ରା ନିଜ ସ୍ୱାମୀକୁ ନିବେଦନ କଲା – 'ଏଇ ସମାଜରେ ତୁମର କ'ଣ ଆଉ ମାନ ମହତ କିଛି ନାହିଁ ?'

'ସମାଜକୁ କିଏ ପଚାରେ; 'ଯା'କହିଦେବୁ ତୋ ସମାଜକୁ, ଆମ ପାଦ ତଳ ଚୁମ୍ବନ କରିବ ।'

ଦୋଚାରୁଣୀକୁ ଚାହିଁ ସିପ୍ରା କହିଲା – 'ଆଲ୍‌ତର୍ ମୋ ସ୍ୱାମୀ ।'

ଉତ୍ତର ଆସିଲା, 'ମୋର ମଧ୍ୟ ।'

ମଦଭାଟି ପରିଚାଳକ ହସ୍ତକ୍ଷେପ କରି କିଛି ବୁଝେଇବା ପାଇଁ ଚେଷ୍ଟା କରିବାରୁ ଆଲ୍‌ତର୍ ଓ ସେଇ ଦୋଚାରୁଣୀ ଦୁହେଁ ତା'ଆଡ଼କୁ ମାଡ଼ିଗଲେ । ସେଇ ମାଇକିନିଆ ଏତେ ଜୋର୍‌ରେ ପାଟି କଲା ଯେ ପରିଚାଳକ ଚକିତ ହୋଇଗଲେ । ପତିତା ନାରୀଟିଏ ଚରିତ୍ରହୀନ ପୁରୁଷ ଅପେକ୍ଷା ଯଥେଷ୍ଟ ହିଂସ୍ର ଓ ଜଘନ୍ୟ ହୋଇପାରେ । ଲୋକେ କହନ୍ତି – ସେ କୁଆଡ଼େ ଗୋଟାଏ ମାଠିଆ ଉଠାଇ ପରିଚାଳକଙ୍କ ଉପରକୁ ନିକ୍ଷେପ କଲା । ୱାରସ୍ ନଗରୀ ଓ ଟର୍‌ବିନ୍ ସହର ମଧ୍ୟରେ ଅନେକ ପାର୍ଥକ୍ୟ । ଏ ଦୁର୍ଘଟଣାରେ ସମଗ୍ର ଟର୍‌ବିନ୍ ଆଲୋଡ଼ିତ ହୋଇଗଲା । ରାବି ଆଲ୍‌ତର୍‌କୁ ସମନ କଲେ; କିନ୍ତୁ ସେ ଆସିବା ପାଇଁ ମନା କରିଦେଲା । ବାଛନ୍ଦ ପତ୍ର ସହିତ ଇହୁଦୀ ସମ୍ପ୍ରଦାୟ ତରଫରୁ ତାକୁ ଚେତାବନୀ ଦିଆଗଲା, କିଛି ଫଳ ହେଲାନି । ଉଚ୍ଚ କର୍ତ୍ତୃପକ୍ଷଙ୍କ ସହିତ ସୁସମ୍ପର୍କ ଥିବାରୁ ସେ କାହାରିକୁ ଖାତିର୍ କଲାନି ।

ଦୁଇ ତିନି ସପ୍ତାହ ପରେ ଦୋଚାରୁଣୀ ଛତରୀଟା ସହର ଛାଡ଼ି ଚାଲିଯାଏ; ଲୋକେ ଆଶ୍ୱସ୍ତିରେ ନିଃଶ୍ୱାସ ନିଅନ୍ତି – ଏଥର ବୋଧହୁଏ ସବୁ ଶାନ୍ତି ପଡ଼ିଯିବ । କିନ୍ତୁ ସପ୍ତାହେ ବିତିଛି କି ନାହିଁ ମରଣ ଫେରନ୍ତା ଆଲ୍‌ତର୍ ନିଜ ପତ୍ନୀକୁ ସୁନ୍ଦର ଗପଟିଏ ବଖାଣେ । ଓଲିନିଆର  ଏକ ଅରଣ୍ୟ କ୍ରୟ କରିବାର ଅପୂର୍ବ ସୁଯୋଗ ତାଙ୍କ ଭାଗ୍ୟକୁ ଜୁଟିଛି । ତେଣୁ ଯଥାଶୀଘ୍ର ସେଠାକୁ ଯିବାକୁ ପଡ଼ିବ । ସେ ନିଜର ସମଗ୍ର ଅର୍ଥ ଏକତ୍ରିତ କଲା ଏବଂ ସିପ୍ରାକୁ କହିଲା ଯେ ତା'ର ଗହଣାଗାଣ୍ଠି ମଧ୍ୟ ବନ୍ଧା ପକାଇବାକୁ ପଡ଼ିବ । ସେ ହେଲେ ଘୋଡ଼ା ଓ ଗୋଟାଏ ଚାରିଚକିଆ ଘୋଡ଼ାଗାଡ଼ି

ଜିଣିଲା । ତା'ର ଏଇସବୁ କାର୍ଯ୍ୟକଳାପ ଲୋକଙ୍କ ମନରେ ସନ୍ଦେହ ଜାତ କଲା । ସେମାନେ ଭାବିଲେ, ଇଏ ପୁଣି ଆଉ ଗୋଟିଏ କାଣ୍ଡ ଭିଆଇବ ବୋଧେ ଏବଂ ସିଫ୍ରାକୁ ତାଗିଦ୍ କରିଦେଲେ । କିନ୍ତୁ ସିଫ୍ରାର ନିଜ ସ୍ୱାମୀ ଉପରେ ଅଗାଧ ବିଶ୍ୱାସ ଥାଏ । ସେ ତା'ର ଜାମାପତ୍ର ବାକ୍ସରେ ସଜାଇ ରଖିଦେଲା, ଯାତ୍ରାକାଳ ପାଇଁ କୁକୁଡ଼ା ରୋଷ୍ଟ ଓ ଜାମ୍ ଭର୍ତ୍ତି କରିଦେଲା । ଆଲ୍‌ତର୍ ଯାତ୍ରାରେ ବାହାରିଲା ବେଳେ ସିଫ୍ରା ହାତକୁ ଛୋଟ ବାକ୍ସଟିଏ ବଢ଼ାଇ ଦେଇ କହିଲା, 'ୟା ଭିତରେ ତିନୋଟି ପ୍ରୋମିଜରୀ ନୋଟ୍ ଅଛି; ଆସନ୍ତା ଗୁରୁବାର ଦିନ, ଆଜିଠୁଁ ଆଠଦିନ ପରେ ନୋଟ୍‌ଗୁଡ଼ିକୁ ରାବିଙ୍କୁ ଦେଇ ଆବଶ୍ୟକୀୟ ଅର୍ଥ ଦେଇ ଆସିବ ।' ଆଲ୍‌ତର୍ ମିଛ ଗଳ୍ପଟିଏ କହିଲା ଏବଂ ସିଫ୍ରା ତା' କଥାରେ ଭାସିଗଲା ।

ଆଠଦିନ ପରେ ପରବର୍ତ୍ତୀ ଗୁରୁବାର ଦିନ ବାକ୍ସଟି ଖୋଲି ସିଫ୍ରା ତହିଁରୁ ଛାଡ଼ପତ୍ର ଦଲିଲ୍‌ଟିଏ ପାଇଲା । ସେ ଖୁବ୍ ଜୋର୍‌ରେ ଚିତ୍କାର କଲା ଓ ମୂର୍ଚ୍ଛା ହୋଇଗଲା । ସଂବିତ୍ ଫେରି ପାଇ ରାବିଙ୍କ ନିକଟକୁ ଦୌଡ଼ିଲା । ଛାଡ଼ପତ୍ର ଦଲିଲ୍‌ଟି ଉପରେ ଥରେ ଆଖି ବୁଲେଇ ନେଇ ରାବି ମନ୍ତବ୍ୟ କଲେ – 'ନା, ଆଉ କିଛି କରି ହେବ ନାହିଁ ।'

ସେଦିନ ଟରବିନ୍ ସହରରେ କି ପ୍ରକାର ଆଲୋଡ଼ନ ସୃଷ୍ଟି ହୋଇଥିବ, ଆପଣ ଅନୁମାନ କରିପାରୁଥିବେ । ସିଫ୍ରା ବିଳାପ କରେ – 'ଶଳା ମରି ଯାଇଥିଲେ ଭଲ ହୋଇଥାଆନ୍ତା, ମୁଁ ତାକୁ କାହିଁକି ବଂଚାଇଲି ! ବାଟରେ ଘାଟରେ ଯୋଉଠି ଥିବ, ସେଇଠି ପଡ଼ି ମରୁ ।'

ଆଲ୍‌ତର୍ ତାକୁ ସମ୍ପୂର୍ଣ୍ଣ ଅର୍ଥଶୂନ୍ୟ ଅବସ୍ଥାରେ ଛାଡ଼ି ଚାଲି ଯାଇଥାଏ; ତା' ପାଖରେ ଆଉ ରୁମାଲ୍ ଖଣ୍ଡିଏ ବି ନଥାଏ । ଘରଟି ଥାଏ, କିନ୍ତୁ ସେଇଟା ପୁଣି ଭଣ୍ଡାରୀ ପାଖରେ ବନ୍ଧା ପଡ଼ିଥାଏ । ଅତୀତ କାଳର କଥା ଭିନ୍ନ ଥିଲା । ଏଭଳି ପରିସ୍ଥିତିରେ ଲୋକ ପଠାଯାଇ ନିର୍ଲ୍ଲଜ ବିଶ୍ୱାସଘାତକକୁ ଠାବ କରାଯାଏ । ଇହୁଦୀ ସଂପ୍ରଦାୟର ସେପରି କ୍ଷମତା ଥିଲା – ସେଭଳି ଆସାମୀକୁ ସିନାଗାଗ୍ କଚେରୀର କାଠଯନ୍ତା ଭିତରେ ବାନ୍ଧି ରଖା ଯାଉଥିଲା । କିନ୍ତୁ ଆମର ଅଣ ଇହୁଦୀ କର୍ତ୍ତୃପକ୍ଷ ଇହୁଦୀମାନଙ୍କ ସମସ୍ୟାକୁ ବିଶେଷ ଗୁରୁତ୍ୱ ଦେଉ ନଥା'ନ୍ତି । ତା'ପରେ ଆଲ୍‌ତର୍ ସମସ୍ତଙ୍କୁ ଉତ୍କୋଚ ଦେଇ ନିଜ ବାଟ ପରିଷ୍କାର କରି ନେଇଥାଏ ।

ସିଫ୍ରା ଅସୁସ୍ଥ ହୋଇପଡ଼େ; ବିଛଣାରେ ଶୋଇ ରହେ, ଉଠିବାକୁ ମନା କରିଦିଏ । ଖିଆପିଆ କିଛି କରେନି । ଦିନରାତି ଆଲ୍‌ତର୍ ଉପରେ ଦାରୁଣ ଓ ଉତ୍କଟ ଅଭିଶାପମାନ ବର୍ଷି ଚାଲିଥାଏ । ତା'ପରେ ଦିନେ ହଠାତ୍ ନିଜ ଛାତି ବାଡ଼େଇ କାନ୍ଦି ଉଠେ – 'ସବୁ ମୋର ଦୋଷ; ମୁଁ ତାକୁ ସନ୍ତୁଷ୍ଟ ରଖି ପାରିଲି ନାହିଁ ।' କାନ୍ଦି ପକାଏ, ପୁଣି ହସି ଉଠେ । ଭୂତଗ୍ରସ୍ତା ନାରୀପରି ହେଉଥାଏ । ଘରଟି ଉପରେ ଆଇନଗତ ମାଲିକାନା ସତ୍ତ୍ୱ ଜାହିର କରି ଭଣ୍ଡାରୀ ସିଫ୍ରାକୁ ବାହାର କରିଦେବାକୁ ଚାହେଁ; କିନ୍ତୁ ସମାଜ ତାକୁ ବାଧା ଦିଏ । ସିଫ୍ରା ଛାତ ଉପରେ ଗୋଟାଏ ବଖରାରେ ରହୁଥାଏ ।

କିଛି ଦିନ ପରେ ସୁସ୍ଥ ହୋଇଯିବାରୁ ସିପ୍ରା ଗୋଟାଏ ବୁଲାବିକାଳିଙ୍କ ଅଖା ଧରି ମରଦମାନଙ୍କ ପରି ଚାଷୀମାନଙ୍କ ସହିତ ବେପାର କରିବାକୁ ବାହାରେ । କିଣା ବିକାରେ ସେ ଅତି ଧୁରନ୍ଧର । ଅଳ୍ପ ଦିନ ଭିତରେ ବିବାହ ପ୍ରସ୍ତାବ ନେଇ ମଧ୍ୟସ୍ଥିମାନେ ପହଞ୍ଚି ଯାଆନ୍ତି । ସେ କାହାରି କଥା ଶୁଣେନି; ଓଲଟି କୁହେ – 'ଅପେକ୍ଷା କରନ୍ତୁ, ସେ ନିଶ୍ଚୟ ଫେରି ଆସିବେ । ଦୋଚାରୁଣୀଟା ଟଙ୍କା ପଛରେ ଧାଇଁଥିବ, ତାଙ୍କୁ କ'ଣ ପ୍ରକୃତରେ ଭଲପାଏ ? ଦାଣ୍ଡର ଭିକାରୀ କରି ଗୋଇଠା ମାରି ଆଲ୍‌ତର୍‌ଙ୍କୁ ତଡ଼ି ଦେବ ।'

ଲୋକେ ମନ୍ତବ୍ୟ ଦିଅନ୍ତି – 'ସବୁ ଜାଣିଲା ପରେ ପୁଣି କାହିଁକି ଝାମେଲାରେ ପଶିବୁ ?'

ସେ ଉତ୍ତର ଦିଏ, 'ଆଲ୍‌ତର୍ ଆସନ୍ତୁ । ମୁଁ ତାଙ୍କର ପାଦ ଧୋଇ ପାଣି ପିଇବି ।'

ତା' ପାଖରେ ଗୋଟାଏ ଟ୍ରଙ୍କ୍ ଥାଏ । ଉଲ୍ ଓ ଲିନେନ୍ ବସ୍ତ୍ର ଆଣି ତହିଁରେ ସାଇତି ରଖେ – 'ସେ ଫେରିଲେ, ସେସବୁ ଯୌତୁକ ଦେଇ ତାଙ୍କୁ ପୁନର୍ବିବାହ କରିବି ।'

ଆଜି କାଲି ଆପଣ ଏହାକୁ 'ସମ୍ମୋହନ' କହୁଛନ୍ତି, ଆମେ କହୁଥିଲୁ – 'ଓଳମ ପାଗଳାମି ।'

ଯେତେବଡ଼ ସହରମାନଙ୍କରୁ କେହି ଲୋକ ଆସୁଥିଲେ, ସିପ୍ରା ସେମାନଙ୍କ ନିକଟକୁ ଧାଇଁ ଯାଉଥିଲା, 'ଆପଣ ମୋ ଆଲ୍‌ତର୍‌ଙ୍କୁ ଦେଖିଛନ୍ତି କି ?'

କିନ୍ତୁ କେହି ତାକୁ ଦେଖି ନଥିଲେ । ଜନରବ ହୁଏ ଯେ ସେ କୁଆଡ଼େ ଧର୍ମତ୍ୟାଗୀ ହୋଇ ଯାଇଛି । କେତେକ କହନ୍ତି – ଆଲ୍‌ତର୍ କୁଆଡ଼େ ରାକ୍ଷସୀଟାକୁ ବିବାହ କରିଛି । ଅସମ୍ଭବ ନୁହେଁ । ଏମିତି ଅନେକ ବର୍ଷ ବିତି ଯାଏ । ଲୋକେ ଭାବନ୍ତି, ଆଲ୍‌ତାର୍ ବୋଧହୁଏ ଆଉ କେବେ ଫେରିବନି ।

ଦିନେ ଏକ ସାବାଥ୍ ଅପରାହ୍ନରେ ସିପ୍ରା ଲେହ୍ ନିଜ ବିଛଣାରେ ଢୁଳୋଉଥାଏ, (ଅନ୍ୟ ମହିଳାଙ୍କ ପରି ଧର୍ମଗ୍ରନ୍ଥ ପଢ଼ିବା ସେ କେବେ ଶିଖି ପାରି ନଥିଲା ।) ହଠାତ୍ ଦ୍ୱାରଟି ଖୋଲିଗଲା ଏବଂ ଜଣେ ସୈନିକ ଭିତରକୁ ପ୍ରବେଶ କଲେ । ସେ କାଗଜ ଖଣ୍ଡିଏ ବଢ଼ାଇ ଦେଲେ – 'ତୁମେ କ'ଣ ସିପ୍ରା ଲେହ୍, କୁଳାଙ୍ଗାର ଆଲ୍‌ତର୍‌ର ଧର୍ମପତ୍ନୀ ?'

ଚକ୍‌ଖଡ଼ି ପରି ସିପ୍ରା ଶେଥା ପଡ଼ିଗଲା । ସେ ଋଷୀୟ ଭାଷା ବୁଝି ନପାରିବାରୁ ଜଣେ ବ୍ୟାଖ୍ୟାକାରଙ୍କୁ ଅଣାଗଲା । କୌଣସି ଜଘନ୍ୟ ଅପରାଧରେ ଦୋଷୀ ସାବ୍ୟସ୍ତ ହୋଇ ଆଲ୍‌ତର୍ ଆଜୀବନ କାରାଦଣ୍ଡରେ ଦଣ୍ଡିତ ହୋଇଥାଏ ଏବଂ କାରାଗାର ମଧ୍ୟରେ ବଂଦୀ ଥାଏ । ତାକୁ ଲୁବ୍‌ଲିନ୍ ଜେଲ୍ ହାଜତରେ ରଖା ଯାଇଥାଏ । ସେଠାରୁ ଛୁଟିରେ ଘରକୁ ଫେରୁଥିବା ଏହି ସୈନିକ ହାତରେ ଚିଠି ଖଣ୍ଡେ ପଠାଇଥାଏ । ସେ ସୈନିକଟିକୁ କିଛି ଉତ୍କୋଚ ଦେଇଥିଲା । ଜେଲ୍ ଭିତରେ କୋଉଠୁ ଟଙ୍କା ପାଇଲା କେଜାଣି ? ଜେଲ୍ ଭିତରେ ପ୍ରବେଶ ଦିନଠୁଁ ହୁଏତ ଖଟ ତଳେ କେଉଁଠୁ କିଛି ଟଙ୍କା ଲୁଚେଇ ରଖି ଥାଇପାରେ । ଚିଠି ପଢ଼ିଲେ ପଥର ବି ତରଳି ଯାଇଥାନ୍ତା । ସେ ଲେଖିଥିଲା, 'ସିପ୍ରା ଲେହ୍, ମୁଁ ତୁମ ପ୍ରତି ଘୋର ଅନ୍ୟାୟ କରିଛି, ମୋତେ ରକ୍ଷା କର, ରକ୍ଷା କର ।

ମୋର ବିନାଶ କାଳ ଆସି ଉପସ୍ଥିତ । ଏଭଳି ଜୀବନ ଅପେକ୍ଷା ମୃତ୍ୟୁ ବରଂ ଶ୍ରେୟସ୍କର ।' ଖଣ୍ଡିଏ କାମିଜ୍ ବ୍ୟତୀତ ଆଲ୍‌ତର୍‌କୁ ସମ୍ପୂର୍ଣ୍ଣ ନଗ୍ନ ଓ ଅର୍ଥହୀନ ଅବସ୍ଥାରେ ପରିତ୍ୟାଗ କରି ଦୋଚାରୁଣୀଟା ଚାଲିଯାଏ । ସେ ବୋଧହୁଏ ୟା' ବିଷୟରେ ପୋଲିସ୍‌କୁ ସବୁ କଥା ଜଣେଇ ଦେଇଥିଲା ।

ଉତ୍ତେଜନାରେ ସହରଟି ବେଶ୍ ଗୁଞ୍ଜରିତ ହୋଇ ଉଠେ । କିନ୍ତୁ ଆଲ୍‌ତାର୍‌କୁ କିଏ ବା କେମିତି ସାହାଯ୍ୟ କରିପାରିବ ! ସିପ୍ରା ସହରର ସମସ୍ତ ବିଶିଷ୍ଟ ବ୍ୟକ୍ତିମାନଙ୍କ ପାଖକୁ ଯାଏ, ତା'ର କିଛି ଦୋଷ ନାହିଁ, ରୋଷ ହିଁ ତା'ର ଅପରାଧ ପ୍ରବଣତାର ମୂଳ କାରଣ । ବୁଢ଼ୀ ଗାଈର ମିଜାଜ୍ ଏ ଯାଏଁ ଥଣ୍ଡା ହୋଇ ନଥାଏ । ଲୋକେ ପଚାରନ୍ତି 'ସେଇ ଲମ୍ପଟ ସହିତ ତୋର ଆଉ କ'ଣ ଅଛି ?' ଆଲ୍‌ତର୍ ନିନ୍ଦା ସେ ବରଦାସ୍ତ କରିପାରେ ନା ! ଯାହା କିଛି ତା'ର ଥିଲା, ସବୁ ବିକ୍ରୟ କରିଦେଲା, କଂସାବାସନ ବି ତହିଁରୁ ବାଦ୍ ପଡ଼ିଲାନି, ଉଚ୍ଚନୀଚ ନିର୍ବିଶେଷରେ ବହୁଲୋକଙ୍କଠୁ ଟଙ୍କା ଧାର କଲା ଏବଂ ଲୁବ୍‌ଲିନ୍ ଅଭିମୁଖେ ଯାତ୍ରା କଲା । ସେ ନିଶ୍ଚୟ ପ୍ରାଣମୂର୍ଚ୍ଛା ଉଦ୍ୟମ କରିଥିବ, ନଚେତ୍ ଆଲ୍‌ତର୍‌କୁ ଶେଷରେ କାରାମୁକ୍ତ କଲିପାରନ୍ତ କିପରି ?

ପତି ପତ୍ନୀ ଦୁହେଁ ପୁଣି ଟର୍‌ବିନ୍ ସହରକୁ ଫେରି ଆସିଲେ । ଆବାଳ ବୃଦ୍ଧ ତାଙ୍କୁ ଦେଖିବା ପାଇଁ ଧାଇଁ ଆସିଲେ । ଆଲ୍‌ତର୍ ଯେତେବେଳେ ଗାଡ଼ିରୁ ଓହ୍ଲାଏ, ଏମିତି ଦିଶୁଥିଲା ଆପଣ ଚିହ୍ନି ପାରି ନଥା'ନ୍ତେ – ଦାଢ଼ି ନଥାଏ, କେବଳ ହଳେ ମୋଟା ନିଶ । ସେ ଗୋଟାଏ କଫ୍‌ତନ୍ ଓ ଉଚ୍ଚ ଜୋତା ପିନ୍ଧିଥାଏ ।

'ଆରେ ଏ ତ ଆଲ୍‌ତର୍ ନୁହେଁ, ଟୋକାଟିଏ ପରି ଦିଶୁଛି । ନା, ନା ଏଇ ସେ ପୁରୁଣା ଆଲ୍‌ତର୍ । ପୂର୍ବର ଚାହାଣୀ, ଚାଲିବାର ଢଙ୍ଗ ବାରି ହୋଇ ପଡୁଛି ।'

ସେ ପ୍ରତ୍ୟେକଙ୍କୁ ନାଁ ଧରି ଡାକିଲା । ପୁଙ୍ଖାନୁପୁଙ୍ଖ ସବୁ କଥା ପଚାରି ବୁଝିଲା । ଥଟ୍ଟା ପରିହାସ କଲା ଏବଂ ସ୍ତ୍ରୀ ଲୋକଙ୍କ ମୁହଁ ରଙ୍ଗ ପଡ଼ିଯିବା ଭଳି କଥା କହିଲା ।

ଲୋକେ ପଚାରିଲେ – 'ତୋ ଦାଢ଼ି କୁଆଡ଼େ ଗଲା ?'

'ମହାଜନ ପାଖରେ ବନ୍ଧା ଦେଇଛି ।' ଉତ୍ତର ଆସିଲା ।

ସେମାନେ ପଚାରନ୍ତି – 'ଜଣେ ଇହୁଦୀ ହିସାବରେ ଏମିତି କାମ କରିବା କ'ଣ ଠିକ୍ ହେଲା ?'

ସେ ଉତ୍ତର ଦିଏ – 'ତୁମେ କୋଉ ଭଲ ? ଶଳା, ସମସ୍ତେ ଚୋର ।'

ତା'ପରେ ବିଭିନ୍ନ ଲୋକଙ୍କର ଗୁପ୍ତ ପାପଗୁଡ଼ିକର ତାଲିକା ବାଢ଼ି ବସେ । ଏସବୁରୁ ବେଶ୍ ସ୍ପଷ୍ଟ ହୋଇ ଯାଉଥାଏ ଯେ, ଆଲ୍‌ତର୍ କୌଣସି ଅପଶକ୍ତି ହସ୍ତରେ କ୍ରୀଡ଼ନକ ପାଲଟି ଯାଇଛି ।

ସିପ୍ରା ଲେହ୍ ସ୍ୱାମୀର ମନ୍ଦ କାର୍ଯ୍ୟ ପାଇଁ ସଫେଇ ଦେବାକୁ ଚେଷ୍ଟା କରେ । ତାକୁ ଯଥାସାଧ ଆକଟ କରୁଥାଏ ଏବଂ ଗୋଟିଏ ମା' କୁକୁଡ଼ା ପରି ଆଲ୍‌ତରକୁ ନିଜ ଡେଣା ତଳେ ଢାଙ୍କି ରଖିଥାଏ । ଛାଡ଼ପତ୍ର କଥା ଆଉ ମନେ ନଥାଏ, ତେଣୁ ଆଲ୍‌ତର୍‌କୁ ଘରକୁ ନେବା ପାଇଁ ଅଭିଳାଷ କରେ । କିନ୍ତୁ ସିଆଡୁ ରାବିଙ୍କ କଠୋର ନିର୍ଦ୍ଦେଶ

ଆସେ ଯେ ସେ ଦୁହେଁ ଗୋଟାଏ ଛାତ ତଳେ ବାସ କରିପାରିବେ ନାହିଁ, ଏପରିକି ଏକତ୍ର ଗୋଟାଏ ଗାଡ଼ିରେ ଯାତ୍ରା କରିବା ସିଫ୍ରା ପକ୍ଷରେ ଭୁଲ୍ ଥିଲା । ଆଲ୍‌ତର୍ ଖିଆଲ ବିରୁଦ୍ଧରେ ଇହୁଦୀ ସମାଜର ଆଇନ୍ ବଳବତ୍ତର ରହିଲା । କେଇଜଣ ଶୁଭାକାଙ୍‌କ୍ଷିଣୀ ମହିଳା ପରିସ୍ଥିତିକୁ ସୁଧାରିବା ପାଇଁ ଆଗେଇ ଆସନ୍ତି । ବାରଦିନ ପର୍ଯ୍ୟନ୍ତ ପତି ପତ୍ନୀଙ୍କୁ ପରସ୍ପରଠୁଁ ଅଲଗା ରଖାଯାଏ ଏବଂ ସେହି ସମୟ ମଧ୍ୟରେ ସିଫ୍ରା ଆବଶ୍ୟକୀୟ ପ୍ରାୟଶ୍ଚିତ୍ତ ସ୍ନାନ କରିନିଏ । ତା'ପରେ ସେମାନଙ୍କର ପୁନର୍ବିବାହ ଯଥାରୀତି ଅନୁଷ୍ଠିତ ହୁଏ ।

ବିବାହର ସପ୍ତାହେ ପରେ ଆଲ୍‌ତର୍ ଚୋରି କରିବା ଆରମ୍ଭ କରେ । ହାଟପାଳିମାନଙ୍କରେ ଶଗଡ଼ ଭିତରେ ପଶି ପକେଟମାରୁ କରେ । ଦୂରବର୍ତ୍ତୀ ଗ୍ରାମମାନଙ୍କରେ ପଶି ଘୋଡ଼ା ଚୋରି କରେ । ସେ ଆଉ ମୋଟା ନଥିଲା, ହାଉଣ୍ଡ କୁକୁର ପରି ପତଳା ହୋଇ ଯାଇଥାଏ । ଛାତ ଉପରକୁ ଚଢ଼ିଯାଏ, ତାଲା ଭାଙ୍ଗିପାରେ, ଘୋଡ଼ାଶାଳର କବାଟ ତାଡ଼ି ପକାଏ, ଲୁହା ପରି ଶକ୍ତ ଓ ଶୟତାନ ପରି ତତ୍ପର ଥାଏ । ଚାଷୀମାନେ ଏକଜୁଟ ହେଲେ, କୁକୁର ଓ ଲଣ୍ଠନ ବ୍ୟବସ୍ଥା କରି ଜଗୁଆଳି ନିଯୁକ୍ତ କଲେ । ସିଫ୍ରା ଲଜ୍ଜିତ ଅନୁଭବ କରି କବାଟ ଝରକା ବନ୍ଦ କରି ଘର ଭିତରେ ବସି ରହିଲା । ଯା'ପରେ ପତି ପତ୍ନୀ ସମ୍ପର୍କର ରୂପରେଖ କ'ଣ ହୋଇଥିବ ସହଜରେ ଅନୁମେୟ ।

ଅଳ୍ପ ଦିନ ପରେ ଆଲ୍‌ତର୍ ଗୋଟାଏ ଗୁଣ୍ଡାଦଳର ଅଧିନାୟକ ହେଲା । ଭାଟିରେ ବସି ସେମାନଙ୍କ ସହିତ ମଦ ଟାଙ୍କିଲା । ସେମାନେ ତା'ର ସମ୍ମାନରେ ପୋଲାଣ୍ଡ ଦେଶୀୟ ଭାଷାରେ ଗୋଟାଏ ଗୀତ ଆବୃତ୍ତି କରୁଥିଲେ ଏବଂ ସେଇ ଗୀତଟି ଏବେ ବି ମୋର ମନେ ଅଛି :

'ଆଲ୍‌ତର୍, ଆଲ୍‌ତର୍
ଆମ ଆଲ୍‌ତର୍ ଭାରି ସୁନ୍ଦର
ପିଇବାକୁ ଦିଏ ନିଇତି
କୁଆଟ କୁଆଟ ବିଅର୍ ।'

ପ୍ରବାଦ ଅଛି, 'ଚୋର ଶେଷରେ ଯାଇ ଫାଶୀ ଖୁଣ୍ଟରେ ପହଞ୍ଚେ ।'

ଦିନେ ଆଲ୍‌ତର୍ ତା'ର ଗୁଣ୍ଡାମାନଙ୍କ ଗହଣରେ ବସି ମଦ ପିଉଥାଏ, ଉନ୍ମୁକ୍ତ ତରବାରି ହାତରେ ନେଇ ହଠାତ୍ ଗୋଟାଏ ସ୍କାଡ୍ରନ୍ କୋସାକ୍‌ସ (ପୋଲିସ୍) ମଦ ଭାଟି ଭିତରକୁ ମାଡ଼ି ଆସିଲେ । ଗର୍ଭର୍ଣ୍ଣରଙ୍କ ଆଦେଶ ଥିଲା ଯେ ଆଲ୍‌ତରକୁ ଶିକୁଳିରେ ବାନ୍ଧି ଆଣି କାରାଗାରରେ ବନ୍ଦୀ କର ।

ସେ ତତ୍‌କ୍ଷଣାତ୍ ଜାଣି ପାରିଲା –ଏଇ ବୋଧହୁଏ ତା' ଜୀବନର ଶେଷ ଦୃଶ୍ୟ । ଛୁରୀଟିଏ କାଢ଼ିଲା । ମଦ୍ୟପାୟୀ ବନ୍ଧୁମାନେ ଦୌଡ଼ି ପଳାଇଗଲେ । ଲଢ଼େଇ କରିବା ପାଇଁ ଏକୁଟିଆ ରହିଗଲା ସେ ।

ଭାଟି ପରିଚାଳକଠୁଁ ପରେ ଯାହା ଶୁଣିବାକୁ ମିଳିଲା — ଆଲ୍‌ତର୍ କୁଆଡ଼େ ଗୋଟାଏ ଅସୁରର ଦୁର୍ଦ୍ଧର୍ଷ ବଳ ନେଇ କୋସାକ୍‌ସମାନଙ୍କ ସହିତ ଲଢ଼େଇ କଲା, କୋବି କ୍ଷେତ କାଟିଲା ପରି ସେମାନଙ୍କୁ ଲହୁଲୁହାଣ କରି ପକାଇଲା । ଟେବୁଲ୍ ଓଲଟାଇ ଦେଉଥାଏ, ମଦ ବୋତଲଗୁଡ଼ିକୁ ସେମାନଙ୍କୁ ଉପରକୁ ଫୋପାଡୁଥାଏ । ସେ ଆଉ ତରୁଣ ନଥିଲା । ତଥାପି କେତେକ୍ଷଣ ମନେ ହେଲା ଯେ ଆଲ୍‌ତର୍ ସେମାନଙ୍କୁ ପରାସ୍ତ କରିଦେବ । କଥାରେ ଅଛି —'ଜଣେ ଲୋକ କେହି ନୁହଁ ।' କୋସାକ୍‌ସମାନେ ତାକୁ ତରବାରିରେ **ଖଣ୍ଡ ଖଣ୍ଡ** କରି କାଟି ପକାଇଲେ !

ଦୁଃସମ୍ବାଦଟି ଯେତେବେଳେ ସିଫ୍ରା କାନରେ ପଡ଼ିଲା, ସେ ଆଖିବୁଜା ପାଗଳୀଙ୍କ ପରି ଧାଇଁ ଆସିଲା ଏବଂ ଆଲ୍‌ତର୍ ପାଖରେ ବସି ପଡ଼ିଲା । ସେ ହୁଏତ ଆଉ ଥରେ ତାକୁ ଫେରାଇ ଆଣିଥାନ୍ତା, କିନ୍ତୁ ଆଲ୍‌ତର୍ ମନା କରିଦେଲା — 'ଯଥେଷ୍ଟ, ଯଥେଷ୍ଟ ହୋଇଗଲା, ଆଉ ନୁହେଁ ।'

ଇହୁଦୀମାନେ ତା'ର ଶରୀରକୁ ସରକାରୀ କର୍ମଚାରୀଙ୍କ ହାତରୁ ଉଦ୍ଧାର କଲା ।

ମୃତ ଅବସ୍ଥାରେ ମୁଁ ତାକୁ ଦେଖି ନାହିଁ, କିନ୍ତୁ ଯେଉଁମାନେ ଦେଖିଥିଲେ, ସେମାନେ କହନ୍ତି ଯେ କବର ତଳୁ ବାହାର କରାଯାଇଥିବା ଗୋଟାଏ ପୁରାତନ ଶବ ପରି ସେ କୁଆଡ଼େ ଦେଖାଯାଉଥିଲା । ତା'ର ଶରୀରରୁ ଅବୟବମାନ ଖସି ପଡୁଥାନ୍ତି । ମୁହଁଟା ଚିହ୍ନି ହେଉ ନଥାଏ, ଆକାରବିହୀନ ମାଂସପିଣ୍ଡୁଳା ପରି ଦିଶୁଥାଏ । ସମାଧିସ୍ଥ କରିବା ପୂର୍ବରୁ ଯେବେ ତା'ର ଶରୀରକୁ ସଫାସୁତରା କରାଯାଉଥାଏ, କୁଆଡ଼େ ଗୋଟାଏ ହାତ ଖସି ପଡ଼ିଲା, ତା' ପରେ ଗୋଟାଏ ଗୋଡ଼ — ।

ମୁଁ ଅବଶ୍ୟ ସେଠି ଉପସ୍ଥିତ ନଥିଲି, ତଥାପି ଲୋକେ ବା କାହିଁକି ମିଛ କହିବେ ? ମରଣ ଫେରନ୍ତା ଲୋକ ଜୀବିତାବସ୍ଥାରେ ହିଁ ପଚିବାକୁ ଆରମ୍ଭ କରେ । ଗୋଟାଏ ଅଖାରେ ଭର୍ତ୍ତିକରି ସମାଧି ପ୍ରାଚୀର ବାହାରେ ତା'ର ଶବକୁ ପୋତି ଦିଆଗଲା । ତା'ର ମୃତ୍ୟୁ ପରେ ଆମ ସହରରେ ଗୋଟାଏ ସଂକ୍ରାମକ ରୋଗ ବ୍ୟାପିଲା ଏବଂ ତହିଁରେ ଅନେକ ନିଷ୍ପାପ ଶିଶୁ ପ୍ରାଣ ହରାଇଲେ । ମୋହଗ୍ରସ୍ତା ନାରୀ ସିଫ୍ରା ଲେହ୍ ସ୍ୱାମୀ ପାଇଁ ଗୋଟାଏ ପ୍ରସ୍ତର ସ୍ଥାପନ କଲା ଏବଂ ସମାଧିସ୍ଥଳକୁ ନିୟମିତ ପରିଦର୍ଶନ କଲା ।

ମୋର ବକ୍ତବ୍ୟର ସାରମର୍ମ ଏହି ଯେ ମଣିଷକୁ ମୃତ୍ୟୁ ମୁଖରୁ ଫେରାଇ ଆଣିବା ସମୀଚୀନ ନୁହେଁ । ନିର୍ଦ୍ଧାରିତ ମୁହୂର୍ତ୍ତରେ ଆଲ୍‌ତର୍ ପ୍ରସ୍ଥାନ କରୁ ବୋଲି ସିଫ୍ରା ଯଦି ସମ୍ମତ ହୋଇଥାନ୍ତା, ତେବେ ବିଚରା ଆପଣା ପଛରେ ଯଥେଷ୍ଟ ସୁନାମ ରଖି ବିଦାୟ ନେଇ ପାରିଥାନ୍ତା । ବର୍ତ୍ତମାନ ପୃଥିବୀରେ କେଇ ଜଣ ସେମିତି ମରଣ ଫେରନ୍ତା ଲୋକ ବିଚରଣ କରୁଛନ୍ତି କିଏ ବା କହିପାରିବ ? ଆମର ଯାବତୀୟ ଦୁଃଖଦୁର୍ଦ୍ଦଶା ପାଇଁ ସେମାନେ ହିଁ ଦାୟୀ ଅଟନ୍ତି ।

■■■

*ଅନୁବାଦ* — ***ସୁରମଣି ଷଡ଼ଙ୍ଗୀ***

# ନାଦିନ୍ ଗଡ଼ିମର୍

ବିଶ୍ୱବିଖ୍ୟାତ ଔପନ୍ୟାସିକ, ସମାଲୋଚକ ସଲ୍‌ମାନ୍ ରୁସ୍‌ଦୀଙ୍କ ଭାଷାରେ – ନାଦିନ୍ ଗଡ଼ିମର୍ ନିଜ ସ୍ଥିତିର ବିରୋଧାଭାସ ସମ୍ପର୍କରେ ସମ୍ପୂର୍ଣ୍ଣ ସଚେତନ – ବିଶ୍ୱସାହିତ୍ୟରେ ସେ ଜଣେ ମର୍ଯ୍ୟାଦାସମ୍ପନ୍ନ ବ୍ୟକ୍ତିତ୍ୱ, ମାତ୍ର ନିଜ ରାଷ୍ଟ୍ରର ରାଜନୈତିକ ଓ ସାଂସ୍କୃତିକ ଜୀବନରେ ତାଙ୍କର ପ୍ରଭାବ ଯେ ନଗଣ୍ୟ – ଏ କଥା ସେ ଜାଣନ୍ତି । ୧୯୯୧ ମସିହାରେ ସାହିତ୍ୟ ପାଇଁ ନୋବେଲ୍ ପୁରସ୍କାର ପାଇଥିବା ଏହି ଶ୍ୱେତାଙ୍ଗ ମହିଳା ଜଣେ ଦକ୍ଷିଣ ଆଫ୍ରିକୀୟ ଲେଖିକା । ସାରାଜୀବନ ସାହିତ୍ୟ ମାଧ୍ୟମରେ ଦକ୍ଷିଣ ଆଫ୍ରିକାର ସମାଜ, ଜୀବନ, ଯନ୍ତ୍ରଣା– ଏସବୁ ହିଁ ଲେଖି ଚାଲିଛନ୍ତି । କୃଷ୍ଣକାୟମାନଙ୍କର ସାମାଜିକ ସ୍ଥିତି, ଅମାନୁଷିକ ବର୍ଣ୍ଣବୈଷମ୍ୟ ନୀତି– ଏସବୁକୁ ବିରୋଧ କରି ବୈଷମ୍ୟହୀନ, ମୁକ୍ତ ସମାଜ ପ୍ରତିଷ୍ଠା କରିବାର ଏକ ଶେଷହୀନ ପ୍ରଚେଷ୍ଟା ହିଁ ତାଙ୍କ ସାହିତ୍ୟର ସ୍ପଷ୍ଟ ଭାବେ ବାରି ହୋଇଯାଏ । ମାତ୍ର ୧୩ ବର୍ଷ ବୟସରେ ତାଙ୍କର ପ୍ରଥମ ଗଳ୍ପ 'ଦି କ୍ୱେଷ୍ଟ ଫର୍ ସିନ୍ ଗୋଲ୍ଡ' ୧୯୭୩ ମସିହା ଜୁନ୍ ମାସ ୧୩ ତାରିଖ 'ସନ୍‌ଡେ ଏକ୍‌ସପ୍ରେସ୍' (ଜୋହାନ୍‌ସବର୍ଗ)ରେ ପ୍ରକାଶିତ ହୁଏ । ତାଙ୍କର ବହୁଚର୍ଚ୍ଚିତ ଉପନ୍ୟାସଗୁଡ଼ିକ ମଧ୍ୟରେ 'ଏ ୱାର୍ଲଡ ଅଫ୍ ଷ୍ଟ୍ରେନ୍‌ଜର୍', 'ଏ ଗେଷ୍ଟ ଅଫ୍ ଅନର୍', 'ଦି କନ୍‌ଜରଭେସନିଷ୍ଟ', 'ବରଜର୍ସ ଡଟର୍', 'ଦି ଲେଟ୍ ବୁର୍ଜୋଇଜ୍ ୱାର୍ଲଡ', 'ଜୁଲାଇଜ୍ ପିପୁଲ୍', 'ଏ ସ୍ପୋର୍ଟ ଅଫ୍ ନେଚର' ଆଦି ଅନ୍ୟତମ । ଗଳ୍ପ ସଂକଳନଗୁଡ଼ିକ ହେଲା –'ସଫ୍‌ଟ ଭଏସ୍ ଅଫ୍ ସରପେଣ୍ଟ', 'ଫ୍ରାଇଡେଜ୍ ଫୁଟପ୍ରିଣ୍ଟ', 'ଲିଭିଂ ଷ୍ଟୋନ୍‌ସ କମ୍ପାନିଅନ୍', 'ସୋଲ୍‌ଜର୍ସ ଏମ୍‌ବ୍ରାସ୍', 'ସମ୍‌ଥିଂ ଆଉଟ୍ ଦେୟାର', 'ସିକ୍‌ସ ଫିଟ୍ ଅଫ୍ ଦି କଣ୍ଟ୍ରି' । ୧୯୮୯ରେ ପ୍ରକାଶ ପାଇଥିବା 'ଦି ଏସେନ୍‌ସିଆଲ୍ ଗେସ୍‌ଚର୍' (ପ୍ରବନ୍ଧ ସଂକଳନ) ତାଙ୍କ ସାହିତ୍ୟର ଦର୍ଶନ ଓ ଆଭିମୁଖ୍ୟକୁ ସ୍ପଷ୍ଟଭାବେ ସୂଚାଏ । ବୁକର୍ ପୁରସ୍କାର, ଫରାସୀ ଆନ୍ତର୍ଜାତିକ ପୁରସ୍କାର ଆଦି ବିଶ୍ୱର ବହୁ ସମ୍ମାନଜନକ ସାହିତ୍ୟିକ ପୁରସ୍କାର ପାଇଥିବା ଏହି ଦକ୍ଷିଣ ଆଫ୍ରିକୀୟ ଲେଖିକା ପରିଶେଷରେ ୧୯୯୧ରେ ସାହିତ୍ୟ ପାଇଁ ନୋବେଲ୍ ପୁରସ୍କାର ପାଇଛନ୍ତି । ସିକ୍‌ସ ଫିଟ୍ ଅଫ୍ ଦି କଣ୍ଟ୍ରି ପୁସ୍ତକରେ ଥିବା ଗଳ୍ପ 'Country Lovers'ର ଓଡ଼ିଆ ଅନୁବାଦ – ଥେବେଡ଼ିର ପ୍ରେମିକ ।

# ଥେବେଡ଼ିର ପ୍ରେମିକ

ଫାର୍ମର ପିଲାମାନେ ଛୋଟ ଥିଲା ବେଳେ ଏକାଠି ଖେଳନ୍ତି । କିନ୍ତୁ ଥରେ ପଢ଼ିବା ପାଇଁ ସ୍କୁଲ୍‌କୁ ଯିବା ପରେ ଶ୍ୱେତାଙ୍ଗ ପିଲାମାନେ ଆଉ ନିଗ୍ରୋ ପିଲାଙ୍କ ସାଙ୍ଗରେ ଖେଳନ୍ତି ନାହିଁ । ଏପରିକି ଛୁଟି ଦିନରେ ମଧ୍ୟ ନୁହେଁ । କଳା ପିଲାମାନେ ସ୍କୁଲ୍‌କୁ ଯାଆନ୍ତି ସତ, କିନ୍ତୁ ଗୋରା ପିଲାମାନେ ପ୍ରତିବର୍ଷ ପରୀକ୍ଷାରେ ଭଲ କରି ଉପର ଶ୍ରେଣୀକୁ ଯିବାବେଳେ ସେମାନେ ପଛରେ ପଡ଼ି ଯାଆନ୍ତି । ଧୀରେ ଧୀରେ ଗୋରା ପିଲାମାନେ ପିଲାଳିଆ ଭାଷା ଛାଡ଼ି ବୋର୍ଡିଂ ସ୍କୁଲ୍ ଭାଷାରେ କଥାବାର୍ତ୍ତା ହୁଅନ୍ତି । ସ୍କୁଲ୍‌ର ଖେଳକୁଦ ଓ ସିନେମାରେ ଦେଖା ହେଉଥିବା ଦୁଃସାହସିକ ଦୁନିଆର ଆକର୍ଷଣ ସେମାନଙ୍କୁ ବନ୍ଧ, ପାହାଡ଼, ମକାକ୍ଷେତ ଓ ପଥୁରିଆ ଘାସ ପଡ଼ିଆର ଜୀବନଠୁ ଦୂରେଇ ନିଏ । ଏସବୁ କଥା ଘଟିଯାଏ ବାର ତେର ବର୍ଷ ବୟସରେ । ଠିକ୍ ଯେତେବେଳେ ସମସ୍ତଙ୍କର ଦେହରେ କୈଶୋର ସୁଲଭ ପରିବର୍ତ୍ତନ ହେଉଥାଏ, ସେତିକିବେଳେ ବଡ଼ମାନେ ଡକାଡକି ହେଲାଭଳି, କଳା ପୁଅଝିଅମାନେ ତାଙ୍କର ବିଗତ ଦିନର ଖେଳସାଥୀ ଗୋରା ପିଲାମାନଙ୍କୁ 'ମିସ୍' ଏବଂ 'ବାଆସି' ବା ଛୋଟ ମାଲିକ ବୋଲି ଡାକିବା ଆରମ୍ଭ କରି ଦିଅନ୍ତି ।

ପଲ୍‌ସ ଆଇସେଣ୍ଡିକ୍ ବୋଧହୁଏ ବୁଝି ନଥିଲା ଯେ ଥେବେଡ଼ି ବର୍ତ୍ତମାନ ଦକ୍ଷିଣ ଆଫ୍ରିକାର ବୁଦାବାଡ଼ ଘେରା ଏକ ପଲ୍ଲୀ ଗାଁର କୁଡ଼ିଆରେ ରହୁଥିବା ଅନେକ ଫାର୍ମ ପିଲାମାନଙ୍କ ମଧ୍ୟରୁ ଜଣେ । ବୋର୍ଡିଂ ସ୍କୁଲ୍‌କୁ ଯିବା ପରେ ପ୍ରଥମ ବଡ଼ଦିନ ଛୁଟିରେ ଥେବେଡ଼ି ପାଇଁ ସେ ଗୋଟିଏ ଉପହାର ଆଣିଥିଲା । ଏଇଟି ଥିଲା ହସ୍ତଶିଳ୍ପ ଶ୍ରେଣୀରେ ସେ ନିଜେ ତିଆରି କରିଥିବା ଏକ ରଙ୍ଗବୋଳା କାଠ ବାକ୍‌ସ । ଏହି ବାକ୍‌ସଟିକୁ ଲୁଚେଇ କରି ସେ ଥେବେଡ଼ିକୁ ଦେଇଥିଲା । କାରଣ ଗାଁର ଅନ୍ୟ ପିଲାଙ୍କ ପାଇଁ ସେ କିଛି ଆଣି ନଥିଲା । ସେ ସ୍କୁଲ୍‌କୁ ଫେରିବା ପୂର୍ବରୁ ପତଳା ତମ୍ବାର ଏବଂ ଧୂସର ଓ ଧଳା ରଙ୍ଗର ଜଡ଼ା ମଞ୍ଜିରେ ଗୋଟିଏ ବଳା ତିଆରି କରି ଥେବେଡ଼ି ପଲ୍‌ସକୁ ଦେଲା । ସେତେବେଳେ ପଲ୍‌ସ ପଢୁଥିବା ସହରର ପୁଅପିଲାମାନଙ୍କ ପାଇଁ ୱାଚ୍ ଷ୍ଟ୍ରାପ୍ ପାଖରେ ହାତୀବାଳରେ ତିଆରି ବଳା ଅଥବା ଅନ୍ୟବସ୍ତୁରେ ତିଆରି ବଳା ପିନ୍ଧିବା ଏକ କ୍ରେଜ୍ ଥିଲା, ପଲ୍‌ସର ସାଙ୍ଗମାନେ ସେମାନଙ୍କ ପାଇଁ ସେହିଭଳି ବଳା ଆଣିଦେବା ପାଇଁ ପଲ୍‌ସକୁ ଅନୁରୋଧ କଲେ । ସେ ତାଙ୍କୁ କହିଲା, ତା' ବାପାଙ୍କ ଫାର୍ମରେ କାମ

କରୁଥିବା ନିଗ୍ରୋମାନେ ଏହି ବଲା ତିଆରି କରିଥା'ନ୍ତି, ସେ ସେମାନଙ୍କ ପାଇଁ ଏହି ବଲା ଆଣିବାକୁ ଚେଷ୍ଟା କରିବ ।

ପଲ୍‌ସର ମନରେ ଏବଂ ଶରୀରରେ କ୍ରମେ କ୍ରମେ ପରିବର୍ତ୍ତନ ଆସିଲା । ବୟସ ପନ୍ଦର ହେଲାବେଳକୁ ତା'ର ଉଚ୍ଚତା ଛ'ଫୁଟ । ବାଳିକା ବିଦ୍ୟାଳୟର ଝିଅମାନଙ୍କ ସାଙ୍ଗରେ ବୁଲିଯିବା ଏବଂ ନାଚ ଦେଖିବା ପାଇଁ ସେ ପସନ୍ଦ କଲା । ତା' ବାପାଙ୍କ ଭଳି ଧନୀ କୃଷକମାନଙ୍କର ଝିଅମାନଙ୍କୁ ଚିଡ଼େଇବା, ପ୍ରେମ ଓ ଆଦର କରିବାକୁ ସେ ଶିଖିଲା । ଥରେ ତା' ବାପା ମା'ଙ୍କ ସହିତ ନିକଟବର୍ତ୍ତୀ ଏକ ଫାର୍ମରେ ଅନୁଷ୍ଠିତ ହେଉଥିବା ବିବାହ ଉତ୍ସବରେ ଯୋଗ ଦେଇଥିଲା । ସେଇଠି ଗୋଟିଏ ଝିଅ ଏକ ବନ୍ଦ ଭଣ୍ଡାର ଘରେ ତା' ସହିତ ଦୈହିକ ସମ୍ପର୍କ ସ୍ଥାପନ କରିବା ପାଇଁ ପଲ୍‌ସକୁ ସୁଯୋଗ ଦେଇଥିଲା ।

ଏହିପରି ଭାବରେ ବାଳକସୁଲଭ ସରଳତାଠାରୁ ଅନେକ ଦୂର ଯିବା ପରେ ମଧ୍ୟ ପଲ୍‌ସ ସେଇ ନିଗ୍ରୋ ଝିଅ ଥେବେଡ଼ି ପାଇଁ ସହରରୁ ଏକ ଲାଲ୍ ରଙ୍ଗର ପ୍ଲାଷ୍ଟିକ୍ ବେଲ୍‌ଟ ଏବଂ ସୁନେଲି ରଙ୍ଗର ଦୁଇଟି ବଡ଼ କାନ ରିଂ କିଣି ଦେଇଥିଲା । ଥେବେଡ଼ି ତା' ବାପକୁ କହିଥିଲା, କିଛି କାମ କରିଦେଇଥିବାରୁ ସାନବାବୁ ତାକୁ ଏ ପୁରସ୍କାର ଦେଇଛନ୍ତି । ଅବଶ୍ୟ ଥେବେଡ଼ି ସମୟ ସମୟରେ ପଲ୍‌ସ ବାପାଙ୍କର ଫାର୍ମ ହାଉସ୍‌ରେ କାମ କରୁଥିଲା ।

ଥେବେଡ଼ି ବେଳେ ବେଳେ ତା'ର ସାଙ୍ଗ ଝିଅମାନଙ୍କୁ କହେ, ଅନେକ ଦୂରରେ ଏକ ଫାର୍ମରେ ତା'ର ଜଣେ ପ୍ରେମିକ ଅଛି ଏବଂ ସେ କଥା ତା' ଗାଁରେ କେହି ଜାଣି ନାହାନ୍ତି । ଏକଥା ଶୁଣି ସେ ଝିଅମାନେ ହସୁଥିଲେ, ଥେବେଡ଼ିକୁ ଚିଡ଼ଉଥିଲେ ଏବଂ ପ୍ରଶଂସା ମଧ୍ୟ କରୁଥିଲେ । ଥେବେଡ଼ି ଗାଁର ଜଣେ ଯୁବକ ଜାବୁଲୋ ଥେବେଡ଼ିକୁ ପସନ୍ଦ କରୁଥିଲା । ସେ କହୁଥିଲା – 'ତା'ର ଇଚ୍ଛା ଥେବେଡ଼ି ପାଇଁ ଗୋଟିଏ ବେଲ୍‌ଟ ଏବଂ ହଳେ କାନ ରିଂ କିଣି ଆଣିଦେବ । ପଲ୍‌ସ ଛୁଟିରେ ଘରକୁ ଆସିଲେ ଥେବେଡ଼ି ତା'ର ସାଙ୍ଗସାଥୀମାନଙ୍କୁ ଛାଡ଼ି ଗାଁଠାରୁ ଦୂରକୁ ଏକ ନିରୋଳା ସ୍ଥାନକୁ ଚାଲିଯାଏ । ପଲ୍‌ସ ମଧ୍ୟ ଏକାକୀ ସେଇ ସ୍ଥାନକୁ ଚାଲିଚାଲି ଯାଏ । ସେମାନେ ଏସବୁ କଥାବାର୍ତ୍ତା ହୋଇ କରୁ ନଥିଲେ । ନିଜ ନିଜର ପ୍ରବୃତ୍ତିକୁ ହିଁ ଅନୁସରଣ କରୁଥିଲେ । ବହୁତ ଦୂରରୁ ପଲ୍‌ସ ଥେବେଡ଼ିକୁ ଚିହ୍ନି ପାରୁଥିଲା । ଥେବେଡ଼ି ଜାଣିଥିଲା ପଲ୍‌ସର କୁକୁର ତାକୁ ଦେଖି ଭୁକିବ ନାହିଁ । ଥରେ ସେମାନେ ଗୋଟିଏ ନଦୀ କୂଳକୁ ଗଲେ । ସେଇ ନଦୀ ଶଯ୍ୟାରେ ପାଞ୍ଚ ଛ'ବର୍ଷ ତଳେ କେତେ ପିଲା ଗୋଟିଏ ଲିଗୁଆନ୍‌କୁ ଧରିଥିଲେ । ଲିଗୁଆନ୍ ହେଉଛି କୁମ୍ଭୀରର ଆକାର ଓ ଭୀଷଣତା ଏବଂ ଝିଟିପିଟିର ନିରୀହତାର ମିଶ୍ରଣରେ ସୃଷ୍ଟ ଏକ ଜୀବ । ସେଇ ଲିଗୁଆନ୍ ଧରା ହୋଇଥିବା ସ୍ଥାନରେ ପଲ୍‌ସ ଓ ଥେବେଡ଼ି ବସିଲେ । ପଲ୍‌ସ ଥେବେଡ଼ିକୁ ତା'ର ଉଦାସୀନତା କଥା କହିଲା । ଥେବେଡ଼ି ଦେଖି ନଥିବା ମିଡ଼ିଲ୍‌ବର୍ଗ ସହର ବିଷୟରେ ମଧ୍ୟ ପଲ୍‌ସ ଅନେକ କଥା କହିଲା ।

ଥେବେଡ଼ିର ନିଜର କିଛି ବକ୍ତବ୍ୟ ନଥିଲା; କିନ୍ତୁ ଜଣେ ଭଲ ଶ୍ରୋତା ଭଳି ସେ ଅନେକ ପ୍ରଶ୍ନ ପଚାରୁଥିଲା । କଥା କହିବା ବେଳେ ପଲ୍‌ସ ତାଙ୍କ ଚାରିପଟେ ଅତଡ଼ା ଖସିଥିବା ମାଟି ଉପରେ ଛନ୍ଦି ହୋଇଥିବା ଇଉଲେ ଗଛର ଚେରକୁ ଓଟାରି ହାତରେ ମୋଡୁଥିଲା । ସେମାନେ ବସିଥିବା ସ୍ଥାନଟି ପିଲାମାନଙ୍କ ଖେଳ ପାଇଁ ଏକ ଉପଯୁକ୍ତ ସ୍ଥାନ ଥିଲା । ଏହା ପୁରୁଣା ପୋକଖିଆ ଗଛ, ଅନ୍ୟାନ୍ୟ ଟାଣୁଆ ଗଛ ଦ୍ୱାରା ଲୁଚି ରହିଥିଲା, ଏହି ସବୁ ଗଛ ନିକଟରେ ଥିଲା ଜଙ୍ଗଲି ଆସ୍ପାରେଗସ୍ ବୁଦା ଏବଂ ବୁଢ଼ାମାନଙ୍କ ମୁହଁଭଳି ଦେଖାଯାଉଥିବା କ୍ଷୁଦ୍ର ଲୋମଯୁକ୍ତ ଶୁଷ୍କ ଓ ରସଶୂନ୍ୟ ନାଗଫେଣୀ ଓ କାକ୍‌ଟସ୍ ଗଛ । ଥେବେଡ଼ି ପଲ୍‌ସ କଥା ଶୁଣିବା ବେଳେ ଗୋଟିଏ ଗୋଜିଆ କାଠିରେ ଏକ ନାଗଫେଣୀ ଗଛର ଶୁଖିଲା ଖୋଳପାକୁ ବାରମ୍ବାର କଣା କରୁଥିଲା । ତା' କଥା ଶୁଣି ବେଳେବେଳେ ମୁହଁକୁ ଆଣ୍ଠୁ ସନ୍ଧିରେ ଲୁଚେଇ ହସୁଥିଲା । ଫାର୍ମରୁ ଆସିବାବେଳେ ସେ ପିନ୍ଧିଥିବା ଧଳା ଚଟି ଧୂଳି ଲାଗି ମାଟିଆ ହୋଇ ଯିବାରୁ ତାକୁ ପାଦରୁ କାଢ଼ି ତଳେ ଥୋଇ ଦେଇଥିଲା । ପଲ୍‌ସର ସାନ୍ନିଧ ଓ କଥାରୁ ମିଳୁଥିବା ଆନନ୍ଦକୁ ସେ ତା'ର ଫୁଙ୍ଗୁଳା ପାଦ ତଳର ଶୀତଳ ଓ ଅନ୍ଧାରିଆ ମାଟି ସହିତ ଭୋଗ କରୁଥିଲା ।

ଦିନେ ଏକ ଗ୍ରୀଷ୍ମ ଅପରାହ୍ନରେ ପଲ୍‌ସ ଓ ଥେବି ନଈ କୂଳରେ ଏକାଠି ହେଲେ । ସେଦିନ ଜୋର୍ ଗରମ ପଡ଼ିଥିଲା । କିନ୍ତୁ ନଈରେ ଥଣ୍ଡା ପାଣି ବୋହି ଯାଉଥିଲା । ଥେବେଡ଼ି ପିଲାଦିନ ଭଳି ପୋଷାକକୁ ଉପରକୁ ଟେକି ପାଣି ଭିତରେ ଚାଲିବାକୁ ଗଲା । ପଲ୍‌ସ ଥେବେଡ଼ିର ଅନାବୃତ ଜାନୁକୁ ଦେଖି ଉତ୍ତେଜିତ ହୋଇ ପଡ଼ିଲା । ସେ ସ୍କୁଲ୍ ଝିଅମାନଙ୍କ ସହିତ ସନ୍ତରଣ ପାଇଁ ବିଭିନ୍ନ ବନ୍ଧ ଗାଡ଼ିଆକୁ ପୂର୍ବରୁ ଯାଇଥିଲା । ସେମାନେ ବିକିନି ପିନ୍ଧି ସନ୍ତରଣ କରୁଥିଲେ । ସୂର୍ଯ୍ୟ ଆଲୋକରେ ଉଜ୍ଜ୍ୱଳ ଦେଖାଯାଉଥିବା ସେମାନଙ୍କ ପେଟ ତଳ ଓ ଜଂଘର ମନଲୋଭା ଦୃଶ୍ୟ କେବେହେଲେ ଆଜିଭଳି ଅନୁଭୂତି ଆଣି ଦେଇ ନଥିଲା । ଥେବେଡ଼ି ଯେତେବେଳେ ନଦୀ କୂଳକୁ ଆସି ତା' ପାଖରେ ବସିଲା, ସେତେବେଳେ ମାଟି ଗନ୍ଧଯୁକ୍ତ ବହଳ ଛାଇରେ ତା'ର କଳା ରଙ୍ଗର ଗୋଡ଼ରେ ଲାଗିଥିବା ଜଳବିନ୍ଦୁ ସବୁ ପଲ୍‌ସକୁ ଆଲୋକ ବିନ୍ଦୁ ଭଳି ପ୍ରତୀୟମାନ ହେଲା । ପଲ୍‌ସ ତା' ନିକଟକୁ ଲାଗି ଆସିଲା । ଥେବେଡ଼ି ଭୟ କଲା ନାହିଁ, କାରଣ ସେମାନେ ତ ପରସ୍ପରକୁ ବହୁତ ଦିନରୁ ଜାଣିଥିଲେ । ସେ ଥରେ ବିବାହ ଉତ୍ସବରେ ଯୋଗଦେଲା ଦିନ ଭଣ୍ଡାର ଘରେ ସେଇ ଅଜଣା ଝିଅଟି ସହିତ ପଲ୍‌ସ ଯାହା କରିଥିଲା, ଆଜି ଠିକ୍ ସେଇୟା ହିଁ କଲା । କିନ୍ତୁ... କିନ୍ତୁ ଆଜି ସେ ଏତେ ଆନନ୍ଦ ଉପଲବ୍ଧି କଲା ଯେ ନିଜେ ଆଶ୍ଚର୍ଯ୍ୟ ହୋଇଗଲା । ଦୈହିକ ସମ୍ପର୍କରୁ ମିଳିଥିବା ଆନନ୍ଦ ଥେବେଡ଼ିକୁ ମଧ୍ୟ ବିସ୍ମିତ କରି ଦେଇଥିଲା । ଆନନ୍ଦ ବିହ୍ୱଳିତ ହୋଇ ସେ ତା'ର ଦୀର୍ଘ, ସମୁଜ୍ଜ୍ୱଳ କଳା ଆଖିରେ ପଲ୍‌ସକୁ ଅନେକ ସମୟ ପର୍ଯ୍ୟନ୍ତ ଚାହିଁ ରହିଥିଲା ।

ଗ୍ରୀଷ୍ମ ଛୁଟିରେ ସେମାନେ ବାରମ୍ବାର ନଈକୂଳକୁ ଯାଉଥିଲେ । ଅପରାହ୍ନରେ ଆଲୋକ ହଜିଯିବା ପୂର୍ବରୁ ସେମାନେ ଏକାଠି ହୁଅନ୍ତି ଏବଂ ସଞ୍ଜ ନଇଁବା ମାତ୍ରେ

ଘରକୁ ଫେରି ଯାଆନ୍ତି । ଥେବେଡ଼ି ଆସେ ତା' ମା'ର କୁଡ଼ିଆକୁ ଏବଂ ପଲ୍‌ସ ଚାଲିଯାଏ ଫାର୍ମ ହାଉସ୍‌କୁ ଠିକ୍ ସମୟରେ ସାନ୍ଧ୍ୟ ଭୋଜନ କରିବା ପାଇଁ । ସେମାନେ ଏଣିକି ଆଉ ଗପ କରନ୍ତି ନାହିଁ । ଶାରୀରିକ ମିଳନ ପରେ ସେମାନେ ସ୍ଥିର କରନ୍ତି ପୁଣି କେତେବେଳେ ଏକାଠି ହେବେ । ଥରେ ଦୁଇଥର ବଡ଼ି ଭୋର୍‌ରୁ ସେମାନେ ଏକାଠି ହେଲେ । ନଈ ବାଲିରେ ଏକାଠି ଶୋଇ ରହି ପବନରେ ଭାସି ଆସୁଥିବା ଗାଈ ଗୋରୁମାନଙ୍କର ହମ୍ବାରଡ଼ି ସେମାନେ ନୀରବରେ ଶୁଣୁଥିଲେ ।

ପଲ୍‌ସ ତା' ବିଦ୍ୟାଳୟରେ ବେଶ୍ ଜନପ୍ରିୟ ଥିଲା । ସେ ଭଲ ଫୁଟ୍‌ବଲ୍ ଖେଳୁଥିଲା । ବାଳିକା ବିଦ୍ୟାଳୟର ଚାଟ ପିଲାଟି ତା' ପ୍ରେମରେ ପଡ଼ିଥିଲା, କିନ୍ତୁ ପଲ୍‌ସ ସେ ଝିଅକୁ ମୋଟେ ଭଲ ପାଉ ନଥିଲା । କିନ୍ତୁ ସେ ବିଦ୍ୟାଳୟର ଆଉ ଗୋଟିଏ ସୁନ୍ଦର ଝିଅକୁ ସେ ପସନ୍ଦ କରୁଥିଲା । ସେଇ ଝିଅ ତା'ର ହାଲ୍‌କା ରଙ୍ଗର ଲମ୍ବା ବାଳରେ ବଲ୍ ଖୋସା କରି ତା' ଚାରିପଟେ କଳା ରଙ୍ଗର ରିବନ୍ ବାନ୍ଧୁଥିଲା । ଶନିବାର ଅପରାହ୍ନରେ ପଲ୍‌ସ ଏହି ଝିଅକୁ ସାଙ୍ଗରେ ନେଇ ସିନେମା ଦେଖିବାକୁ ଯାଏ । ଦଶବର୍ଷ ବୟସରୁ ତ ସେ ଟ୍ରାକ୍ଟର ଏବଂ ଫାର୍ମରେ ଥିବା ଅନ୍ୟାନ୍ୟ ଗାଡ଼ି ଚଳାଇ ଶିଖିଥିଲା । ଅଠର ବର୍ଷ ହେବାରୁ ସେ ମୋଟର ଗାଡ଼ି ଚଳାଇବା ପାଇଁ ଏକ ଲାଇସେନ୍‌ସ କଲା । ସେଇ ବର୍ଷ ସ୍କୁଲ୍ ଜୀବନର ଶେଷ ବର୍ଷ । ପଡ଼ୋଶୀମାନଙ୍କର ଝିଅମାନଙ୍କୁ ନାଚ ଦେଖାଇବା ପାଇଁ ଏବଂ ଫାର୍ମଠାରୁ କୋଡ଼ିଏ କିଲୋମିଟର ଦୂରରେ ନୂଆ କରି ଖୋଲିଥିବା ସିନେମା ହଲ୍‌ରେ ସିନେମା ଦେଖେଇବା ପାଇଁ ଗାଡ଼ିରେ ନେଉଥିଲା । ସେତେବେଳକୁ ତା' ଭଉଣୀମାନେ ବାହା ହୋଇଯାଇ ଥାଆନ୍ତି । ତେଣୁ ବହୁ ସମୟରେ ତା'ର ବାପା ମା' ଫାର୍ମ ଦାୟିତ୍ୱ ପୁଅକୁ ଦେଇ ସପ୍ତାହ ଶେଷରେ ଝିଅମାନଙ୍କୁ ଓ ନାତି-ନାତୁଣୀମାନଙ୍କୁ ଦେଖିବାକୁ ଯାଉଥିଲେ ।

ପଲ୍‌ସର ବାପା ମା' ଗାଡ଼ିରେ କୁକୁଡ଼ା ମାଂସ ଓ ନିଜ ବଗିଚାରୁ ତୋଳିଥିବା ପନିପରିବା ଭର୍ତ୍ତି କରି ଶନିବାର ଅପରାହ୍ନରେ ଘରୁ ବାହାରି ଯିବା ପରେ ଥେବେଡ଼ି ନଦୀ କୂଳକୁ ନ ଯାଇ ଫାର୍ମ ହାଉସ୍‌କୁ ଆସେ । ଫାର୍ମ ହାଉସ୍‌ଟି ପୁରୁଣା, ଅନ୍ଧାରୁଆ ଏବଂ ଏହାର କାନ୍ଥଗୁଡ଼ିକ ମୋଟା । ଘରର ରୋଷେଇଶାଳରେ ଗହଳ ଚହଳ ଲାଗି ରହିଥାଏ । ସେଠାରେ ଚାକର ବାକର, ରୋଷେୟା ଏବଂ ବିରାଡ଼ି କୁକୁରଙ୍କ ଚଳପ୍ରଚଳ ଲାଗି ରହିଥାଏ । ସେଠାରେ ଚାକରବାକର, ରୋଷେୟା ଏବଂ ବିରାଡ଼ି କୁକୁରଙ୍କ ଚଳପ୍ରଚଳ । ସେଇଠି ରୋଷେଇ ହୁଏ, ପାଣି ଗରମ ହୁଏ । ପଲ୍‌ସ ସହରରୁ କିଣି ଆଣିଥିବା ରେଫ୍ରିଜେରେଟରଟି ସେଇଠି ଥାଏ । ରେଫ୍ରିଜେରେଟର୍ ଉପରେ ସୂତାରେ ବୁଣା ହୋଇଥିବା ମ୍ୟାଟ୍ ଏବଂ ତାହା ଉପରେ ପ୍ଲାଷ୍ଟିକ୍ ଆଇରିସ୍ ଫୁଲରେ ଭର୍ତ୍ତି ହୋଇଥିବା ଫୁଲଦାନୀ ରହିଥାଏ । ଡାଇନିଂ ରୁମ୍‌ରେ ମୋଟା ଗୋଡ଼ଥିବା ଓଜନିଆ ଡାଇନିଂ ଟେବୁଲ୍ ପଡ଼ିଥାଏ । ସେଠାରେ ସୁପ୍ ଓ ଟମାଟୋ ସସ୍‌ର ବାସ୍ନା ଆଘ୍ରାଣ

କରିହୁଏ । ବୈଠକଖାନାରେ ପର୍ଦାଗୁଡ଼ିକ ଟଣା ହୋଇଥାଏ । ପଲ୍‌ସର ବାପା 'ମା' ବାହାରକୁ ଯାଇଥିବାରୁ ସେମାନଙ୍କ ଶୋଇବା ଘର ବନ୍ଦ ଥାଏ । ଅନ୍ୟ ରୁମ୍‌ରେ ଯେଉଁଠି ଆଗେ ତା'ର ଭଉଣୀମାନେ ଶୋଉଥିଲେ, ସେଇ ଘରେ ଥେବେଡ଼ି ଓ ପଲ୍‌ସ ରାତି କଟାନ୍ତି । ଘରର ଚାକର ଚାକରାଣୀମାନେ ସକାଳେ ଆସିବା ପୂର୍ବରୁ ଥେବେଡ଼ି ଚାଲିଯାଏ, ଧରା ପଡ଼ିଯିବା ଭୟରେ ପଲ୍‌ସ ଥେବେଡ଼ିକୁ ନିଜର ଶୋଇବା ଘରକୁ ନିଏ ନାହିଁ । ଥେବେଡ଼ି କାମ କରିବା ପାଇଁ ବେଳେବେଳେ ସେଇ ଘରକୁ ଯାଏ ଏବଂ ପଲ୍‌ସ ସ୍କୁଲ୍‌ରେ ପୁରସ୍କାର ପାଇଥିବା ସିଲ୍‌ଭର କପ୍‌ଗୁଡ଼ିକ ଧାଡ଼ି ହୋଇ ରଖାଯାଇଥିବାର ଦେଖେ ।

ସେତେବେଳେ ଥେବେଡ଼ିକୁ ହୋଇଥାଏ ଅଠର ବର୍ଷ ଏବଂ ପଲ୍‌ସକୁ ଊଣେଇଶ । ପଲ୍‌ସର ପଶୁ ଚିକିତ୍ସା ମହାବିଦ୍ୟାଳୟରେ ଅଧ୍ୟୟନ କରିବା ସ୍ଥିର ହୋଇଥାଏ । ମହାବିଦ୍ୟାଳୟରେ ଭର୍ତ୍ତି ହେବା ପୂର୍ବରୁ ସେ ତା' ବାପା ସାଙ୍ଗରେ କାମ କରୁଥାଏ । ଏହି ସମୟରେ ଜାମୁଲୋ ନାମକ ଯୁବକ ଥେବେଡ଼ିକୁ ବିବାହ କରିବା ପାଇଁ ଥେବେଡ଼ିର ବାପକୁ ପ୍ରସ୍ତାବ ଦେଲା । ଜାମୁଲୋର ବାପ ମା' ଥେବେଡ଼ିର ବାପ ମା'ଙ୍କ ପାଖକୁ ଆସି ଗାଈ ବଦଳରେ କେତେ କନ୍ୟାସୁନା ଦେବେ ସ୍ଥିର କଲେ; କାରଣ ତାଙ୍କର ଗାଈ ନଥିଲା । ଥେବେଡ଼ିର ବାପ ପରି ଜାମୁଲୋ ଆଇସେଣ୍ଡିକ୍ ତାକୁ ଇଟା ପକେଇବା କାମ ଶିଖେଇଥିଲା । ଥେବେଡ଼ିର ବାପ-ମା' ତା' ପାଇଁ ବାହାଘର ଯୋଗାଡ଼ କରିଛନ୍ତି ବୋଲି ଥେବେଡ଼ି ପଲ୍‌ସକୁ କହିଲାନି । କିନ୍ତୁ ସେ ଜାଣିଥିଲା, ସେ ପଲ୍‌ସ ସନ୍ତାନର ମାଆ ହେବାକୁ ଯାଉଛି ।

ଜାମୁଲୋକୁ ବିବାହ କରିବାର ଦୁଇ ମାସ ପରେ ସେ ଗୋଟିଏ କନ୍ୟା ସନ୍ତାନକୁ ଜନ୍ମ ଦେଲା । ଏଥିରେ ଅପଯଶ ବା ଲଜ୍ଜାର କଥା କିଛି ନଥିଲା । ଥେବେଡ଼ିର ସମାଜରେ ପ୍ରଚଳିତ ପ୍ରଥା ହେଉଛି ବିବାହ ପୂର୍ବରୁ ଯୁବକଟିଏ ପରୀକ୍ଷା କରି ନିଶ୍ଚିତ ହୁଏ ଯେ ତା'ର ଭବିଷ୍ୟତ ପତ୍ନୀ ବନ୍ଧ୍ୟା ନୁହେଁ । ଏହି ପ୍ରଥାକୁ ସମ୍ମାନ ଜଣାଇ ଜାମୁଲୋ ବିବାହ ପୂର୍ବରୁ ଥେବେଡ଼ି ସହିତ ଦୈହିକ ସମ୍ପର୍କ ସ୍ଥାନ କରିଥିଲା । ଶିଶୁଟି କିନ୍ତୁ ହାଲ୍‌କା ରଙ୍ଗର ଥିଲା ଏବଂ ନିଗ୍ରୋ ଶିଶୁମାନଙ୍କ ପରି ତା'ର ରଙ୍ଗ କଳା ହେଲା ନାହିଁ । ଜନ୍ମ ହେଲାବେଳେ ତା' ମୁଣ୍ଡର ବାଳ ସୁନେଲି ରଙ୍ଗର ହୋଇନାହିଁ । ସେ ଯେତେବେଳେ ଆଖି ଖୋଲିଲା, ଦେଖିଲା ତା'ର ଆଖି ଦୁଇଟି ହଳଦିଆ ଛାପଥିବା ଧୂସର ରଙ୍ଗର । କିନ୍ତୁ ଜାମୁଲୋର ରଙ୍ଗ ମଳିନ, ଅସ୍ୱଚ୍ଛ କଫିରଙ୍ଗ ଯାହାକୁ କି କଳା କୁହାଯାଇପାରେ । ପୁଣି ଥେବେଡ଼ିର ରଙ୍ଗ ମଧ୍ୟ ସେହିପରି କଳା ଥିଲା ।

ଛୁଆଟି ଜନ୍ମ ହେବା ପରେ ଜାମୁଲୋ କୌଣସି ପ୍ରକାର ଅଭିଯୋଗ କଲା ନାହିଁ । ସେ ତା'ର ଫାର୍ମ ଶ୍ରମିକ ରୋଜଗାରରୁ ଏକ ଭାରତୀୟ ଦୋକାନରୁ ଥେବେଡ଼ିର ଶିଶୁ ପାଇଁ ଗୋଲାପି ରଙ୍ଗର ଗୋଟିଏ ପ୍ଲାଷ୍ଟିକ୍ ବାଥ୍ ଟବ୍, ଛୋଟ ନାପ୍‌କିନ୍, କେତୋଟି

ସେଫ୍‌ଟିପିନ୍, ଗୋଟିଏ ହାତବୁଣା ଜ୍ୟାକେଟ୍, ଗୋଟିଏ ଟୋପି, ହାତବୁଣା ଉଲ୍, ମୋଜା, ଗୋଟିଏ ଜାମା ଏବଂ ଗୋଟିଏ ଟିଣ ଜନ୍‌ସନ୍‌ସ ବେବି ପାଉଡର କିଣି ଆଣିଲା ।

ଛୁଆଟି ଜନ୍ମ ହେବାର ଦୁଇ ସପ୍ତାହ ପରେ ପଲ୍‌ସ ଆଇସେଣ୍ଟିକ୍ ଛୁଟି କଟାଇବା ପାଇଁ ପଶୁ ଚିକିତ୍ସା ମହାବିଦ୍ୟାଳୟରୁ ଘରକୁ ଆସିଲା । ଗିଲାସେ କ୍ଷୀର ପିଇବା ପାଇଁ ରୋଷେଇ ଘରକୁ ଯାଇ ସେ ଶୁଣିଲା ତା' ମାଆ ଏବଂ ଘରର ବୁଢ଼ା ଚାକର ଥେବେଡ଼ି ବିଷୟରେ ଆଲୋଚନା କରୁଛନ୍ତି । ଥେବେଡ଼ିର ଛୁଆ ହୋଇଥିବାରୁ ତା' ବଦଳରେ କେଉଁଠୁ ଜଣେ ବିଶ୍ୱସ୍ତ ଚାକରାଣୀ ପାଇବେ, ସେ ବିଷୟରେ ସେମାନେ ଆଲୋଚନା କରୁଥିଲେ । ସେଦିନ ପ୍ରଥମ ଥର ପାଇଁ ସେ ଥେବେଡ଼ି ରହୁଥିବା ବୁଦାବାଡ଼ ଘେରା ଗାଁ ଭିତରକୁ ଗଲା । ଦିନ ୧୧ଟା ହୋଇଥାଏ । ପୁରୁଷ ଲୋକମାନେ ଜମିରେ କାମ କରୁଥାଆନ୍ତି । ପଲ୍‌ସ ଚାରିଆଡ଼କୁ ଚାହିଁଲା । ସ୍ତ୍ରୀଲୋକମାନେ ମୁହଁ ବୁଲାଇ ବାଟ ଭାଙ୍ଗି ଚାଲିଗଲେ । କାରଣ ଥେବେଡ଼ି କେଉଁଠି ରହୁଛି ପଲ୍‌ସକୁ କହିବା ପାଇଁ ଚାହୁଁ ନଥିଲେ । ଶ୍ୱେତାଙ୍ଗମାନଙ୍କ ଢଙ୍ଗରେ ଜାମୁଲୋ ତା'ର କୁଟୀର ତିଆରି କରିଥିଲା । ସେଇ ଘରେ ଥିଲା ଗୋଟିଏ ଟିଣ ଚିମ୍‌ନି, ଗୋଟିଏ କାଚଦିଆ ଝରକା । ଘରର କାନ୍ଥ ତିଆରି ହୋଇଥିଲା ପୋଡ଼ା ହୋଇ ନଥିବା ଇଟାରେ । ପଲ୍‌ସ ଦେଖିଲା, ଥେବେଡ଼ି ସେଇ କୁଡ଼ିଆ ଘରୁ ଧୀରେ ଧୀରେ ଆସୁଛି । ପଲ୍‌ସକୁ ଦେଖି ସେ ହାତଯୋଡ଼ି ପ୍ରଣାମ କଲା ଏବଂ ପଲ୍‌ସର ବାପା କିମ୍ବା ମାଆକୁ ଦେଖିଲେ ସେ ଯେପରି ଶିଷ୍ଟାଚାର ଦୃଷ୍ଟିରୁ ତାଙ୍କ ସାମନାରୁ ଚାଲିଯାଏ, ସେହିପରି ଟିକିଏ ଆଗେଇଗଲା । ଥେବେଡ଼ି ଘରର ଦୁଆରେ ମୁଣ୍ଡ ନୁଆଁଇ ପଲ୍‌ସ ଘର ଭିତରକୁ ପଶିଲା । ଛୁଆଟିକୁ ଦେଖିବାକୁ ଚାହୁଁଛି ବୋଲି ସେ ଥେବେଡ଼ିକୁ କହିଲା । ଜାମୁଲୋର ଡୋରିଆ କମ୍ବଳ ପଡ଼ିଥିବା ଲୁହା ଖଟ ଏବଂ ଗୋଲାପି, ପ୍ଲାଷ୍ଟିକ୍ ବାଥ୍ ଟବ୍ ଓ ବାସନକୁସନ ରଖା ହୋଇଥିବା ଛୋଟ କାଠ ଟେବୁଲ୍ ମଧ୍ୟ ଦେଇ ଥେବେଡ଼ି ଆଗକୁ ଗଲା ଏବଂ ଭଲ ଭାବରେ ଆବୃତ ହୋଇଥିବା ଗ୍ରେସେରି ବାକ୍‌ସ ଉପରୁ ଗୋଟିଏ ପୁଟୁଳା ନେଇ କରି ଆସିଲା । ତା'ର ପାଟିର ଏକ କୋଣରେ ବୁଦ୍‌ବୁଦ୍ ଦେଖା ଯାଉଥିଲା । ଶିଶୁଟିର ଲମ୍ବା, ପତଳା, ପାଟଳ ରଙ୍ଗର ହାତ ହଲିଲା । ଥେବେଡ଼ି ଶିଶୁଟିର ମୁଣ୍ଡରୁ ପଶମ ଟୋପିଟି ବାହାର କରିଦେବାରୁ ସୁନେଲି ରଙ୍ଗର ସିଧା ଏବଂ ସୁନ୍ଦର ବାଳଗୁଡ଼ିକ ଦେଖାଗଲା ।

ପଲ୍‌ସ କିଛି କହିଲାନି ।

ଥେବେଡ଼ି ପିଲାଦିନେ ଖେଳୁଥିବା ଅନ୍ୟାନ୍ୟ ପିଲାମାନେ ଶସ୍ୟ କ୍ଷେତ୍ରକୁ ଦଳାଚକଟା କରିବା ବେଳେ ସେ ଏଇ କୃଷକ ପୁଅର ମୁହଁକୁ ଚାହିଁ ରହୁଥିଲା । ଶିଶୁଟିର ଗାଲରେ ଥେବେଡ଼ି ମୃଦୁ ଆଙ୍ଗୁଠି ଚାଳନା କରିବାରୁ ତା'ର ନିଦ ଭାଙ୍ଗିଗଲା । ଧୀରେ ଧୀରେ ଆଖି ଖୋଲି ସେ ତା'ର ଧୂସର ହଳଦିଆ ଆଖିରେ ସେ ଦୁହିଁଙ୍କୁ ଚାହିଁଲା ।

ଗୋଟିଏ ମୁହୂର୍ତ୍ତ ପାଇଁ ପଲ୍‌ସର ମୁହଁ, ଲୁହ, ରାଗ ଏବଂ ଅନୁଶୋଚନାରେ ବିକୃତ ହୋଇଗଲା । ଥେବେଡ଼ି ପଲ୍‌ସ ଆଡ଼କୁ ନିଜ ହାତ ବଢ଼େଇ ପାରିଲା ନାହିଁ । ପଲ୍‌ସ ପଚାରିଲା, 'ତୁ ଏହାକୁ ନେଇ ଆମ ଘର ଆଡ଼େ ଯାଇନୁ ?'

ଥେବେଡ଼ି ମୁଣ୍ଡ ହଲେଇ ମନା କଲା ।

'କେବେ ହେଲେ ନୁହେଁ ?'

ସେ ପୁଣି ମୁଣ୍ଡ ହଲେଇଲା ।

'ତୁ ଏହାକୁ ବାହାରକୁ ନେବୁ ନାହିଁ । ଘର ଭିତରେ ରଖିବୁ । ତୁ ଏହାକୁ ଅନ୍ୟ କେଉଁ ସ୍ଥାନକୁ ନେଇ ପାରିବୁନି ? ତୁ ପିଲାଟିକୁ କାହାକୁ ଜଣକୁ ଦେଇ ଦେ ।'

ଥେବେଡ଼ି ତା' ସାଙ୍ଗରେ ଦୁଆର ନିକଟକୁ ଗଲା । ସେ କହିଲା, 'ଦେଖ, ମୁଁ କଅଣ କରି ପାରୁଛି । କଅଣ କରିବାକୁ ହେବ ମୁଁ ଜାଣିପାରୁନି ।' ତା'ପରେ ପୁଣି ସେ କହିଲା, 'ମୋର ଆତ୍ମହତ୍ୟା କରିବାକୁ ଇଚ୍ଛା ହେଉଛି ।'

ଥେବେଡ଼ି ଆଖିରେ ଲୁହ ଜମିଗଲା । ନଦୀଶଯ୍ୟାରେ ନିରୋଳାରେ ବସିବା ବେଳେ ଯେଉଁଭଳି ଅନୁଭବ ତାଙ୍କ ନିକଟକୁ ଆସୁଥିଲା, ସେହିଭଳି ଆନ୍ତରିକ ଅନୁଭବ ସେମାନେ ଗୋଟିଏ ମୁହୂର୍ତ୍ତ ପାଇଁ ଉପଲବ୍ଧି କଲେ ।

ପଲ୍‌ସ ବାହାରକୁ ଚାଲିଗଲା । ଦୁଇଦିନ ପରେ ତା'ର ବାପା ଓ ମା' ଫାର୍ମ ଛାଡ଼ି ବାହାରକୁ ଗଲେ । ସେ ଆଉଥରେ ଗାଁ ଭିତରକୁ ଆସିଲା । ଗାଁର ସ୍ତ୍ରୀ ଲୋକମାନେ ଶସ୍ୟ କ୍ଷେତ୍ରରେ ଘାସ ବାଛିବା ପାଇଁ ଯାଇଥିଲେ । ସାଧାରଣତଃ ଗ୍ରୀଷ୍ମ ଋତୁରେ ସେମାନେ ଏଇ କାମ କରିଥାନ୍ତି । କେବଳ ଅତି ବୁଢ଼ୀ ସ୍ତ୍ରୀ ଲୋକମାନେ ଗାଁ ଭିତରେ ଖରାରେ ମାଛିମାନଙ୍କ ଗହଣରେ ଘର ବାହାରେ ପଡ଼ିଆରେ ବସିଥିଲେ । ଥେବେଡ଼ି ପଲ୍‌ସକୁ ଘର ଭିତରକୁ ଆସିବାକୁ ଡାକିଲା ନାହିଁ । ଛୁଆଟିର ଦେହ ଭଲ ନଥିଲା । ତା'ର ଡାଇରିଆ ହୋଇଥିଲା । ପିଲାଟି କଅଣ ଖାଉଛି ବୋଲି ପଲ୍‌ସ ପଚାରିବାରୁ ଥେବେଡ଼ି କହିଲା, 'ସେ ମୋ'ଠାରୁ କ୍ଷୀର ଖାଉଛି ।'

ପଲସ୍ ଘର ଭିତରେ ଶୋଇଥିବା ଶିଶୁ ନିକଟକୁ ଗଲା । ଥେବେଡ଼ି ତା' ପଛରେ ଘର ଭିତରକୁ ଗଲା ନାହିଁ । ବାହାରେ ରହି ସେ ନିଜ ସହିତ ଏବଂ ତା'କଥା ଶୁଣୁ ନଥିବା କୁକୁଡ଼ାମାନଙ୍କ ସହିତ କଥା ହେଉଥିବା ଜଣେ ପାଗଳୀ ବୁଢ଼ୀ ଆଡ଼କୁ ଚାହିଁ ରହିଥିଲା । ଥେବେଡ଼ିକୁ ଲାଗିଲା ସେ ଯେମିତି ଘର ଭିତରୁ ଆସୁଥିବା ଏକ କ୍ଷୀଣ ଶବ୍ଦ ଶୁଣିପାରୁଛି । ଏହିଭଳି ଶବ୍ଦ ପେଟ ପୂରିଥିଲେ ଏବଂ ଗଭୀର ନିଦରେ ଶୋଇଥିଲେ ଛୋଟ ପିଲାମାନେ କରିଥାନ୍ତି । କେତେ ସମୟ ପରେ, ଅଳ୍ପ କିମ୍ବା ବହୁତ ସମୟ, ଥେବେଡ଼ିର ଠିକ୍ ମନେ ନାହିଁ, ପଲସ୍ ଘର ଭିତରୁ ବାହାରି ଦୀର୍ଘ ପଦକ୍ଷେପରେ ତା' ବାପାଙ୍କ ଘର ଆଡ଼କୁ ଚାଲିଲା ଏବଂ ଥେବେଡ଼ିର ଦୃଷ୍ଟି ଅନ୍ତରାଳକୁ ଚାଲିଗଲା ।

ରାତିରେ ଥେବେଡ଼ି ଓ ଜାମୁଲୋ ଶିଶୁଟିକୁ କିଛି ଖାଇବାକୁ ଦେଇ ନଥିଲେ । ଜାମୁଲୋକୁ ଥେବେଡ଼ି ବାରମ୍ବାର କହିଥିଲା ଯେ ପିଲାଟି ଶୋଇଛି । କିନ୍ତୁ ସକାଳେ ଜାମୁଲୋ ଦେଖିଲା ଶିଶୁଟି ମରି ଯାଇଛି । ଆଲିଙ୍ଗନ ଓ ଆଦରବୋଳା କଥାରେ ସେ ଥେବେଡ଼ିକୁ ସାନ୍ତ୍ୱନା ଦେଲା । ଥେବେଡ଼ି କାନ୍ଦିଲା ନାହିଁ, ଦୁଆର ଆଡ଼କୁ ଚାହିଁକରି

ବସିରହିଲା । ଜାମୁଲୋ ତା'ର ହାତକୁ ସ୍ପର୍ଶ କରି ଦେଖିଲା ତାହା ଏକ ମଲା କୁକୁଡ଼ାର ଗୋଡ଼ ପରି ଶୀତଳ ଲାଗୁଛି ।

ଫାର୍ମ ମାଲିକ ଦେଇଥିବା ପଥୁରିଆ ଘାସ ଜମିରେ ଜାମୁଲୋ ମୃତ ଶିଶୁଟିକୁ ସମାଧି ଦେଲା । ସେହି ଜମିରେ ଫାର୍ମର ମୃତ ଶ୍ରମିକମାନଙ୍କୁ ସମାଧି ଦିଆଯାଇଥାଏ । କେତେକ ସମାଧି ଚିହ୍ନିତ ହୋଇ ନଥାଏ, ସେଠାରେ କେବଳ ଗଦାଏ ମାଟି ପଡ଼ିଥାଏ । କେତେକ ପଥର ଖଣ୍ଡ ଦ୍ୱାରା ଆଚ୍ଛାଦିତ ହୋଇଥାଏ ଏବଂ ଆଉ କେତେଗୁଡ଼ିକ ଉପରେ କାଠର କ୍ରସ୍ ପଡ଼ିଥାଏ । ଜାମୁଲୋ ଗୋଟିଏ କ୍ରସ୍ ତିଆରି କରି ମୃତ ଶିଶୁଟିର ସମାଧି ଉପରେ ରଖିବ ବୋଲି ଭାବିଥିଲା । କ୍ରସ୍ ତିଆରି ସମ୍ପୂର୍ଣ୍ଣ ହେବା ପୂର୍ବରୁ ପୋଲିସ୍ କବର ଖୋଳି ମୃତ ଶିଶୁଟିକୁ ନେଇଗଲେ । କେହି ଜଣେ, ହୁଏତ ଜଣେ ଶ୍ରମିକ କିମ୍ବା ଜଣେ ସ୍ତ୍ରୀଲୋକ ପୋଲିସ୍ ନିକଟରେ ବୟାନ ଦେଇ କହିଥିଲା ଯେ ଶିଶୁଟି ଶ୍ୱେତକାୟ, ସ୍ୱାସ୍ଥ୍ୟବାନ୍ ଓ ବଳବାନ୍ ଥିଲା । ଶ୍ୱେତାଙ୍ଗ ଫାର୍ମ ମାଲିକର ପୁଅ ତାକୁ ଦେଖି ଯିବା ପରେ ତା'ର ହଠାତ୍ ମୃତ୍ୟୁ ଘଟିଛି । ଡାକ୍ତରୀ ପରୀକ୍ଷାରୁ ଜଣାଗଲା ଶିଶୁଟିର ଅନ୍ତ୍ର ନଷ୍ଟ ହୋଇ ତା'ର ମୃତ୍ୟୁ ହୋଇଛି ଏବଂ ଏହିଭଳି ମୃତ୍ୟୁ ପ୍ରାୟତଃ ପ୍ରାକୃତିକ କାରଣରୁ ଘଟି ନ ଥାଏ ।

ପଲ୍‌ସ ବିରୁଦ୍ଧରେ ହତ୍ୟା ଅଭିଯୋଗ ପ୍ରସ୍ତୁତ ହେଲାବେଳେ ସାକ୍ଷୀ ଦେବା ପାଇଁ ଥେବେଡ଼ି ପ୍ରଥମ ଥର ପଲ୍‌ସ ସ୍କୁଲ୍ ଶିକ୍ଷା ପାଇଥିବା ସହରକୁ ଗଲା । ସାକ୍ଷୀ ଦେବା ପାଇଁ ଉଦ୍ଦିଷ୍ଟ ଅଡ଼ାରେ ଠିଆ ହୋଇ ଅତି ଆବେଗପୂର୍ଣ୍ଣ ହୃଦୟରେ କାନ୍ଦି କାନ୍ଦି ସେ କହିଲା, ହଁ, ହଁ । (କାନରେ ତା'ର ସୁନେଲି ରଙ୍ଗର ବଡ଼ ବଡ଼ କାନ ରିଙ୍ଗ ଦୁଇଟି ହଲୁଥଲା), ଅଭିଯୁକ୍ତ ବ୍ୟକ୍ତି ଶିଶୁଟିର ପେଟରେ କିଛି ତରଳ ପଦାର୍ଥ ଢାଳିଥିବା ସେ ଦେଖିଛି । ପୁଣି ସେ କହିଲା, ସେ ଯଦି ଏ ବିଷୟରେ କାହାକୁ କହେ, ତେବେ ଆସାମୀ ତାକୁ ଗୁଳି କରି ମାରିଦେବ ବୋଲି ଧମକ ଦେଇଥିଲା !

ସହରରେ କେସ୍‌ଟିର ବିଚାର ହେବାବେଳକୁ ବର୍ଷକରୁ ଅଧିକ ସମୟ ବିତିଗଲା । ବିଚାରବେଳେ ସାକ୍ଷୀ ଦେବା ପାଇଁ ପିଠିରେ ସେ ଗୋଟିଏ ସଦ୍ୟଜାତ ଶିଶୁକୁ ଧରି ଆସିଲା । ତା' କାନରେ ଥିଲା ସେଇ ସୁନେଲି ରଙ୍ଗର ବଡ଼ ବଡ଼ କାନ ରିଙ୍ଗ ଦୁଇଟି । ସ୍ଥିର ଓ ପ୍ରଶାନ୍ତ ଚିତ୍ତରେ ସେ କହିଲା, ଶ୍ୱେତାଙ୍ଗ ଯୁବକଟି ଘର ଭିତରେ ପଶି କଅଣ କରୁଥିଲା ସେ ଦେଖିନାହିଁ । ପଲ୍‌ସ ଆଇସେଣ୍ଡିକ୍ ତା'ର ବୟାନରେ କହିଲା, ସେ କୁଡ଼ିଆ ଘର ଭିତରକୁ ଯାଇଥିଲା, କିନ୍ତୁ ଛୁଆଟିକୁ ସେ ବିଷ ଦେଇନାହିଁ ।

ପ୍ରତିବାଦୀ ତା'ର ଜବାବରେ ସେଇ ଝିଅ ଏବଂ ଆସାମୀ ମଧ୍ୟରେ ଆରୋପିତ ପ୍ରେମ ସମ୍ପର୍କ କିମ୍ବା ଦୈହିକ ସମ୍ପର୍କକୁ ଖଣ୍ଡନ କରିନଥିଲା; କିନ୍ତୁ ଛୁଆଟି ଯେ ଆସାମୀର, ଏହାର କୌଣସି ପ୍ରମାଣ ନାହିଁ ବୋଲି ବିଚାରପତିଙ୍କ ନିକଟରେ ଯୁକ୍ତି କରିଥିଲା ।

ବିଚାରପତି ପ୍ରତିବାଦୀକୁ କହିଲେ ଯେ ଆସାମୀ ଅପରାଧ କରିଛି ବୋଲି ତାଙ୍କର ଦୃଢ଼ ସନ୍ଦେହ ରହିଛି, କିନ୍ତୁ ତାଙ୍କ ନିକଟରେ ଯଥେଷ୍ଟ ପ୍ରମାଣ ନାହିଁ । ନ୍ୟାୟାଳୟ

ଝିଅଟିର ସାକ୍ଷ୍ୟକୁ ଗ୍ରହଣ କରିପାରିବ ନାହିଁ, କାରଣ ସେ ବିଚାର ସମୟରେ ଅଥବା ଆସାମୀ ବିରୁଦ୍ଧରେ ହତ୍ୟା ଅଭିଯୋଗ ପ୍ରସ୍ତୁତି ସମୟରେ ଶପଥ ନେଇ ମିଥ୍ୟା ସାକ୍ଷ୍ୟ ପ୍ରଦାନ କରିଛି । ସେ ମଧ୍ୟ ଅପରାଧରେ ଭାଗୀଦାର ହୋଇଥାଇପାରେ, କିନ୍ତୁ ଏଇଥିପାଇଁ ମଧ୍ୟ ଯଥେଷ୍ଟ ପ୍ରମାଣ ନାହିଁ ।

ଥେବେଡ଼ିର ସ୍ୱାମୀ ଏକ ବାଦାମୀ ଓ ହଳଦିଆ ରଙ୍ଗର ଟୋପି ପିନ୍ଧି ନ୍ୟାୟାଳୟ ଭିତରେ ବସି ରହିଥିଲା । ନିଜ ସ୍ତ୍ରୀକୁ ପ୍ରତ୍ୟାଖ୍ୟାନ କରି ନ ଥିବାରୁ ଏବଂ ନିଜର ସ୍ୱଳ୍ପ ରୋଜଗାରରୁ ଅଭାଗା ଶିଶୁଟି ପାଇଁ ପୋଷାକପତ୍ର ଓ ଅନ୍ୟାନ୍ୟ ଆବଶ୍ୟକୀୟ ପଦାର୍ଥ କିଣି ସମ୍ମାନଜନକ ଆଚରଣ ପ୍ରଦର୍ଶନ କରୁଥିବାରୁ ବିଚାରପତି ତାକୁ ପ୍ରଶଂସା କଲେ ।

ଅଭିଯୁକ୍ତ ବ୍ୟକ୍ତି ଅପରାଧୀ ନୁହେଁ ବୋଲି ବିଚାରପତି ରାୟ ଦେଲେ ।

ଶ୍ୱେତାଙ୍ଗ ଯୁବକଟି ହତ୍ୟା ଅଭିଯୋଗରୁ ଖଲାସ ହେବା ପରେ ସାମ୍ବାଦିକ ଏବଂ ସାଧାରଣ ଲୋକମାନଙ୍କର ଅଭିନନ୍ଦନକୁ ଗ୍ରହଣ କରି ନଥିଲା । ଫଟୋଗ୍ରାଫରମାନଙ୍କଠାରୁ ନିଜ ମୁହଁକୁ ନିଜ ମାଆର ବର୍ଷାତି ଦ୍ୱାରା ଘୋଡ଼ାଇ ଦେଇ ସେ ନ୍ୟାୟାଳୟରୁ ବାହାରିଗଲା । ତା'ର ବାପା ସାମ୍ବାଦିକମାନଙ୍କୁ କହିଲେ, ଏଠାରେ ମୁଣ୍ଡ ଟେକି ଚାଲିବାକୁ ଚେଷ୍ଟା କରିବି ଏବଂ ଯାହା ଦରକାର ତାହା କରିବି ।'

କେତେକ ରବିବାସରୀୟ ଖବରକାଗଜର ସାମ୍ବାଦିକମାନେ ନିଗ୍ରୋ ଝିଅଟିକୁ ସାକ୍ଷାତ କରିଥିଲେ । ଝିଅଟିର ନାମକୁ ବିଭିନ୍ନ ଭାବରେ ବନାନ କରି ତା' ସହିତ ହୋଇଥିବା ସାକ୍ଷାତ୍‌କାର ସେମାନେ ଛାପିଥିଲେ । ତା'ର ଫଟୋଗ୍ରାଫ୍ ତଳେ ସେ ତା' ନିଜ ଭାଷାରେ କହିଥିବା କଥାକୁ କହିଥିଲେ । ତା'ର ଅର୍ଥ ହେଲା : 'ଏହା ହେଉଛି ଆମ ପିଲାଦିନର ଏକ ଘଟଣା । ଏବେ ଆମର ଆଉ ସାକ୍ଷାତ ହେଉ ନାହିଁ ।'



*ଅନୁବାଦ :* **ବିଜୟ କୁମାର ନନ୍ଦ**

# ବର୍ଣ୍ଣାଡ୍ ମାଲାମୁଡ୍

୧୯୮୬ ମସିହାରେ ମାଲାମୁଡ୍‌ଙ୍କ ମୃତ୍ୟୁରେ ପ୍ରଖ୍ୟାତ ଆମେରିକୀୟ ଔପନ୍ୟାସିକ ଓ ନୋବେଲ୍ ବିଜେତା ସଲବେଲୋ ଲେଖିଥିଲେ : 'ସେ ଥିଲେ କଳ୍ପନାର କାରିଗର । ଆଖ୍ୟାୟିକାର ସ୍ରଷ୍ଟା ଓ ନୀତିକଥାର ନିପୁଣ ବ୍ୟାଖ୍ୟାକାର,' ବିଶିଷ୍ଟ ଇଂରାଜୀ ଔପନ୍ୟାସିକ ଆନ୍ଥୋନୀ ବର୍ଜେସ୍ ତାଙ୍କ ସମ୍ପର୍କରେ କହନ୍ତି - 'ସେ କେବେ ଭୁଲି ନଥିଲେ ଯେ ସେ ଜଣେ ଆମେରିକୀୟ ଇହୁଦି; ଆମେରିକୀୟ ସଭ୍ୟତା ଓ ସମାଜ ପୃଷ୍ଠଭୂମିରେ ଜଣେ ଇହୁଦିର ସ୍ଥିତିର ବର୍ଣ୍ଣନାରେ ସେ ହିଁ ଥିଲେ ସର୍ବୋତ୍କୃଷ୍ଟ । ସେ ହେଉଛନ୍ତି ଜଣେ ପ୍ରଥମ ଶ୍ରେଣୀୟ ମୌଳିକ ଲେଖକ ।'

ଏପ୍ରିଲ୍, ୨୬, ୧୯୧୪ ମସିହାରେ ବୃକ୍‌ଲିନ୍‌ଠାରେ ତାଙ୍କ ଜନ୍ମ । ମାକ୍ସ ଓ ବାର୍ଥା ମାଲମୁଡ୍‌ଙ୍କ ପ୍ରଥମ ସନ୍ତାନ । ଏମାନେ ଥିଲେ ରୁଷିଆରୁ ଆସିଥିବା ଓ ଆମେରିକୀୟ ପ୍ରବାସୀ ଇହୁଦି । ପରିବାରର ବ୍ୟବସାୟ ବୃକ୍‌ଲିନ୍‌ରେ ଥିବା ଭୁସାମାଲ୍ ଦୋକାନଟିଏ । ମାଲାମୁଡ୍‌ଙ୍କ ଅନେକ ଗଳ୍ପରେ ଅଛି ଏଇ ଦୋକାନର ବର୍ଣ୍ଣନା । ମା'ଙ୍କ ମୃତ୍ୟୁ ପରେ ବାପା ଦ୍ୱିତୀୟ ବିବାହ କରିଥିଲେ । ମାମୁଁ ଚାର୍ଲି ଫିଡ୍‌ଲ୍‌ମାନ୍ ଥିଲେ ଇଦିସ୍ ଥିଏଟରର ଜଣେ ସ୍ମାରକ । ଏହି ଥିଏଟର୍ କମ୍ପାନୀ ବୁଲିବୁଲି ନାଟକ ପ୍ରଦର୍ଶନ କରୁଥିଲେ । ଏହାର ପ୍ରଭାବ ଥିଲା ବେନିଫିଟ୍ ପରଫରମାନ୍‌ସ, ସପୋଜ, ୱେଡିଂ ଭଳି ତାଙ୍କର ଅନେକ ଗଳ୍ପରେ ।

ବୃକ୍‌ଲିନ୍‌ରେ ପାଠପଢ଼ା ଆରମ୍ଭ ଓ ୧୯୩୬ ମସିହାରେ ବି.ଏ. ପାସ୍ । ଦାରିଦ୍ର୍ୟ ଯୋଗୁ ଅଧିକ ପଢ଼ି ନପାରି ଜଣେ ହାଇସ୍କୁଲ୍ ଶିକ୍ଷକ ଭାବେ କର୍ମମୟ ଜୀବନ ଆରମ୍ଭ କରନ୍ତି ଓ ପରେ ପରେ ଯୋଗ ଦିଅନ୍ତି ଡାକ ବିଭାଗରେ ଜଣେ କର୍ମଚାରୀ

ଭାବେ । ସେ କହନ୍ତି, 'କୌଣସି ଚାକିରି ବା କାମ ମୋ ପାଇଁ ବିଶେଷ ଫରକ୍ ନୁହେଁ– ଯେ ପର୍ଯ୍ୟନ୍ତ ମୁଁ ଲେଖାଲେଖି ପାଇଁ ସମୟ ପାଉଛି ।' ୧୯୪୦ ମସିହାରେ କିଛିଦିନ ପାଇଁ ଚାକିରି କରନ୍ତି ୱାଶିଂଟନ୍‌ରେ, ପୁଣି ଫେରିଯାନ୍ତି ନ୍ୟୁୟର୍କ । ୧୯୪୨ରେ କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ପାସ୍ । ୧୯୪୩ ବେଳକୁ ଲେଖାଲେଖି ଆରମ୍ଭ କରନ୍ତି । ତାଙ୍କର ପ୍ରଥମ ସମ୍ପୂର୍ଣ୍ଣ ଉପନ୍ୟାସ 'ଦି ଲାଇଟ୍ ସ୍କିପର୍'ର ପାଣ୍ଡୁଲିପିକୁ ସେ ପୋଡ଼ି ଦେଇଥିଲେ । 'କାରଣ ମୁଁ ଅନୁଭବ କଲି ଯେ ମୁଁ ଏହାଠାରୁ ଅଧିକ ଭଲ ଲେଖି ପାରିଥାନ୍ତି ।' ୧୯୪୯ରେ କଲେଜରେ ଅଧ୍ୟୟନ ପାଇଁ ଯୋଗ ଦିଅନ୍ତି । ଏଇଠି ଲେଖା ହେଲା ଆମେରିକୀୟ ବେସ୍‌ବଲ୍‌କୁ ନେଇ ତାଙ୍କ ପ୍ରଖ୍ୟାତ ଉପନ୍ୟାସ 'ଦି ନାଚୁରାଲ୍ ।' କଲେଜ ଲାଇବ୍ରେରୀ ବାରଣ୍ଡାକୁ ଭିତ୍ତିଭୂମି କରି ଲେଖାହୁଏ ତାଙ୍କର ବହୁଚର୍ଚ୍ଚିତ ଗଳ୍ପ 'ଦି ମ୍ୟାଜିକ୍ ବାରେଲ୍' । ୧୯୪୫ ମସିହାର ଦେଖାହୁଏ ଧାନ୍ ଡି ଚିଆରାଙ୍କ ସଙ୍ଗେ । ସାକ୍ଷାତରୁ ଘନିଷ୍ଠତା ଓ ପରେ ପରେ ବିବାହ । ୧୯୪୭ରେ ପ୍ରକାଶିତ ହୁଏ 'ଦି ଆସିଷ୍ଟାଣ୍ଟ' । ପରେ ପରେ 'ଦି ନିଉଲାଇଫ୍', 'ଇଡ଼ିଅଟ୍‌ସ ଫାଷ୍ଟ', 'ଦି ଫିକ୍‌ସର', 'ଦି ଟେନାଣ୍ଟସ୍', 'ସେମ୍‌ବ୍ରଣ୍ଟସ୍ ହାଟ୍' ଓ ମୃତ୍ୟୁ ପରେ ଅସମ୍ପୂର୍ଣ୍ଣ ଉପନ୍ୟାସ 'ଦି ପିପୁଲ୍' ଏବଂ ଗଳ୍ପ ସଂକଳନ, 'ଅନ୍‌କଲେକ୍‌ଟେଡ୍ ଷ୍ଟୋରିଜ୍' । ପୁରସ୍କାର ମିଳିଛି ଅନେକ ତାଙ୍କୁ । ୧୯୫୭ରେ ଆସିଷ୍ଟାଣ୍ଟ ପାଇଁ ସୋସେଣ୍ଟାଲ୍ ସମ୍ମାନ, ୧୯୫୮ରେ ପ୍ରକାଶିତ ପ୍ରଥମ ଗଳ୍ପ ସଂକଳନ, 'ଦି ମ୍ୟାଜିକ୍ ବ୍ୟାରେଲ୍' ପାଇଁ ନେସ୍‌ନାଲ୍ ବୁକ୍ ଆୱାର୍ଡ ଓ ୧୯୬୭ ମସିହାରେ ସମ୍ମାନଜନକ ପୁଲିଜର୍ ପୁରସ୍କାର । ୮ଟି ଉପନ୍ୟାସ ଓ ଚାରୋଟି ଗଳ୍ପ ସଂକଳନର ପ୍ରଣେତା ଏହି ମହାନ୍ ଲେଖକଙ୍କର ନ୍ୟୁୟର୍କଠାରେ ମୃତ୍ୟୁ ହୁଏ ମାର୍ଚ୍ଚ ୧୮, ୧୯୮୬ ମସିହାରେ ।

ଏକ ଅସ୍ୱାଭାବିକ ଓ ଦୁଃଖଦ ପଟ୍ଟଭୂମିରେ ସାଧାରଣ ମଣିଷ ଜୀବନର ଜୟଯାତ୍ରା ହିଁ ତାଙ୍କ ସମସ୍ତ ରଚନାର ମୂଳକଥା । ମୃତ୍ୟୁ ପରେ ପ୍ରକାଶିତ ଗଳ୍ପ 'ଦି ସ୍ପ୍ରିଙ୍ଗ୍ ରେନ୍'ର ଓଡ଼ିଆ ରୂପାନ୍ତର - ବସନ୍ତ ଋତୁର ବର୍ଷା ।

# ବସନ୍ତ ଋତୁର ବର୍ଷା

ସେଦିନ ୧୨୧ ନମ୍ବର ଷ୍ଟ୍ରିଟ୍‌ରେ ଦେଖିଥିବା ଦୁର୍ଘଟଣା ବିଷୟରେ ଭାବିଭାବି ନିଦ ଭାଙ୍ଗିବା ପରେ ବି ଜର୍ଜ ଫିସର୍ ବିଛଣାରେ ପଡ଼ି ରହିଥିଲେ । ଯୁବକଟି ଗାଡ଼ି ଧକ୍‌କାରେ ପଡ଼ିଯିବା ପରେ ସେମାନେ ତାକୁ ବ୍ରଡ୍‌ୱେରେ ଥିବା ଏକ ଔଷଧ ଦୋକାନକୁ ଟେକି ନେଇ ଯାଇଥିଲେ । ମାତ୍ର ଦୋକାନି ଜଣକ କୌଣସି ସାହାଯ୍ୟ କରି ନ ପାରିବାରୁ ସେମାନେ ଆମ୍ବୁଲାନ୍‌ସଟିଏ ପାଇଁ ଅପେକ୍ଷା କରି ରହିଥିଲେ । ଦୋକାନର ପଛପଟ କୋଠରୀରେ ଆହତ ଯୁବକଟି ଟେବୁଲ୍ ଉପରେ ଛାତକୁ ଚାହିଁ ସେମିତି ପଡ଼ି ରହିଥିଲା । ସେ ଜାଣିଥିଲା ଯେ ସେ ମରିବାକୁ ଯାଉଛି ।

କୋଡ଼ିଏ ପଚିଶି ବର୍ଷ ବୟସର ଏଇ ଯୁବକଟି ପାଇଁ ଜର୍ଜକୁ ଖୁବ୍ ଦୁଃଖ ଲାଗୁଥିଲା । ଦୁର୍ଘଟଣାଟିକୁ ସେ ଯେମିତି ଅବିଚଳିତ ଭାବେ ଗ୍ରହଣ କରିଥିଲା ସେଥିରୁ ଜର୍ଜର ହୃଦ୍‌ବୋଧ ହୋଇଥିଲା ଯେ ଯୁବକଟି ଅତ୍ୟନ୍ତ ଉତ୍ତମ ଚରିତ୍ରର । ଜର୍ଜ ଜାଣିଥିଲା ଯେ ଯୁବକଟି ମୃତ୍ୟୁକୁ ଆଦୌ ଡରୁ ନଥିଲା । ସେ ମଧ୍ୟ ଯୁବକଟିକୁ କହିବାକୁ ଚାହୁଁଥିଲା ଯେ ସେ ମଧ୍ୟ ମୃତ୍ୟୁକୁ ଭୟ କରେ ନାହିଁ । ମାତ୍ର ଶବ୍ଦସବୁ ତା' ପତଳା ଓଠ ଉପରକୁ ଆସୁ ନଥିଲା । ଏହି ଅନୁଚ୍ଚାରିତ ଶବ୍ଦଗୁଡ଼ିକରେ ସେ ବାକ୍‌ରୁଦ୍ଧ ହୋଇ ଘରକୁ ଫେରି ଆସିଲା ।

ତା' ଅନ୍ଧାରୁଆ କୋଠରୀରେ ଖଟ ଉପରେ ଶୋଇ ଝିଅ ଫ୍ଲୋରେନ୍‌ସ ଚାବି ଖୋଲୁଥିବାର ଶୁଣି ପାରିଲା । ସେ ଶୁଣିଲା ତା' ଝିଅ ପଲ୍‌କୁ ଚାପା ଗଳାରେ କହୁଛି,

'ତମେ ମିନିଟିଏ ପାଇଁ ଘର ଭିତରକୁ ଆସିବ କି ?'

'ନା', ପଲ୍ ଟିକିଏ ପରେ ଉତ୍ତର ଦେଲା ।

'ଆସନ୍ତା କାଲି ନ'ଟା ବେଳେ ମୋ କ୍ଲାସ୍ ଅଛି ।'

'ତା'ହେଲେ ଗୁଡ୍ ନାଇଟ୍' ଫ୍ଲୋରେନ୍‌ସ କହିଲା ଓ ପରେ ଜୋର୍‌ରେ ତା' କୋଠରୀ କବାଟ ବନ୍ଦ କରିଦେଲା । ଜର୍ଜ ଭାବିଲା ଏହି ହିଁ ପ୍ରଥମ ଚରିତ୍ରବାନ୍ ପିଲା ଯାହା ସାଙ୍ଗରେ ଫ୍ଲୋରେନ୍‌ସ ବାହାରକୁ ବୁଲି ଯାଇଥିଲା । ଏମିତି ପିଲାଟିଏ ସେ ଆଉ କେଉଁଠି ପାଇବ ନାହିଁ । ଫ୍ଲୋରେନ୍‌ସ ଥିଲା ଠିକ୍ ତା' ମା ଭଳି । ଭଲ ଲୋକମାନଙ୍କ ସାଙ୍ଗରେ କେମିତି ବ୍ୟବହାର କରାଯାଏ ସେ ଜାଣିନାହିଁ । ଜର୍ଜ ଏଥର ମୁଣ୍ଡ ଉଠାଇ

ବିଟିଆଡ଼କୁ ଚାହିଁଲା । ତା' ନିଜ ଭାବନାଗୁଡ଼ାକ ଏଡ଼େ ଜୋର୍‌ରେ ତା'କୁ ଶୁଭୁଥିଲା ଯେ, ସେ ଭାବିଲା କାଳେ ସେଇ ଶବ୍ଦରେ ବିଟିର ନିଦ ଭାଙ୍ଗି ଯାଇଥିବ । କିନ୍ତୁ ତା' ନିଦ ଭାଙ୍ଗି ନଥିଲା ।

ତାହା ଜର୍ଜ ପାଇଁ ଥିଲା ଆଉ ଗୋଟିଏ ବିନିଦ୍ର ରାତି । ଖୁବ୍ ଭଲ ଉପନ୍ୟାସଟିଏ ପଢ଼ି ସାରିବା ପରେ ବିଛଣାରେ ପଡ଼ିରହି ସେ ଭାବିଲା ଯେ ସେ ସବୁ ଘଟଣା ତା' ନିଜ ଜୀବନରେ ହିଁ ଘଟୁଛି । ଦିନରେ ଦେଖିଥିବା ଘଟଣା ସବୁ ସେ ନିଦ୍ରାହୀନ ରାତିରେ ଭାବିବାକୁ ଲାଗିଲା । ସେ ସେହି କଥା ସବୁ କହିଲା, ଯାହା ସେଦିନ ଲୋକମାନେ ତା' ଓଠରେ ଦେଖିଥିଲେ, ମାତ୍ର ଶୁଣି ନଥିଲେ । ସେ ମରିବାକୁ ଯାଇଥିବା ଯୁବକଟିକୁ କହୁଥିଲା – 'ମୁଁ ମଧ୍ୟ ମରିବାକୁ ଭୟ କରେନା ।' ପଢ଼ିଥିବା ଉପନ୍ୟାସର ନାୟିକାକୁ କହୁଥିଲା, –'ତମେ ତ ମୋ ନିଃସଂଗତାକୁ ବୁଝିପାର । ମୁଁ ତମକୁ ସେକଥା କହିପାରିବି ।' ପୁଣି ନିଜ ସ୍ତ୍ରୀ ଓ ଝିଅକୁ ସେ ସେମାନଙ୍କ ସମ୍ପର୍କରେ ଯାହା ଭାବେ ସେ କଥା କହିଲା ।

'ବିଟି', ସେ କହିଲା, 'ମୁଁ ତମକୁ ଥରେ କଥା କହିଥିଲି । କିନ୍ତୁ ସେ ତ ତମେ ନଥିଲ । ସେ ଥିଲା ସମୁଦ୍ର, ଅନ୍ଧାର ଓ ବନ୍ଧ ଟପି ଆସୁଥିବା ଲହଡିର ଶବ୍ଦ । ପୁରୁଷମାନେ କିଭଳି ନିଃସଙ୍ଗ, ତାହା ଜଣାଇବାକୁ ଯାଇ ଏସବୁ କାବ୍ୟିକ କଥା ମୁଁ କହୁଥିଲି । ମୁଁ ଏ କଥା କହିଲି, କାରଣ ତମେ ଗାଢ଼ ନାଲିରଙ୍ଗର କେଶଥିବା ଜଣେ ସୁନ୍ଦରୀ ଆଉ ମୁଁ ଡରୁଥିଲି, କାରଣ ମୁଁ ଜଣେ ପତଳା ଓଠ ଥିବା ସାଧାରଣ ମଣିଷ । ମୋର ଭୟ ଯେ ମୁଁ ତୁମକୁ ପାଇପାରିଲି ନାହିଁ । ତୁମେ ମୋତେ ଭଲ ପାଉ ନଥିଲ । ତଥାପି ତମେ ମୋ ସଙ୍ଗରେ ନଈକୂଳ ରାସ୍ତାରେ ବୁଲିଯିବାକୁ ରାଜି ଥିଲ । ତମ ପୋଷାକ, ତମ ଘର ଆଉ ଏଠାକୁ ବ୍ରିଜ୍ ଖେଳିବାକୁ ଆସୁଥିବା ଲୋକମାନଙ୍କୁ ତମେ ଭଲ ପାଅ ।

ସେ ଫ୍ଲୋରେନ୍‌ସକୁ କହିଲା, 'ତୁ ବି ମୋତେ ନିରାଶ କଲୁ । ପିଲାଦିନେ ତତେ ମୁଁ ବହୁତ ଭଲ ପାଉଥିଲି । ବଡ଼ ହୋଇ ତୁ ସ୍ୱାର୍ଥପର ଆଉ ଛୋଟ ହୋଇ ଯାଇଛୁ । ତୁ ଯେତେବେଳେ କଲେଜ ଯିବାକୁ ମନା କରିଦେଲୁ, ମୁଁ ତୋ ଉପରେ ମୋର ଶେଷ ବିଶ୍ୱାସ ହରାଇ ବସିଲି । ମାତ୍ର ପଲ୍ ଭଳି ପାଠୁଆ ପିଲାଟିକୁ ଘରକୁ ଆଣି ତୁ ଜୀବନରେ ସବୁଠୁଁ ଭଲ କାମଟିଏ କରିଛୁ । ମାତ୍ର ମୁଁ ଜାଣେ, ତୁ ତାକୁ କେବେହେଲେ ନିଜର କରି ପାରିବୁନି ।'

ଏପ୍ରିଲ୍ ଆଦ୍ୟ ପ୍ରତ୍ୟୁଷର ଅଧାଫର୍ଚ୍ଚା ଆକାଶ ତା' ଶୋଇବା ଘର ଭିତରକୁ ପଶି ଆସିବା ଯାଏ ସାରାରାତି ଜର୍ଜ ନିଜକୁ ନିଜେ ଏସବୁ କଥା କହିଚାଲିଥିଲା । ସକାଳର ଝାପ୍‌ସା ଆଲୁଅରେ ପାଖ ଖଟରେ ଶୋଇ ସିଲ୍‌ହଟ୍ ପରି ଦେଖାଯାଉଥିବା ବିଟି ଆସ୍ତେ ଆସ୍ତେ ପରିଷ୍କାର ଦେଖାଗଲା । ଜର୍ଜ ସେପଟକୁ ମୁହଁ ବୁଲେଇ କିଛି ସମୟ ପାଇଁ ଶୋଇ ପଡ଼ିଲା ।

ସକାଳ ଜଳଖିଆ ଖାଇବାବେଳେ ଜର୍ଜ ଫ୍ଲୋରେନ୍‌ସକୁ ପଚାରିଲା, 'ତୋର ସବୁ ଭଲ ତ ?'

'ମୋତେ ଏକା ରହିବାକୁ ଦିଅ ।'

ଫ୍ଲୋରେନ୍‌ସ କହିଲା ।

'ତାକୁ କିଛି କୁହନା', ବିଟି କହିଲା । 'ତମେ ଜାଣ ସକାଳୁ ତା' ମୁଣ୍ଡ ଠିକ୍ ନଥାଏ ।'

'ମୁଁ ପାଗଳୀ ନୁହେଁ' କାନ୍ଦିବା ସ୍ୱରରେ କହିଲା । 'ବରଂ ପଲ୍ ପାଗଳ । ସେ ମୋତେ କେଉଁଠିକି ହେଲେ ନିଏ ନାହିଁ ।'

'ତୁ ଗତକାଲି ରାତିରେ କ'ଣ କରୁଥିଲୁ ।'

ବିଟି ପଚାରିଲା ।

'ଯାହା ଆମେ ସବୁଦିନେ କରୁ' ଫ୍ଲୋରେନ୍‌ସ କହିଲା ।

'ଆମେ ବୁଲିବାକୁ ଗଲୁ । ମୁଁ ତାକୁ ସିନେମା ମଧ ନେଇ ପାରିଲି ନାହିଁ ।'

'ତା'ର କ'ଣ ଟଙ୍କା ପଇସା ଅଛି ? ବୋଧହୁଏ ସେ କଲେଜରେ ଚାକିରି କରେ ?' ବିଟି ପଚାରିଲା ।

'ନା', ଫ୍ଲୋରେନ୍‌ସ କହିଲା । 'ସେ ଜଣେ ଧନୀ ପିଲା' । ତା' ବାପା ଜଣେ ବଡ଼ ବେପାରୀ । ହେଲେ ସେଥିରେ ମୋର କ'ଣ ଅଛି ? ସେ ମୋତେ ବାହାରକୁ କେବେ ବୁଲେଇବାକୁ ନେବ ନାହିଁ ।'

'ଧୈର୍ଯ୍ୟ ଧର', ବିଟି କହିଲା । 'ଏଥର ଆସିଲେ ମୁଁ କିମ୍ବା ତୋ ବାପା ତାକୁ ଏକଥା ବୁଝେଇବୁ ।'

'ମୁଁ ପାରିବି ନାହିଁ', ଜର୍ଜ କହିଲା ।

'ତମେ ନ କୁହ । ମୁଁ କିନ୍ତୁ କହିବି ।'

ବିଟି ଉତ୍ତର ଦେଲା ।

ଜର୍ଜ କଫି ପିଇସାରି ଉଠି ଚାଲିଗଲା ।

ମଧ୍ୟାହ୍ନ ଭୋଜନ ପାଇଁ ଜର୍ଜ ଘରକୁ ଫେରିବା ପରେ ତା' ପାଇଁ ଗୋଟିଏ ଖବର ଥିଲା । ସେଦିନ ବିଟି ଓ ଫ୍ଲୋରେନ୍‌ସ ଶିଘ୍ର ଖାଇ ସାରିଛନ୍ତି । କାରଣ ବିଟିକୁ ବ୍ରିଜ୍ ଖେଳିବାକୁ ଫରେଷ୍ଟହିଲ୍ ଯିବାକୁ ପଡ଼ିବ ଓ ଫ୍ଲୋରେନ୍‌ସ ଜଣେ ବାନ୍ଧବୀ ସଙ୍ଗରେ ସିନେମା ଯିବ । ଚାକରାଣୀ ଜର୍ଜକୁ ଖାଇବାକୁ ବାଢ଼ିଦେଲା । ଖାଇସାରି ଜର୍ଜ ଖବର କାଗଜ ପଢ଼ିବାକୁ ଓ ଯୁଦ୍ଧ ସମ୍ବାଦ ଶୁଣିବାକୁ ଶୋଇବା ଘରକୁ ଚାଲିଗଲା ।

ଏତିକିବେଳେ କଲିଂବେଲ୍ ବାଜିଲା । ଜର୍ଜ ଉଠି ଚାକରାଣୀକୁ ଦେଖିବାକୁ କହିଲା । ଆଗନ୍ତୁକ ଥିଲା ପଲ୍ । ମୁଣ୍ଡରେ ପୁରୁଣା ଟୋପି ଓ ଦେହରେ ରେନ୍‌କୋଟ୍ । ତଥାପି ତା' କାନ୍ଧପାଖ ଭିଜି ଯାଇଥିଲା ।

ଜର୍ଜ ଖୁସି ହେଲା ଯେ ବିଟି, ଫ୍ଲୋରେନ୍ସ କେହି ଘରେ ନାହାନ୍ତି ।

'ପଲ୍, ଭିତରକୁ ଆସ । କ'ଣ ବର୍ଷା ହେଉଛି ?'

'ନା, ଝିପ୍‌ଝିପ୍ ବର୍ଷା ।'

ରେନ୍‌କୋଟ୍ ନ କାଢ଼ି ପଲ୍ ଘର ଭିତରକୁ ଆସିଲା ।

'ଫ୍ଲୋରେନ୍ସ ନାହିଁ ?' ସେ ପଚାରିଲା ।

'ଜଣେ ବାନ୍ଧବୀ ସହ ସେ ସିନେମା ଯାଇଛି । ତା' ମା ମଧ୍ୟ କେଉଁଠିକୁ ବ୍ରିଜ୍ ଖେଳିବାକୁ ଯାଇଛି । ଫ୍ଲୋରେନ୍ସ କ'ଣ ଜାଣିଥିଲା ଯେ ତମେ ଆସିବ ?'

'ନା ସେ ଜାଣି ନଥିଲା ।'

ପଲ୍ ନିରାଶ ହୋଇ କବାଟ ଆଡ଼କୁ ଚାଲିଲା ।

'ମୁଁ ଦୁଃଖିତ' ଜର୍ଜ କହିଲା । ସେ ଆଶା କରିଥିଲା ଯେ ପଲ୍ କିଛି ସମୟ ରହିବ । କବାଟ ଆଡ଼କୁ ଯାଉ ଯାଉ ପଲ୍ କହିଲା, 'ମି. ଫିସର୍ ।'

'ହଁ', ଜର୍ଜ ଉତ୍ତର ଦେଲା ।

'ତମର କ'ଣ ଏବେ କାମ ଅଛି ?'

'ନା, କିଛି କାମ ନାହିଁ ।'

'ମୋ ସାଙ୍ଗରେ ବୁଲିଗଲେ କେମିତି ହୁଅନ୍ତା ?'

'ତମେ ବର୍ଷା ହେଉଛି ବୋଲି କହିଲନା ?'

'ଏ କେବଳ ବସନ୍ତ ଋତୁର ବର୍ଷା', ପଲ୍ କହିଲା ।

'ତମ ରେନ୍‌କୋଟ୍ ଆଉ ପୁରୁଣା ଟୋପି ପିନ୍ଧ ।'

'ହଁ', ଜର୍ଜ କହିଲା 'ଚାଲିଲେ ମୋତେ ବି ଭଲ ଲାଗିବ ।'

ବର୍ଷାରେ ରବର ଯୋତା ହଳେ ପିନ୍ଧିବାକୁ ସେ ରୁମ୍ ଭିତରକୁ ପଶିଲା । ଯୋତା ପିନ୍ଧିବା ବେଳେ ସେ ଖୁବ୍ ଉତ୍ତେଜନା ଅନୁଭବ କରୁଥିଲା, ମାତ୍ର ସେ କଥା ସେ ଭାବିଲା ନାହିଁ । ସେ ତା' କଳା ରେନ୍‌କୋଟ ଆଉ ଗତବର୍ଷର ଟୋପିଟି ପିନ୍ଧିଲା ।

ସେମାନେ ରାସ୍ତା ଉପରେ ପହଞ୍ଚିଲା ବେଳେ ତାଙ୍କ ମୁହଁ ଉପରେ ଥଣ୍ଡା କୁହୁଡ଼ି ବାଜୁଥିଲା । ଜର୍ଜ ଅନୁଭବ କଲା ଯେ ତା'ର ସମ୍ପୂର୍ଣ୍ଣ ଶରୀର ଉତ୍ତେଜିତ ହୋଇ ଯାଇଛି । ସେମାନେ ରାସ୍ତା ପାରି ହେଲେ । ଗ୍ରାଣ୍ଟର ସମାଧି ଟପି ୱାଶିଂଟନ୍ ସେତୁ ଆଡ଼କୁ ଚାଲୁଥିଲେ ।

ସାରା ଆକାଶ ଭାସମାନ ଧଳାକୁହୁଡ଼ିରେ ଆଚ୍ଛାଦିତ ହୋଇଥିଲା । ରାସ୍ତାକଡ଼ର ଲ୍ୟାମ୍ପ ଖୁଣ୍ଟରୁ କୁହୁଡ଼ି ଝୁଲିବା ପରି ଦେଖା ଯାଉଥିଲା । ଥଣ୍ଡା ପବନ ହଡ୍‌ସନ୍ ନଇ ସେପାରିରୁ ନିଉଜର୍ସି ଆଡ଼କୁ ବହି ଆସୁଥାଏ । ଆଉ ତା' ସହିତ ଆସୁଥାଏ ବସନ୍ତର ବାସ୍ନା । ବେଳେବେଳେ ପବନରେ ଥଣ୍ଡା କୁହୁଡ଼ି ଜର୍ଜର ଆଖି ଭିତରକୁ ପଶି ଯାଉଥାଏ । ଲାଗୁଥାଏ ବିଦ୍ୟୁତ୍ କରେଣ୍ଟର ସ୍ପର୍ଶ ଭଳି । ପଲ୍‌ର ପାଖାପାଖି ହେବା ପାଇଁ ସେ ଲମ୍ବା

ଲମ୍ବା ପାଦ ପକାଇ ଚାଲୁଥାଏ । ଏଥିରେ ସେ ଗୋପନରେ ଖୁସି ହେଉଥାଏ । ଖୁସିରେ ତା'ର କାନ୍ଦିବାକୁ ଇଚ୍ଛା ହେଲା । ମାତ୍ର କାଳେ ପଲ୍ ଏକଥା ଜାଣିଯିବ ସେଥିପାଇଁ ସେ ତାହା କଲା ନାହିଁ ।

ପଲ୍ କହି ଚାଲିଥାଏ, ତା ଶିକ୍ଷକ କଲମ୍ବିଆ ବିଶ୍ୱବିଦ୍ୟାଳୟର ପ୍ରଫେସରଙ୍କ ବିଷୟରେ । ଜର୍ଜ ଏକଥା ଶୁଣି ହସିଲା । ସେ ଯେ ବସ୍ତୁକଳା ଅଧ୍ୟୟନ କରୁଥିଲା, ଏ କଥା କହି ପଲ୍, ଜର୍ଜକୁ ଆଶ୍ଚର୍ଯ୍ୟ କରିଦେଲା । ତାଙ୍କ ଚାଲିବା ବାଟରେ ପଡୁଥିବା କୋଠାଘରଗୁଡ଼ିକ ସମ୍ପର୍କରେ ପଲ୍ ଟିକିନିଖି କରି ବୁଝାଉଥିଲା ଓ ସେସବୁ କେଉଁ ବସ୍ତୁରେ ତିଆରି ସେ କଥା ମଧ୍ୟ କହୁଥିଲା । ଜର୍ଜ ମଧ୍ୟ ଖୁବ୍ ଆଗ୍ରହର ସହ ସେକଥା ଶୁଣୁଥିଲା ।

ଏଥର ସେମାନେ ଧୀରେ ଧୀରେ ଚାଲି ଟ୍ରାଫିକ୍ ବନ୍ଦ ହେଲାବେଳେ ନଇକୂଳ ରାସ୍ତା ପାର ହୋଇ ଆରପଟକୁ ଗଲେ । ଆରପଟେ ବ୍ରଡ୍‌ୱେକୁ ଯାଇ ଗୋଟିଏ ମଦଦୋକାନ ଭିତରକୁ ଗଲେ । ପଲ୍ ସାଣ୍ଡୱିଚ୍ ଓ ବିଅର୍ ବରାଦ ଦେଲା । ସେମାନେ ଯୁଦ୍ଧ ବିଷୟରେ କଥାବାର୍ତ୍ତା ହେଲେ । ତା'ପରେ ଜର୍ଜ ତା' ପାଇଁ ପଲ୍ ପାଇଁ ଆଉ ଦୁଇବୋତଲ ବିଅର୍ ବରାଦ କଲା । ପୁଣି ସେମାନେ ଅନ୍ୟ ଲୋକଙ୍କ ବିଷୟରେ କଥାବାର୍ତ୍ତା ହେଲେ । ଔଷଧ ଦୋକାନରେ ସେଦିନ ମରିଥିବା ସେଇ ପିଲାଟି ବିଷୟରେ ଜର୍ଜ ପଲ୍‌କୁ କହିଲା । କଥାଟି ପଲ୍ ମନକୁ ପାଇଥିବାର ଲକ୍ଷ୍ୟ କରି ଜର୍ଜ, ଏକ ଅଜଣା ଆନନ୍ଦରେ ଉଲ୍ଲସିତ ହୋଇ ଉଠୁଥିଲା ।

ଏତିକିବେଳେ କେହି ଜଣେ ଫୋନ୍‌ଗ୍ରାଫ୍ ଲଗାଇଲା । ସେଥିରେ ଟାଙ୍ଗୋ ସଙ୍ଗୀତଟିଏ ବାଜି ଉଠିଲା । ଟାଙ୍ଗୋ ଶୁଣି ଜର୍ଜର ଖୁସି ଆହୁରି ବଢ଼ିଗଲା । ସେ ବସିରହି ଭାବୁଥିଲା ଯେ ସେ କେଡ଼େ ପ୍ରାଞ୍ଜଳଭାବେ କଥାଟି କହିପାରିଛି ।

ପଲ୍ ନୀରବରେ ବସି ବିଅର୍ ପିଉଥିଲା । ତା'ପରେ ସେ ଫ୍ଲୋରେନ୍‌ସ ବିଷୟରେ କହିବାକୁ ଆରମ୍ଭ କଲା । ଜର୍ଜକୁ ଏକଥା ଅସ୍ୱସ୍ତିକର ଲାଗୁଥିଲା ଓ ସେ ମଧ୍ୟ ଟିକେ ଡରିଗଲା । ଜର୍ଜର ଭୟ ହେଲା ଯେ ପିଲାଟି ତାକୁ ଏମିତି କିଛି କହିବାକୁ ଯାଉଛି ଯାହା ତା'ର ଶୁଣିବାକୁ ଇଚ୍ଛା ନାହିଁ ଓ ପୁଣି ଏସବୁ ଶୁଣି ତା'ର ଖୁସିର ଏଇ ମୁହୂର୍ତ୍ତଗୁଡ଼ିକ ମଧ୍ୟ ସରିଯିବ ।

'ଈଷତ୍ ଲାଲ୍ କେଶରେ ଫ୍ଲୋରେନ୍‌ସ ଖୁବ୍ ସୁନ୍ଦର ଦିଶେ' ପଲ୍ କହିଲା । ଯେମିତି ସେ ନିଜକୁ ନିଜେ ଏକଥା କହୁଛି । ଜର୍ଜ କିଛି କହିଲା ନାହିଁ । 'ମି ଫିସ୍‌ର', ପଲ୍ ଚଷମା ତଳକୁ କରି ଉପରକୁ ଅନାଇ କହିଲା ।

'କିଛି କଥା ଅଛି, ଯାହା ମୁଁ ଭାବୁଛି ତମେ ଜାଣିବା ଦରକାର ।'

'ମୁଁ ?'

'ମି. ଫିସର୍' ପଲ୍ ଖୁବ୍ ନିଷ୍ଠା ସହକାରେ କହୁଥିଲା । 'ଫ୍ଲୋରେନ୍ସ ମୋତେ ପ୍ରେମ କରେ ଏକଥା ସେ ମୋତେ କହିଛି । ମୁଁ ତାକୁ ଭଲପାଏ କାରଣ ମୁଁ ନିଃସଙ୍ଗ । କିନ୍ତୁ ମୁଁ ଜାଣେନା କାହିଁକି ମୁଁ ତାକୁ ଭଲପାଇ ପାରିବିନି । ମୁଁ ତାକୁ ପାଇପାରିବି ନାହିଁ । ସେ ତମଭଳି ନୁହଁ । ଆମେ ନଈକୂଳ ରାସ୍ତାରେ ବୁଲିବାକୁ ଯାଉ । କିନ୍ତୁ ମୁଁ ତା'ର ନିଜର ହୋଇ ପାରେନା । ସେ କହେ ମୁଁ ଖୁବ୍ ଖାମ୍‌ଖିଆଲୀ । ସେ ସିନେମା ଯିବାକୁ ଖୁବ୍ ଯିଦ୍ କରେ ।'

ଜର୍ଜ ଅନୁଭବ କଲା ତା'ର ହୃଦୟ ସ୍ପନ୍ଦନ ବଢ଼ି ଯାଉଛି । ସେ ଭାବିଲା ସେ ଖୁବ୍ ଗୋପନୀୟ କଥା ଶୁଣୁଛି । ମାତ୍ର ସେ ସବୁ ତ ଗୋପନୀୟ ନୁହେଁ, କାରଣ ସାରା ଜୀବନ ସେ ଏଇ କଥା ହିଁ ଅନୁଭବ କରିଛି । ସେ ମଧ୍ୟ କହିବାକୁ ଚାହୁଁଥିଲା ଯେ ସେ କିପରି ସାରା ଜୀବନ ନିଃସଙ୍ଗ ଓ ଅନେକ ରାତି ଚେଇଁ ରହି, ସ୍ୱପ୍ନ ଦେଖି ବିତେଇଛି, ଧୂସର ସକାଳ ତା' କୋଠରୀ ଭିତରେ ଦୃଶ୍ୟ ହେବାଯାଏ । ମାତ୍ର ସେସବୁ ସେ କହିପାରିଲା ନାହିଁ ।

'ମୁଁ ଜାଣେ ପଲ୍ ତମେ କ'ଣ ଭାବୁଛ' ସେ କହିଲା । ସେମାନେ ବର୍ଷାରେ ଚାଲିଚାଲି ଘରକୁ ଫେରିଲେ । ଏଥର ବର୍ଷାର ବେଗ ବେଶି ବଢ଼ି ଚାଲିଥିଲା ।

ଘରେ ପହଞ୍ଚି ଜର୍ଜ ଦେଖିଲା ଉଭୟ ବିଟି ଓ ଫ୍ଲୋରେନ୍ସ ଶୋଇ ପଡ଼ିଲେଣି । ସେ ଜୋତା ଖୋଲି ଗାଧୁଆ ଘରେ ରେନ୍‌କୋଟ୍ ଓ ଟୋପି ଟାଙ୍ଗିଦେଲା । ଚପଲ୍ ପିନ୍ଧିଲା, ମାତ୍ର ଜାମାପ୍ୟାଣ୍ଟ ବଦଳାଇଲା ନାହିଁ । କାରଣ ତାକୁ ନିଦ ଲାଗୁନଥିଲା । ନିଜ ଭିତରେ ଥିବା ଆବେଗଟି ବିଷୟରେ ସେ ଖୁବ୍ ସଚେତନ ଥିଲା ।

ଜର୍ଜ ରେଡ଼ିଓ ଖୋଲି ଧୀର ସ୍ୱରରେ ଜାଜ୍ ସଙ୍ଗୀର ଶୁଣିଲା । ସିଗାରେଟ୍ ଲଗାଇ ଆଲୁଅ ଲିଭେଇଦେଲା । କିଛି ସମୟ ଅନ୍ଧାରରେ ଠିଆ ହୋଇ ଧୀରେ ଧୀରେ ବାଜୁଥିବା ଜାଜ୍ ସଙ୍ଗୀତ ଶୁଣିଲା । ତା'ପରେ ଝର୍କା ପାଖକୁ ଯାଇ ପର୍ଦ୍ଦା ଆଡ଼େଇ ବାହାରକୁ ଚାହିଁଲା ।

ବସନ୍ତ ଋତୁର ଏଇ ବର୍ଷା ସବୁଆଡ଼େ ଝରି ପଡୁଥିଲା – ଦୂରକୁ ଦିଶୁଥିବା କୃଷ୍ଣକାୟ ଭୂଖଣ୍ଡ ନିଉଜର୍ସିର ଉପକୂଳରେ, ପୁଣି ବହି ଯାଉଥିବା ନଈ ଉପରେ । ପବନରେ ଝୁଲୁଥିବା ଏଇ ବର୍ଷାର ଗୁଂଜରଣ ଶୁଭୁଥିଲା ରାସ୍ତାକଡ଼ର ଡେଙ୍ଗା ମାପଲ ଗଛର ପତ୍ରରେ ଆଉ ଭିଜା ଲ୍ୟାମ୍ପଖୁଣ୍ଟରେ । ଦମକାଏ ପବନରେ ବର୍ଷା ଝର୍କା ଭିତରକୁ ପଶି ଆସିଲା । ଜର୍ଜ ତା' ଗାଲ ଉପରେ ଲୁହର ସ୍ପର୍ଶ ଅନୁଭବ କଲା ।

ଶବ୍ଦ ଉଚ୍ଚାରଣ କରିବାର ପ୍ରବଳ କ୍ଷୁଧା ସେ ଅନୁଭବ କରୁଥିଲା । ସେ ଏମିତି କଥା କହିବାକୁ ଚାହୁଁଥିଲା ଯାହା ସେ ଆଗରୁ କେବେ କହି ନଥିଲା । ସେ ସେମାନଙ୍କୁ କହିବାକୁ ଚାହୁଁଥିଲା ଯେ ସେ ନିଜକୁ ଆବିଷ୍କାର କରିଛି । ଆଉ ସେ କେବେ ହଜିଯିବ ନାହିଁ ବା ନୀରବ ହେବ ନାହିଁ । ପୁଣି ଥରେ ସେ ପୃଥିବୀକୁ ନିଜର କରିପାରିଛି ଓ

ଭଲ ପାଇଛି । ସେ ଭଲ ପାଉଥିଲା ପଲ୍‌କୁ, ଫ୍ଲୋରେନ୍‌ସକୁ, ଏବଂ ସେଦିନ ମୃତ୍ୟୁମୁଖରେ ପଡ଼ିଥିବା ସେ ଯୁବକଟିକୁ ।

ମୁଁ ନିଶ୍ଚୟ ତାକୁ ସବୁକଥା କହିଦେବି । ଜର୍ଜ ଭାବିଲା । ଏକଥା ଭାବି ସେ ଫ୍ଲୋରେନ୍‌ସର କୋଠରୀ କବାଟ ଖୋଲିଲା । ଫ୍ଲୋରେନ୍‌ସ ନିଦରେ ଶୋଇପଡ଼ିଥାଏ । ତା'ର ଚାପା ନିଃଶ୍ୱାସ ସେ ଶୁଣିପାରୁଥିଲା ।

'ଫ୍ଲୋରେନ୍‌ସ !' ସେ ଧୀର ସ୍ୱରରେ ଡାକିଲା

'ଫ୍ଲୋରେନ୍‌ସ୍ !'

ଫ୍ଲୋରେନ୍‌ସ ହଠାତ୍ ନିଦରୁ ଉଠି ପଡ଼ିଲା ।

'କ'ଣ ହେଲା ?' ସେ ଆସ୍ତେ ପଚାରିଲା ।

ଜର୍ଜର ଓଠକୁ ଶବ୍ଦସବୁ ମାଡ଼ି ଆସୁଥିଲା

'ପଲ୍, ପଲ୍ ଏଠିକି ଆସିଥିଲା ?'

ଫ୍ଲୋରେନ୍‌ସ କହୁଣିରେ ଭରାଦେଇ ମୁଣ୍ଡଟେକି ଅନେଇଲା । ତା'ର ଦୀର୍ଘ କେଶ କାନ୍ଧ ଉପରେ ବିଛେଇ ହୋଇ ପଡ଼ିଥାଏ ।

'ପଲ୍ ? କ'ଣ ସେ କହୁଥିଲା ?'

ଜର୍ଜ କହିବାକୁ ଚେଷ୍ଟା କଲା । ମାତ୍ର ସେ ଅନୁଭବ କଲା ଯେ ଶବ୍ଦଗୁଡ଼ାକ ହଠାତ୍ ସ୍ଥିର ହୋଇ ଯାଇଛନ୍ତି । ପଲ୍ ତାକୁ ଯାହା କହିଥିଲା ସେ କେବେ ବି ଫ୍ଲୋରେନ୍‌ସକୁ କହିପାରିବନି । ଫ୍ଲୋରେନ୍‌ସ ପାଇଁ ତାକୁ ଦୁଃଖ ଲାଗିଲା ।

'ସେ କିଛି କହିଲା ନାହିଁ' ଜର୍ଜ ଥଙ୍ଗେଇ ଥଙ୍ଗେଇ କହିଲା । ଆମେ କେବଳ ଚାଲିଚାଲି ବାହାରକୁ ବୁଲିବାକୁ ଯାଇଥିଲୁ । ଫ୍ଲୋରେନ୍‌ସ ଦୀର୍ଘଶ୍ୱାସଟିଏ ନେଇ ପୁଣି ଶୋଇପଡ଼ିଲା । ପବନରେ ବସନ୍ତଋତୁର ଝର୍କା ପିଟି ହେଉଥାଏ । ରାସ୍ତାରେ ବର୍ଷା ପଡ଼ିବାର ଶବ୍ଦ ସେମାନେ ଶୁଣିପାରୁଥିଲେ ।

■■■

*ଅନୁବାଦ :* **ସଂଗ୍ରାମ ଜେନା**

# କାମିଲୋ ଯୋଜେ ସେଲା

୧୯୮୯ ମସିହାରେ ସାହିତ୍ୟ ପାଇଁ ନୋବେଲ୍ ପୁରସ୍କାର ପାଇଥିବା ମହାନ୍ ସ୍ପେନୀୟ ଔପନ୍ୟାସିକ, କାମିଲୋ ଯୋଜେ ସେଲା ବିଶ୍ୱ ସାହିତ୍ୟର ଜଣେ ସମ୍ମାନନୀୟ ବ୍ୟକ୍ତିତ୍ୱ । ସ୍ପେନୀୟ ଗୃହଯୁଦ୍ଧର ପଟ୍ଟଭୂମିରେ ସ୍ପେନୀୟ ସାହିତ୍ୟରେ 'ଟ୍ରେମେଣ୍ଡିସ୍‌ମୋ' ଆନ୍ଦୋଳନର ସୂତ୍ରଧର ଭାବେ ସେଲା ସାରା ବିଶ୍ୱର ଦୃଷ୍ଟି ଆକର୍ଷଣ କରିଥିଲେ । ଭୟ ଓ ଦୌରାତ୍ମ୍ୟ, ଆଧୁନିକ ସମାଜର ଉଗ୍ର ଗତି ଓ ପ୍ରକୃତି, ଲୋକାଚାର ଉପରେ ଧାର୍ମିକ ରୀତିନୀତି ଓ କଟକଣାର କ୍ଷୟକାରୀ ପ୍ରଭାବକୁ ସାଧୁତାର ସହ ଲିପିବଦ୍ଧ କରିବା ଏହି ଆନ୍ଦୋଳନ ଓ ଶୈଳୀର ବିଶେଷତ୍ୱ । ୧୧ ମଇ ୧୯୧୬ ମସିହାରେ ସ୍ପେନ୍‌ର ଲାକେରୁନା ପ୍ରଦେଶର ଇରିଆ ଫ୍ଲାଭିଆ ଗାଁରେ ତାଙ୍କର ଜନ୍ମ । ପିତା ସ୍ପେନୀୟ ଓ ମା' ଇଂରେଜ । ମାଡ୍ରିଦ୍ ବିଶ୍ୱବିଦ୍ୟାଳୟରୁ ଶିକ୍ଷାଲାଭ । ମାତ୍ର ଶିକ୍ଷା ସମ୍ପୂର୍ଣ୍ଣ କରିବା ପୂର୍ବରୁ ଫ୍ରାଙ୍କୋଙ୍କ ସେନାବାହିନୀରେ ଯୋଗ ଦେବାକୁ ସେ ବିଶ୍ୱବିଦ୍ୟାଳୟ ତ୍ୟାଗ କରନ୍ତି । ଗୃହଯୁଦ୍ଧ ସମୟରେ ଜେନେରାଲ୍ ଫ୍ରାଙ୍କୋଙ୍କ ଅଧୀନରେ ପରିଚାଳିତ ସ୍ପେନୀୟ ବିଦ୍ରୋହୀ ବାହିନୀରେ ଯୋଗ ଦିଅନ୍ତି । ଗୃହଯୁଦ୍ଧ ପରେ ପୁଣି ଶିକ୍ଷାଲାଭ ପାଇଁ ଫେରି ଆସନ୍ତି ମାଡ୍ରିଦ୍ ବିଶ୍ୱବିଦ୍ୟାଳୟକୁ । ୧୯୪୨ରେ ପ୍ରକାଶିତ ହୁଏ ତାଙ୍କର ପ୍ରଥମ ଉପନ୍ୟାସ, 'ପାସ୍କାଲ ଦୁଆର୍ତ୍ତେଙ୍କ ପରିବାର' (La Familia De Pascual Duarte) ଓ ଏହା ତାଙ୍କୁ ସାରା ସ୍ପେନ୍‌ରେ ଜଣେ ବିଶିଷ୍ଟ ଲେଖକ ଭାବେ ପରିଚିତ କରାଏ । ୧୯୪୪ ମାର୍ଚ୍ଚ ୧୨ ତାରିଖରେ ମାରିଆ ଡେଲ୍ ରୋଜାରିଓ କୋଣ୍ଡୋ ପିକାଭିଆଙ୍କ ସହ ବିବାହ ହୁଏ । ୧୯୪୫ରେ ତାଙ୍କର ପ୍ରଥମ କବିତା ସଂକଳନ ପ୍ରକାଶ ପାଏ । ଏହା ପରେ ପରେ ୧୯୪୮ ମସିହାରେ ପ୍ରକାଶିତ ହୁଏ ପ୍ରଖ୍ୟାତ ଭ୍ରମଣ କାହାଣୀ

'ଆଲ୍‌କାରିଆକୁ ଯାତ୍ରା' (Journey to Alcarria) । ୧୯୫୨ରେ ପ୍ରକାଶ ପାଏ 'ମିସେସ୍ କାଡ୍ୱେଲ୍ ସ୍ପିକ୍‌ସ ଟୁ ହର୍ ସନ୍'(Mrs. Cardwell Speaks to her son) । ଏହାପରେ ୧୯୫୩ରେ ପ୍ରକାଶିତ ହୁଏ ତାଙ୍କର ବିଶ୍ୱ ପ୍ରସିଦ୍ଧ ଉପନ୍ୟାସ 'ଦି ହାଇଭ୍' (The Hive) । ଏହାକୁ ଏ ଶତାବ୍ଦୀର ସବୁଠୁ ଉଲ୍ଲେଖନୀୟ ଉପନ୍ୟାସ ବୋଲି ଅନେକ ସମାଲୋଚକ ମତ ଦିଅନ୍ତି । ୧୯୬୧ ମସିହାରେ ଅନ୍ୟତମ ଉପନ୍ୟାସ 'ରେଷ୍ଟ ହୋମ୍' (Rest Home) ପ୍ରକାଶ ପାଏ ଏବଂ ୧୯୬୭ରେ ପ୍ରକାଶିତ ହୁଏ ତାଙ୍କର ପ୍ରଥମ ନାଟକ 'ମାରିଆ ସାବିନା' (Maria Sabina) । ସାଧାରଣ ସ୍ପେନୀୟ କଥା, ଭାଷା, ଅପଭାଷା (Slang) ଶବ୍ଦଗୁଡ଼ିକର ଏକ ଗୁପ୍ତ ଅଭିଧାନ (Dictionary of Secrets) ପ୍ରକାଶ ପାଏ ୧୯୬୮ ମସିହାରେ ଓ ଦ୍ୱିତୀୟ ଖଣ୍ଡ ୧୯୭୧ ମସିହାରେ । ସେ ଥିଲେ ପ୍ରଭାବଶାଳୀ ସ୍ପେନୀୟ ସାହିତ୍ୟ ପତ୍ରିକା 'ପାପିଲେସ୍ ଡିସନ୍ ଆର୍ମାଡାନ୍‌ସ' (Papeles de Son Armadans)ର ପ୍ରତିଷ୍ଠାତା ସମ୍ପାଦକ । ସାହିତ୍ୟରେ ଉଲ୍ଲେଖନୀୟ ଅବଦାନ ପାଇଁ ତାଙ୍କୁ ସ୍ପେନୀୟ ଜାତୀୟ ପୁରସ୍କାର ମିଳିଥିଲା ଓ ପରିଶେଷରେ ୧୯୮୯ ମସିହାରେ ନୋବେଲ୍ ପୁରସ୍କାରରେ ତାଙ୍କୁ ସମ୍ମାନିତ କରାଯାଇଥିଲା । ଏଯାବତ୍ ୧୧ଟି ଉପନ୍ୟାସ, ଗୋଟିଏ କବିତା ସଂକଳନ, ୬ଟି ଉପନ୍ୟାସିକା, ୯ଟି ଗଳ୍ପ ସଂକଳନ, ୬ଟି ଭ୍ରମଣ ବୃତ୍ତାନ୍ତ, ୨ଟି ନାଟକ, ବହୁ ପ୍ରବନ୍ଧ ଓ ଗୁପ୍ତଶବ୍ଦ ଅଭିଧାନର ପ୍ରଣେତା ସେଲା କହନ୍ତି, 'ମୁଁ ନିର୍ଜନତା ଭିତରୁ ଲେଖେ, ମୁଁ ନିର୍ଜନତା ଭିତରୁ ହିଁ କଥା କହେ ।' ତାଙ୍କ ଲିଖିତ ଗଳ୍ପର ଓଡ଼ିଆ ଅନୁବାଦ : ଗଣ୍ଡମୂର୍ଖ ।

# ଗଣ୍ଡମୂର୍ଖ

ବୋକା ଲୋକଟିର ନାଁ ଥିଲା ବ୍ଲାସ୍; ବ୍ଲାସ୍ ହେରେରୋ ମାର୍ଟିନେଜ୍ । ଗାଁର ପୂର୍ବତନ ମୂର୍ଖ ପେରେଜି ଲୋଣ୍ଡୋର ମୃତ୍ୟୁ ପୂର୍ବରୁ ବ୍ଲାସ୍ ଥିଲା ପିଜୁଳି ଚୋରି କରୁଥିବା ବୋକା ପିଲାଟିଏ ମାତ୍ର । ସମସ୍ତଙ୍କ ରାଗ ସହିବ ଏବଂ ବିଧାମାଡ଼ ଖାଇବ, ଏଇଥିପାଇଁ ଯେମିତି ସେ ବଂଚିଥିଲା । ପିଲାଟି ଥିଲା ଶେତା, ଲମ୍ବା ଗୋଡ଼ିଆ, ନିଃସଙ୍ଗ ଏବଂ ଅଧୈର୍ଯ୍ୟ । ଛୋଟ ଗାଁଟିରେ ଜଣକରୁ ଅଧିକ ମୂର୍ଖଙ୍କ ପାଇଁ ସ୍ଥାନ ନଥିଲା, ବ୍ଲାସ୍ ହେରେରୋ ମାର୍ଟିନେଜ୍ ଏହା ଜାଣିଥିଲା । ପରମ୍ପରା ପାଇଁ ଯଥେଷ୍ଟ ସମ୍ମାନ ଥିବାରୁ ସେ ପାଇନ୍ ଜଙ୍ଗଲ ଓ ଘାସ ପଡ଼ିଆରେ ବୁଲି ଯାହା କିଛି ଚୋରୀ କରି ପାରୁଥିଲା, ସେଥିରେ ସନ୍ତୁଷ୍ଟ ରହୁଥିଲା ଏବଂ ଗାଁର ବେଶୀ ନିକଟକୁ ଜମା ଆସୁ ନଥିଲା । ବୁଢ଼ା ପେରେଜି ଲୋଣ୍ଡୋ କେବେ ଗୋଟିଏ କାଠ ବାକ୍ସରେ ବୁହା ହୋଇଯିବ, ଏଥିପାଇଁ ସେ ଧୈର୍ଯ୍ୟର ସହିତ ଅପେକ୍ଷା କରୁଥିଲା । ସହରରେ ଗୋଟିଏ କଥା ଥିଲା – ପରମ୍ପରା ରାଜାଙ୍କଠାରୁ ବି ବଡ଼ ଏବଂ ଆଇନ୍‌ଠାରୁ କିଛି କମ୍ ନୁହେଁ । ଭଲଭାବେ ତାଲିମ୍‌ପ୍ରାପ୍ତ କୁକୁର ନିର୍ଭୁଲ ଭାବରେ ବାସ୍ନା ବାରିବା ପରି ବ୍ଲାସ୍ ହେରେରୋ ମାର୍ଟିନେଜ୍ ଜୀବନକୁ ସଠିକ୍ ଭାବରେ ବୁଝିଥିଲା । ତା'ର ସମୟ ଆସି ନାହିଁ ବୋଲି ସେ ଜାଣିଥିଲା ଏବଂ ପ୍ରତୀକ୍ଷାକୁ ସାହସର ସହିତ ଆଦରି ନେଇଥିଲା । ସତ ବୋଲି ଜଣା ପଡୁ ନଥିଲେ ମଧ୍ୟ ଏ ଜୀବନରେ କିଛି କରିବାର ପାଇଁ ସମୟ ଅଛି ।

ବ୍ଲାସ୍ ହେରେରୋ ମାର୍ଟିନେଜ୍‌ର ମୁଣ୍ଡଟି ଥିଲା ଛୋଟ, ଚନ୍ଦା ଓ ଗୋଜିଆ, ଛାତି ଅଣଓସାରିଆ, ଗୋଡ଼ ଲମ୍ବା ଓ ସରୁ । ଆଖି ଦୁଇଟି ଥିଲା ଟେରା । ତା' ପାଟିରୁ ସବୁବେଳେ ଲାଳ ବହୁଥିଲା । ପିଲାଟି ନିହାତି ବୋକା ଥିଲା ଏବଂ ବୋକାମିର ସବୁ ଟିକିନିଖି ଆବଶ୍ୟକତାକୁ ପୂରଣ କରୁଥିଲା । ଭଲଭାବରେ ବିଚାର କଲେ ବ୍ଲାସ୍ ବୋକାର ଭୂମିକାରେ ନିଖୁଣ ଭାବେ ଅଭିନୟ କରୁଥିଲା ବୋଲି କହିବାକୁ ପଡ଼ିବ । ସେ ନିଃସନ୍ଦେହରେ ଗୋଟିଏ ବୋକା ଥିଲା ଏବଂ ତା'ର ବୋକାମିକୁ ପ୍ରମାଣ କରିବା ପାଇଁ ଡାକ୍ତରୀ ପରୀକ୍ଷାର ଆବଶ୍ୟକତା ନ ଥିଲା ।

ସେ ଥିଲା ଭଦ୍ର ଓ ଉତ୍ତମ ସ୍ୱଭାବର ଏବଂ ତାକୁ କେହି ଟେକା ମାରିଲେ ବି ସେ ରୋଗିଣା ବାଛୁରୀ ପରି ହସୁଥିଲା । ଗାଁ ଲୋକମାନଙ୍କର ହୃଦୟ ବୋଲି ତ କିଛି ନଥିଲା;

ତେଣୁ ସେମାନେ ତାକୁ ଟେକା ମାରିବା ଏକ ସାଧାରଣ କଥା ଥିଲା । ଗୋଜିଆ ମୁହାଁ ବ୍ଲାସ୍ ହେରେରୋ ମାର୍ଟିନେଜ୍ ତା' କାନକୁ ହଲାଇ ହସହସ ମୁହଁରେ ତା'ର ସର୍ବଶେଷ କ୍ଷତର ଚିକିତ୍ସା ଏପରି ଭାବରେ କରୁଥିଲା, ସତେ ଯେପରି ସେ ତା'ର ଯନ୍ତ୍ରଣାଦାତାମାନଙ୍କୁ ପ୍ରଥମ ଟେକା ଦ୍ୱାରା ସୃଷ୍ଟି ହୋଇଥିବା କ୍ଷତ ଉପରକୁ ଦ୍ୱିତୀୟ ଟେକା ନ ପକାଇବା ପାଇଁ କହୁଥିଲା ।

ପେରେଜି ଲୋଣ୍ଡୋ ବଂଚିଥିବା ସମୟରେ ରବିବାର ଥିଲା, ଏକମାତ୍ର ଦିନ, ଯେଉଁଦିନ ଗାଁ ରାସ୍ତାରେ ଚାଲିବା ପାଇଁ ତା'ର ଅଧିକାର ଅଛି ବୋଲି ବ୍ଲାସ୍ ମନେ କରୁଥିଲା । ଚର୍ଚ୍ଚରେ ପ୍ରାର୍ଥନା ପରେ ଆମ ଗାଁର ବୋକା ଲୁଇସ୍‌ର ଦୋକାନ ଆଗରେ ବସୁଥିଲା ଏବଂ ଗ୍ରାହକମାନେ ସେମାନଙ୍କର ପାନୀୟ ସାରି ରାତ୍ରି ଭୋଜନ ପାଇଁ ଘରକୁ ଯିବା ପର୍ଯ୍ୟନ୍ତ ଦୁଇ ତିନିଘଣ୍ଟା ଅପେକ୍ଷା କରୁଥିଲା । ଲୁଇସ୍‌ର ଚା' ଦୋକାନ ଯେତେବେଳେ ଖାଲି ହୋଇ ଯାଉଥିଲା, ବ୍ଲାସ୍ ଭାରି ଖୁସିରେ ଟେବୁଲ୍ ତଳକୁ ଯାଇ ଖଣ୍ଡିଆ ସିଗାରେଟ୍‌ଗୁଡ଼ିକୁ ଉଠାଉଥିଲା । ବେଳେବେଳେ ଦିନଗୁଡ଼ାକ ଭାରି ଭଲରେ ଯାଉଥିଲା; ଯେମିତି ଦୁଇବର୍ଷ ତଳେ ଗୋଟିଏ ପାର୍ଟିରୁ ବ୍ଲାସ୍ ପ୍ରାୟ ୭୦୦ ଖଣ୍ଡିଆ ସିଗାରେଟ୍ ସଂଗ୍ରହ କରି ତା'ର ଟିଣ ଡବାରେ ଭର୍ତ୍ତି କରି ପାରିଥିଲା । ଗୋଟିଏ ଶାମୁକାର ଚିତ୍ର ଓ କିଛି ଇଂରାଜୀ ଶବ୍ଦ ଲେଖାଥିବା ଏକଚକିଆ ସୁନ୍ଦର ହଳଦିଆ ଟିଣ ଡବାଟି ବ୍ଲାସ୍ ମାର୍ଟିନେଜ୍ ପାଇଁ ଗର୍ବ ଓ ଆନନ୍ଦର ପଦାର୍ଥ ଥିଲା ।

ନିଜ କାମ ସାରିବା ପରେ ବ୍ଲାସ୍ ଅଣନିଃଶ୍ୱାସୀ ହୋଇ ପେରେଜି ଲୋଣ୍ଡୋକୁ ଦେଖିବା ପାଇଁ ଦୌଡ଼ିଲା । ସେତେବେଳକୁ ପେରେଜି ଲୋଣ୍ଡୋ ବୁଢ଼ା ହୋଇ ଯାଇଥାଏ ଏବଂ ଚଲାବୁଲା କରି ପାରୁ ନଥାଏ । ବ୍ଲାସ୍ କହିଲା, 'ପେରେଜି ଲୋଣ୍ଡୋ, ଦେଖ ମୁଁ କ'ଣ ଆଣିଛି, ତମେ ନିଶ୍ଚୟ ଏହାକୁ ଦେଖି ଖୁସି ହେବ ।' ପେରେଜି ଲୋଣ୍ଡୋ ସମ୍ମତି ଜଣାଇଲା । ନିଜର କୃପଣିଆ ହସଟି ହସି ଟିଣରେ ହାତ ପୂରାଇ ସେ ଖଣ୍ଡିଆ ସିଗାରେଟ୍‌ଗୁଡ଼ିକୁ ଘାଣ୍ଟିଲା ଏବଂ ଅଧଡ଼ଜନ ଖଣ୍ଡିଆ ସିଗାରେଟ୍‌କୁ ହାତମୁଠାକୁ ଆଣି ବ୍ଲାସ୍‌କୁ ଦେଲା ।

ବ୍ଲାସ୍ ତା' ଭାଗ ଖଣ୍ଡିଆ ସିଗାରେଟ୍‌ରୁ ତମାଖୁ ବାହାର କଲା ଏବଂ ସେଥିରୁ ସିଗାରେଟ୍ ତିଆରି କଲା । ବେଳେବେଳେ ସିଗାରେଟ୍‌ଟି ବେଶୀ ମୋଟା ହୋଇ ଯାଉଥିଲା ତ ଆଉ ବେଳେବେଳେ ଏତେ ସରୁ ହୋଇ ଯାଉଥିଲା ଯେ ତାକୁ ଓଠରେ ଲଗାଇ ଟାଣିବା ଅସମ୍ଭବ ହୋଇ ପଡୁଥିଲା । ପେରେଜି ଲୋଣ୍ଡୋ ଗାଁର ସବୁ ଖଣ୍ଡିଆ ସିଗାରେଟ୍‌ର ନ୍ୟାୟସଙ୍ଗତ ମାଲିକ ହୋଇପଡୁଥିବାରୁ ବ୍ଲାସ୍ ଲୁଇସ୍‌ର ଚା' ଦୋକାନରୁ ଯାହା ଖଣ୍ଡିଆ ସିଗାରେଟ୍ ପାଉଥିଲା ସେସବୁ ତାକୁ ଦେଉଥିଲା । ବ୍ଲାସ୍ ଜାଣିଥିଲା ଯେ ଯେତେବେଳେ ପେରେଜି ଲୋଣ୍ଡୋର ସ୍ଥାନ ପୂରଣ କରିବ, ତା' ଇଚ୍ଛା ଅନୁସାରେ ଖଣ୍ଡିଆ ସିଗାରେଟ୍‌କୁ ବ୍ୟବହାର କରିପାରିବ; ତାକୁ ଠକିବା ପାଇଁ କାହାରିକୁ ସେ ସୁଯୋଗ ଦେବ ନାହିଁ ।

ବସ୍ତୁତଃ ବ୍ଲାସ୍ ଥିଲା ରକ୍ଷଣଶୀଳ ଓ ପରମ୍ପରା ପ୍ରତି ତା'ର ସମ୍ମାନ ଥିଲା ପ୍ରଗାଢ଼। ପେରେଜି ଲୋଣ୍ଡୋ ସରକାରୀ ଭାବରେ ଗାଁ ବୋକାର ସ୍ଥାନ ଅଳଙ୍କୃତ କରୁଥିଲା ବୋଲି ତାକୁ ଜଣା ଥିଲା।

ତଥାପି ଯେଉଁଦିନ ପେରେଜି ଲୋଣ୍ଡୋର ମୃତ୍ୟୁ ହେଲା, ବ୍ଲାସର ହୃଦୟ ଏକ ସ୍ୱତଃସ୍ଫୂର୍ତ୍ତ ଆନନ୍ଦରେ ପୂରିଗଲା ଏବଂ ପଡ଼ିଆରେ ଗୋଟିଏ ମେଣ୍ଢା ପରି ସେ ଡେଇଁବାକୁ ଲାଗିଲା। ପରେ ଅବଶ୍ୟ ସେ ନିଜ ବ୍ୟବହାର ପାଇଁ ଅନୁତାପ କଲା। ପ୍ରାୟଶ୍ଚିତ୍ତ କରିବା ପାଇଁ ସେ ତା'ର ସମାଧି ନିକଟକୁ ଗଲା। ଏଠାରେ ଉଲ୍ଲେଖ ଥାଉ ଯେ ପେରେଜି ଲୋଣ୍ଡୋର ସମାଧି ନିକଟକୁ ଆଉ କେହି ହେଲେ ଶୋକ ଜଣାଇବାକୁ ଯାଇ ନଥିଲେ। କିଛି ସପ୍ତାହ ପର୍ଯ୍ୟନ୍ତ ବ୍ଲାସ୍ ଖଣ୍ଡିଆ ସିଗାରେଟ୍‌କୁ ଧରି ସମାଧି ସ୍ଥଳକୁ ଆସୁଥିଲା ଏବଂ ନିଜ ପାଇଁ ଅଧଡଜନ ଖଣ୍ଡିଆ ସିଗାରେଟ୍ ରଖି ବାକି ସବୁକୁ ସେ ତା'ର ଗୁରୁଙ୍କ ସମାଧି ସ୍ଥଳରେ ସନ୍ତର୍ପଣରେ ପୋତି ଦେଉଥିଲା। କ୍ରମେ ସେ ଏହା କରିବା ବନ୍ଦ କଲା ଏବଂ ନିଜ ପାଇଁ ଯେତିକି ଆବଶ୍ୟକ ସେତିକି ଖଣ୍ଡିଆ ସିଗାରେଟ୍ ହିଁ ସଂଗ୍ରହ କଲା। ସେ ପେରେଜି ଲୋଣ୍ଡୋକୁ ଭୁଲିଗଲା ଏବଂ କିଛି ବିଚିତ୍ର କଥା ଲକ୍ଷ୍ୟ କଲା। ନଇଁପଡ଼ି ଖଣ୍ଡିଆ ସିଗାରେଟ୍ ଗୋଟାଇବା ଏବଂ ଗୋଟାଇଥିବା ସିଗାରେଟ୍ ପ୍ରକୃତରେ ତା'ର ଥିଲା କି ନାହିଁ ଜାଣିବାକୁ ଚେଷ୍ଟା କରିବା ତା' ପାଇଁ ଏକ ଅପରିଚିତ ଏବଂ ଚାଞ୍ଚଲ୍ୟକର ଅନୁଭୂତି ଥିଲା।

■■■

*ଅନୁବାଦ* **ଅରବିନ୍ଦ ବେହେରା**

# ୟୁକିଓ ମିସିମା

ୟୁକିଓ ମିସିମା (୧୯୨୫-୧୯୭୦) ଜାପାନୀ ସାହିତ୍ୟର ଜଣେ ପ୍ରଖ୍ୟାତ ସ୍ରଷ୍ଟା । ଔପନ୍ୟାସିକ, କଥାକାର, ନାଟ୍ୟକାର ଓ ପ୍ରାବନ୍ଧିକ ଭାବେ ସେ ସାରା ବିଶ୍ୱର ଦୃଷ୍ଟି ଆକର୍ଷଣ କରିଛନ୍ତି । ଶିକ୍ଷାଲାଭ ପାଇଁ ଟୋକିଓ ବିଶ୍ୱବିଦ୍ୟାଳୟରେ ପ୍ରବେଶ କରିବା ବର୍ଷ (୧୯୪୪)ରେ ହିଁ ତାଙ୍କର ପ୍ରଥମ ଉପନ୍ୟାସ 'ଦି ଫରେଷ୍ଟ ଇନ୍ ଫୁଲ୍ ବ୍ଲୁମ୍' ପ୍ରକାଶିତ ହୁଏ । ବହିଟି ପ୍ରକାଶ ପାଇବା ପରେ ସେ ନୋବେଲ୍ ପୁରସ୍କାର ବିଜେତା ୟୁସୁନରୀ କାୱାବାତାଙ୍କ ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରନ୍ତି ଓ ତାଙ୍କ ମାଧ୍ୟମରେ ବିଶିଷ୍ଟ ଜାପାନୀ ଲେଖକମାନଙ୍କ ସହ ତା'ଙ୍କର ପରିଚୟ ହୁଏ । କିଛିକାଳ ପାଇଁ ଚାକିରି କରିବା ପରେ ଲେଖାଲେଖିରେ ଅସୁବିଧା ସୃଷ୍ଟି ହେବାରୁ ୧୯୪୮ରେ ସେ ଚାକିରିରୁ ବିଦାୟ ନିଅନ୍ତି । ପ୍ରାଚୀନ ଜାପାନୀ ସାହିତ୍ୟ ପ୍ରତି ତାଙ୍କର ଅହେତୁକ ମୋହ ତାଙ୍କୁ ଅନ୍ୟମାନଙ୍କଠାରୁ ଅଲଗା କରି ଚିହ୍ନେଇ ଦିଏ । ୧୯୪୮ ମସିହାରେ ପ୍ରକାଶିତ ଆତ୍ମଜୀବନୀମୂଳକ ଉପନ୍ୟାସ 'କନ୍‌ଫେସନ୍ ଅଫ୍ ଏ ମାସ୍କ୍' ତାଙ୍କୁ ଏକ ପ୍ରତିଷ୍ଠିତ ଲେଖକର ସ୍ଥାନ ଦିଏ । ୧୯୫୦ରେ ପ୍ରକାଶିତ ଉପନ୍ୟାସ 'ଥାର୍ଷ୍ଟ ଫର୍ ଲଭ୍' ଜାପାନୀ ପରମ୍ପରା ଉପରେ ଆଧାରିତ ତାଙ୍କର ଏକ ବିଶେଷ ଉପନ୍ୟାସ । ମାତ୍ର ସମାଲୋଚକମାନଙ୍କ ମତରେ 'କିଙ୍କାର୍କୁଜୀ' (୧୯୫୬) ତାଙ୍କର ସର୍ବଶ୍ରେଷ୍ଠ ଉପନ୍ୟାସ । ଜଣେ ବୁଦ୍ଧିଭ୍ରଷ୍ଟ ସାଧୁଙ୍କ ଦ୍ୱାରା ଘଟଣାକ୍ରମେ ଗୋଟିଏ ମନ୍ଦିରପୋଡ଼ି ଏ ଉପନ୍ୟାସର ବିଷୟବସ୍ତୁ । ଉପନ୍ୟାସ ବ୍ୟତୀତ ସେ ବହୁ ଗଳ୍ପ, ନାଟକ, ସମାଲୋଚନା ଲେଖିଛନ୍ତି । 'ଡିକେ ଅଫ୍ ଦି ଏଞ୍ଜେଲ୍' ପୁସ୍ତକର ଶେଷଭାଗ ପ୍ରକାଶକଙ୍କୁ ଦେଇ

ସାରିବା ପରେ ସେ ନିଜ ସମର୍ଥକମାନଙ୍କ ସହ ଜାପାନ 'ଆତ୍ମରକ୍ଷା ବାହିନୀ' ସଦର ଅଫିସ୍‌କୁ ଠେଲିପେଲି ପଶି ସୈନ୍ୟମାନଙ୍କୁ ଉଦ୍‌ବୋଧନ ଦେଇ ଆପାତତଃ ଅସଫଳ ହେବା ପରେ, ସେହିଠାରେ ରାଜକୀୟ ଠାଣିରେ ଖଣ୍ଡା ଦ୍ୱାରା ଆତ୍ମହତ୍ୟା (ହାରା କିରି) କରିଥିଲେ । ଜାପାନୀମାନଙ୍କୁ ନିଜର ମହାନ୍ ଅତୀତ, ସଂସ୍କୃତି ଓ ବୀରତ୍ୱ ସମ୍ପର୍କରେ ଚିନ୍ତା କରିବାର ସୁଯୋଗ ଦେବା ଏହି ଆତ୍ମହତ୍ୟାର ଉଦ୍ଦେଶ୍ୟ ଥିଲା ବୋଲି ଅନେକେ ବିଶ୍ୱାସ କରନ୍ତି । ତାଙ୍କ ଲିଖିତ ଗଳ୍ପ 'ସ୍ୱେଡ୍‌ଲିଂ କ୍ଲଥେସ୍'ର ଓଡ଼ିଆ ଅନୁବାଦ – 'ଏନ୍ତୁଡ଼ି କନା ।'

# ଏଣ୍ଟୁଡ଼ି କନା

ସବୁବେଳେ ବ୍ୟସ୍ତ ରହୁଥିଲେ ତୋଷି କାର ସ୍ୱାମୀ । ତୋଷି କାକୁ ଏକା ଏକା ଟ୍ୟାକ୍‌ସିରେ ଘରକୁ ଫେରିବାକୁ ଛାଡ଼ିଦେଇ ଆଜି ରାତିରେ ବି ତାଙ୍କୁ କାହା ସହିତ ଭେଟିବାକୁ ଯିବାକୁ ପଡ଼ିଲା । ଜଣେ ଆକର୍ଷଣୀୟ ଅଭିନେତାଙ୍କୁ ବିବାହ କରିଥିବା ଭଦ୍ରମହିଳା ଏହାଠାରୁ ଅଧିକ ଆଉ କ'ଣ ବା ଆଶା କରିଥାନ୍ତେ ? ତା' ସହିତ ସେ ଯେ ସେଇ ସନ୍ଧ୍ୟାଟି ବିତାଇବେ – ଏହା ଭାବିବା ଥିଲା ତା'ର ବୋକାମୀ । ତଥାପି ବି ତା ସ୍ୱାମୀଙ୍କର ଭାବିବା ଉଚିତ୍ ଥିଲା ଯେ ସେ ଘରକୁ ଫେରି ଯିବାକୁ ଚାହୁଁ ନଥିଲା । ଘରର ପାଶ୍ଚାତ୍ୟ ଢ଼ାଞ୍ଚାରେ ତିଆରି ଆସବାବ ପତ୍ର ଏବଂ ଏବେବି ଚଟାଣରେ ଲାଗି ରହିଥିବା ରକ୍ତଦାଗ ତାକୁ ଆତଙ୍କିତ କରୁଥିଲା ।

ବାଳିକାବସ୍ଥାରୁ ସ୍ୱଭାବତଃ ତୋଷିକୋ ଥିଲା ତୀବ୍ର ଅନୁଭୂତି ଶକ୍ତିସମ୍ପନ୍ନା । ସବୁବେଳେ ଚିନ୍ତିତ ରହୁଥିବାରୁ ତା'ର ସ୍ୱାସ୍ଥ୍ୟର ଉନ୍ନତି ହେଉ ନଥିଲା । ତାକୁ ଦେଖିଲେ ହାଡ଼ ମାଂସର ମଣିଷ ବୋଲି କେହି କହିବ ନାହିଁ, ବରଂ ମନେହୁଏ ସତେ ଯେପରି ସେ କୌଣସି ଏକ ସ୍ୱଚ୍ଛଛବି ! ତାକୁ ପ୍ରଥମଥର ପାଇଁ ଦେଖୁଥିବା ଲୋକଟି ମଧ ସହଜରେ ଜାଣି ପାରିବ ଯେ ସେ ଦୁର୍ବଳ ।

ସେଇ ସନ୍ଧ୍ୟାରେ କିଛି ସମୟ ପୂର୍ବରୁ ଯେତେବେଳେ ସେ ତା' ସ୍ୱାମୀଙ୍କୁ କ୍ଲବ୍‌ରେ ଭେଟିଥିଲା, ତା'ର ସ୍ୱାମୀଙ୍କର ତାଙ୍କ ବନ୍ଧୁମାନଙ୍କୁ ସେଇ ଘଟଣା ସମ୍ପର୍କରେ ଅତି ବେପରୁଆ ଢଙ୍ଗରେ ବର୍ଣ୍ଣନା କରୁଥିବାଟା ତାକୁ ବଡ଼ ଆଶ୍ଚର୍ଯ୍ୟ ଲାଗିଥିଲା । ତାଙ୍କୁ ଆମେରିକୀୟ ବସ୍ତ୍ର ପିନ୍ଧି ସିଗାରେଟ୍ ଟାଣି ଅନର୍ଗଳ ଗପି ଯାଉଥିବାର ଦେଖି ତୋଷିକୋର ମନେ ହୋଇଥିଲା ସତେ ଯେପରି ସେ ତା'ର ସ୍ୱାମୀ ନୁହଁନ୍ତି, ଜଣେ କେହି ଅପରିଚିତ ।

ଡ୍ୟାନ୍‌ସ ବ୍ୟାଣ୍ଡଠାରୁ ନିଜ କଥାକୁ ଅଧିକ ଆକର୍ଷଣୀୟ କରିବା ପାଇଁ ଅନେକ ହସ୍ତଭଙ୍ଗୀ ପ୍ରଦର୍ଶନ କରି ସେ କହୁଥିଲେ, 'ଚମତ୍କାର କାହାଣୀଟାଏ', 'କର୍ମଯୋଗାଣ ସଂସ୍ଥା ଦ୍ୱାରା ଆମ ଛୁଆକୁ ଧରିବା ପାଇଁ ପଠାଯାଇଥିବା ପରିଚାରିକା ଜଣକ ଆସି ପହଞ୍ଚିଲାକ୍ଷଣି ଗୋଟିଏ କଥା ଆଶ୍ଚର୍ଯ୍ୟ କରିଥିଲା । ସେଇଟା ହେଉଛି ତା'ର ବିରାଟ ପେଟ । ଏତେବଡ଼ ଯେ ମନେ ହେଉଥିଲା, ସେ ଗୋଟିଏ ତକିଆ ତା ପେଟ ତଳେ ଲୁଚାଇ ରଖିଛି । ତେଣୁ ସେ ଯେତେବେଳେ ଆମେ ସମସ୍ତେ ଯାହା ଖାଉ, ତାହାଠାରୁ ବି ଅଧିକ ଖାଇଲା ମୋତେ ଆଦୌ ଆଶ୍ଚର୍ଯ୍ୟ ଲାଗିଲା ନାହିଁ । ସେ ପୂରା ଭାତ

ହାଣ୍ଡିଟାକୁ ସଫା କରି ଦେଇଥିଲା । ତା'ର ବିରାଟ ପେଟ ଓ ଭୋକର କାରଣ ସେ ପାକସ୍ଥଳୀର ସଂପ୍ରସାରଣ ବୋଲି କହିଥିଲା । ହେଲେ ପହରିଦିନ ଆମେ ଛୁଆର କୋଠରୀ ଆଡୁ ଯେମିତି କେହି ଯନ୍ତ୍ରଣାରେ ଚିତ୍କାର କରୁଥିବାର ଶୁଣିଲୁ । ଆମେ ଯାଇ ଦେଖିଲୁ ଯେ ସେ ତା' ପେଟକୁ ଦୁଇ ହାତରେ ଖୁବ୍ ଜୋର୍‌ରେ ଚିପିଧରି ମେଜିଆ ଉପରେ ବସି ଗୋରୁଭଳି ରଡ଼ି ଛାଡୁଛି । ଆଉ ଆମ ଛୁଆଟା ଡରିଯାଇ ଖଟ ଉପରେ ପଡ଼ି ବଡ଼ ପାଟିରେ କାନ୍ଦୁଛି । ଦେଖିବା ଭଳି ଦୃଶ୍ୟ ।

'ତାହାହେଲେ କଥାଟା ଶେଷରେ ଜଣାପଡ଼ିଗଲା, ନୁହେଁ ?' କହିଥିଲେ ତୋଷିକୋ ସ୍ୱାମୀଙ୍କର ଜଣେ ଅଭିନେତା ବନ୍ଧୁ ।

'ହଁ, ମୋ ଜୀବନରେ ମୁଁ ଏମିତି କେବେ ଧକ୍କା ଖାଇ ନଥିଲି । ମୁଁ ଭାବିଥିଲି ତା'ର ପ୍ରକୃତରେ କିଛି ପେଟ ବେମାରି ଅଛି ବୋଲି । ଆଉ ସମୟ ନଷ୍ଟ ନ କରି ମୁଁ ଘରେ ବିଛା ହୋଇଥିବା ଦାମୀ ଗାଲିଚାଟାକୁ କାଢ଼ି ଦେଲି, ଆଉ ଗୋଟିଏ କମ୍ବଳ ତା' ପାଇଁ ବିଛାଇ ଦେଲି । ସେ ଆହତ ଘୁଷୁରି ଭଳି ଚିତ୍କାର କରୁଥାଏ । ଡାକ୍ତର ଆସିଲାବେଳକୁ ତା'ର ପିଲା ଜନ୍ମ ହୋଇ ସାରିଥାଏ ଆଉ ଆମର ବସିବା ଘର ପୂରା ଇତସ୍ତତଃ ।'

ତାଙ୍କର ଆଉ ଜଣେ ବନ୍ଧୁ କହିଲେ, 'ତା'ତ ହୋଇଥିବ ନିଶ୍ଚୟ ।' ସମସ୍ତେ ଜୋର୍‌ରେ ହସି ଉଠିଥିଲେ ।

ଏଭଳି ଏକ ଅସ୍ୱାଭାବିକ ଘଟଣାକୁ ତୋଷିକୋର ସ୍ୱାମୀ ନିହାତି ସାଧାରଣ ମଜାଳିଆ ଘଟଣାଟିଏ ଭଳି ବର୍ଣ୍ଣନା କରୁଥିବାର ଶୁଣି ସେ ସମ୍ପୂର୍ଣ୍ଣଭାବେ ଚକିତ ହୋଇ ଯାଇଥିଲା । ସେ ମୁହୂର୍ତ୍ତକ ପାଇଁ ଆଖି ବଂଦ କରି ଦେଇଥିଲା ଆଉ ଆଖି ବଂଦ କରୁକରୁ ତାକୁ ଦିଶି ଯାଇଥିଲା ସେଇ ଛୁଆଟା : ମେଜିଆ ଉପରେ ରକ୍ତ ଦାଗ ଲଗା ଖବର-କାଗଜରେ ଗୁଡ଼ା ହୋଇଥିବା ତା'ର କ୍ଷୀଣ ଶରୀରଟା ।

ତୋଷିକୋ ଜାଣିଥିଲା ଯେ ଡାକ୍ତର ଜଣକ ଘୃଣାର ସହିତ ନିଜର କର୍ତ୍ତବ୍ୟ କରିଥିଲେ । ଯେଉଁ ମା' ଏଭଳି ବିଚିତ୍ର ପରିସ୍ଥିତିରେ ଗୋଟିଏ ଜାରଜ ସନ୍ତାନକୁ ଜନ୍ମ ଦେଇଛି, ତା' ପ୍ରତି ତାଙ୍କର ଅବଜ୍ଞା ଜାହିର୍ କରିବାକୁ ସେ ପଛାଇ ନଥିଲେ । ନିଜର ସହକାରୀକୁ ଛୁଆଟାକୁ ବ୍ୟାଣ୍ଡେଜ୍ କନା ବଦଳରେ କିଛି ଖବର କାଗଜରେ ଗୁଡ଼ାଇ ଦେବା ପାଇଁ କହିଥିଲେ । ତାଙ୍କର ଏ ପ୍ରକାର ଆଚରଣ ତୋଷିକୋକୁ ଅପମାନିତ କରୁଥିଲା । ନିଜର ବିରକ୍ତିକୁ ଚାପିରଖି ସେ ଥାକରୁ ଖଣ୍ଡେ ନୂଆ ମଖମଲ୍ କନା ବାହାର କରି ଛୁଆଟିକୁ ସେଥିରେ ଗୁଡ଼ାଇ ଆଦର ର ଗୋଟିଏ ଆରାମ ଚୌକି ଉପରେ ଶୁଆଇ ଦେଇଥିଲା ।

ଘରୁ ତା' ସ୍ୱାମୀ ବାହାରିଯିବା ପରେ ତୋଷିକୋ ଏସବୁ କରିଥିଲା । ସେ ତାଙ୍କୁ ଏ ବିଷୟରେ କିଛି ବି କହି ନଥିଲା । କାଳେ ସେ ତାକୁ ନିହାତି ଦୁର୍ବଳମନା ଭାବିବେ ବୋଲି । ହେଲେ ସେଇ ଦୃଶ୍ୟଟିକୁ ସେ ଆଦୌ ଭୁଲି ପାରି ନଥିଲା । ଜାଜ୍ ସଙ୍ଗୀତର କୋଳାହଳ, ତା' ସ୍ୱାମୀଙ୍କର ତାଙ୍କ ବନ୍ଧୁମାନଙ୍କ ସହିତ ଥଟ୍ଟାମଜା, ଏସବୁ ଭିତରେ

ଚୁପ୍‌ଚାପ୍ ବସି ସେ ଭାବୁଥିଲା ସେଇ ବିଷୟରେ । ସେ କେବେହେଲେ ଭୁଲି ପାରିବନି କଂସେଇ ଦୋକାନରେ ମାଂସ ଖବରକାଗଜରେ ଗୁଡ଼ା ହୋଇ ଥୁଆ ହୋଇଥିବା ଭଳି ମେଜିଆ ଉପରେ ଶିଶୁଟି ରକ୍ତଦାଗ ଲଗା ଖବରକାଗଜରେ ଗୁଡ଼ା ହୋଇ ପଡ଼ିଥିବାର ଦୃଶ୍ୟ । ବିଳାସର ପ୍ରାଚୁର୍ଯ୍ୟ ମଧ୍ୟରେ ବଢ଼ିଥିବା ତୋଷିକୋକୁ ଢାରଙ୍କ ଶିଶୁଟିର ଶୋଚନୀୟ ଅବସ୍ଥା ଦୋହଲାଇ ଦେଇଥିଲା ।

ମୁଁ ହିଁ କେବଳ ତା'ର ଏଇ ଲଜ୍ଜାର ସାକ୍ଷୀ, ସେ ଭାବୁଥିଲା ତା' ମା' ତାକୁ ଖବରକାଗଜରେ ଗୁଡ଼ା ହୋଇଥିବାର ଦେଖିନି, ଆଉ ଛୁଆ ନିଜେ ତ ଜାଣିବାର ପ୍ରଶ୍ନ ଉଠେନା । ମୋତେ ଏ ଭୟଙ୍କର ଦୃଶ୍ୟଟିକୁ ସାଇତି ରଖିବାକୁ ପଡ଼ିବ ନିଜ ସ୍ମୃତିରେ । ଛୁଆଟି ବଡ଼ ହୋଇ ଯେତେବେଳେ ତା'ର ଜନ୍ମ ବେଳର କଥା ଜାଣିବାକୁ ଚାହିଁବ, ତାକୁ ସେକଥା କହିବାକୁ କେହି ନଥିବେ, ମୁଁ ଯେତେବେଳ ପର୍ଯ୍ୟନ୍ତ ନୀରବ ରହିଥିବି । ମୋତେ ଏମିତି କାହିଁକି ଦୋଷୀ ଲାଗୁଛି, ବଡ଼ ଆଶ୍ଚର୍ଯ୍ୟର କଥା ! ମୁଁ ହିଁ ତାକୁ ମେଜିଆରୁ ଉଠାଇ ଭଲ ଭାବରେ ମଖ୍‌ମଲ୍ କପଡ଼ା ଗୁଡ଼ାଇ ଆରାମ ଚୌକିରେ ଶୁଆଇ ପକେଇଥିଲି ।

ସେମାନେ ନାଇଟ୍ କ୍ଲବ୍ ଛାଡ଼ି ବାହାରକୁ ଆସିଲେ, ତା' ସ୍ୱାମୀ ଡାକି ଦେଇଥିବା ଟ୍ୟାକ୍‌ସିରେ ତୋଷିକୋ ବସିଲା ।

'ୟାଙ୍କୁ ଉସିଗୋମେରେ ଛାଡ଼ି ଦେବ' ଡ୍ରାଇଭରକୁ କହି ତା' ସ୍ୱାମୀ ଗାଡ଼ିର କବାଟ ବାହାରୁ ବନ୍ଦ କରିଦେଲେ । ତୋଷିକୋ ଝରକା ଦେଇ ତାଙ୍କ ହସହସ ମୁହଁ ଦେଖୁଥିଲା, ତା'ର ନଜର ପଡ଼ିଲା ତାଙ୍କ ଟାଣୁଆ ଆଉ ପରିଷ୍କାର ଧଳା ଦାନ୍ତ ଉପରେ । ଗଦି ଉପରକୁ ସେ ଧୀରେ ଆଉଜି ପଡ଼ି ଭାବୁଥିଲା ଯେ ତା' ଜୀବନ କେତେ ବେଶୀ ସ୍ୱଚ୍ଛନ୍ଦପୂର୍ଣ୍ଣ ଓ ଯନ୍ତ୍ରଣାରହିତ । ସେ ଯାହା ଭାବୁଥିଲା, ତାକୁ ବ୍ୟକ୍ତି କରିବା ତା' ପକ୍ଷରେ ସମ୍ଭବ ନଥିଲା । ଗାଡ଼ିର ପଛ ଝରକା ଦେଇ ସେ ତା'ର ସ୍ୱାମୀଙ୍କୁ ଶେଷଥର ପାଇଁ ଦେଖି ନେଲା । ସେ ନିଜର ଗାଡ଼ି ଆଡ଼କୁ କ୍ଷିପ୍ର ଗତିରେ ଆଗେଇ ଚାଲିଥିଲେ, ଆଉ ଅତି ଶୀଘ୍ର ତାଙ୍କର ଚକ୍‌ଚକିଆ କୋଟ୍‌ଟି ମିଶି ଯାଇଥିଲା ଭିଡ଼ରେ ଅନ୍ୟ ପାର୍ଶ୍ୱଗାମୀମାନଙ୍କ ମଧ୍ୟରେ ।

ଟ୍ୟାକ୍‌ସୀ ଚାଲିଥାଏ ଆଗକୁ, ଅନେକଗୁଡ଼ିଏ ବାର୍ ଥିବା ରାସ୍ତା ଟପି ଏବଂ ତା'ପରେ ସମ୍ମୁଖ ପାଦଚଲା ରାସ୍ତା ଉପରେ ଲୋକଙ୍କ ଭିଡ଼ ଜମିଥିବା ରଙ୍ଗମଞ୍ଚ ବାଟଦେଇ । ଯଦିଓ ଅଭିନୟ ଅଳ୍ପ ସମୟ ପୂର୍ବରୁ ସରିଥାଏ, ଆଲୁଅ ସବୁ ଲିଭି ଯାଇଥାଏ । ଝାପ୍‌ସା ଆଲୁଅରେ ରଙ୍ଗମଞ୍ଚ ସମ୍ମୁଖରେ ସଜା ଯାଇଥିବା ଚେରି ଫୁଲ ଯେ କାଗଜ ତିଆରି, ତାହା ସ୍ପଷ୍ଟ ଜଣା ପଡୁଥାଏ ।

ତା'ର ଜନ୍ମ ରହସ୍ୟ ନ ଜାଣି ବଡ଼ ହେଲେ ବି ସେଇ ଶିଶୁଟି କେବେହେଲେ ଜଣେ ଦାୟିତ୍ୱବାନ୍ ନାଗରିକ ହୋଇ ପାରିବନି ବୋଲି ତୋଷିକୋ ଚିନ୍ତା କରୁଥିଲା । ତା' ଜୀବନର ସେଇ ମଇଳା ଖବରକାଗଜ ହିଁ ପ୍ରତୀକ ହୋଇ ରହିବ । ମୁଁ ତା' ବିଷୟରେ ଏତେ ବେଶୀ କାହିଁକି ଭାବୁଛି ? ମୁଁ ନିଜ ପିଲାର ଭବିଷ୍ୟତ ନେଇ ଚିନ୍ତିତ

ନୁହେଁ ତ ? ଧରିନିଅ ଆଜିଠାରୁ କୋଡ଼ିଏ ବର୍ଷ ପରେ ଆମ ପୁଅ ସୁନ୍ଦର, ଶିକ୍ଷିତ ଯୁବକଟିଏ ହୋଇ ବାହାରିବ ଆଉ ସେ ଭାଗ୍ୟକ୍ରମେ ଭେଟିବ ଏଇ ପିଲାଟିକୁ ଯାହାକୁ କି ସେତେବେଳେ କୋଡ଼ିଏ ବର୍ଷ ହୋଇଥିବ । ଆଉ ଯଦି ସେ ତା' ପ୍ରତି ହୋଇଥିବା ଅନ୍ୟାୟର ପ୍ରତିଶୋଧ ନିଏ ଆମ ପିଲା ଉପରେ, ତାକୁ ଛୁରା ମାରି ହତ୍ୟା କରେ...

ମେଘ ଭରା ଏପ୍ରିଲ୍ ମାସର ରାତି, ଭରି ରହିଛି ପରିବେଶରେ ଉଷ୍ମତା । ଭବିଷ୍ୟତର କଥା ଭାବି ତୋଷିକୋକୁ କିନ୍ତୁ ଥଣ୍ଡା ଲାଗୁଥିଲା ଆଉ ସେ ନିଜକୁ ଅସହାୟ ମନେ କରୁଥିଲା । ଗାଡ଼ି ପଛରେ ବସି ସେ ଗୋଟାପଣେ ଥରୁଥିଲା ।

ସେ ହଠାତ୍ ସ୍ଥିର କଲା ସମୟ ଆସିଲେ ମୁଁ ମୋ ପୁଅର ସ୍ଥାନ ନେବି, ତା'ର ପ୍ରତିନିଧିତ୍ୱ କରିବି । ଆଜିଠାରୁ କୋଡ଼ିଏ ବର୍ଷ ପରେ ମୋତେ ତେୟାଳିଶ ବର୍ଷ ହୋଇଥିବ । ମୁଁ ଯାଇ ସେ ଯୁବକକୁ ଭେଟିବି, ସବୁକଥା ସିଧାସିଧା କହିଦେବି, ତାକୁ କହିବି ସେ କେମିତି ଖବରକାଗଜରେ ଗୁଡ଼ା ହୋଇ ପଡ଼ିଥିଲା ଆଉ ମୁଁ ତାକୁ କିଭଳି ଭଲ ମଖ୍‌ମଲ୍ କନାରେ ଗୁଡ଼ାଇ ଦେଇଥିଲି ।

ଟ୍ୟାକ୍‌ସିଟି ଗୋଟାଏ ଅନ୍ଧାରୁଆ, ଓସାରିଆ ରାସ୍ତା ଦେଇ ଚାଲିଥାଏ । ରାସ୍ତା ଧାରରେ ରାଜଉଆସର ଗଡ଼ଖାଇ ଓ ତାକୁ ଲାଗି ପ୍ରମୋଦ ଉଦ୍ୟାନ । ଦୂରରେ ତୋଷିକାକୁ ଦିଶିଗଲା ପିନ୍‌ମୁଣ୍ଡ ପରି ମନେ ହେଉଥିବା ଅତ୍ୟୁଚ୍ଚ ପ୍ରାସାଦମାନଙ୍କରେ ଜଳୁଥିବା ଆଲୋକ ।

କୋଡ଼ିଏ ବର୍ଷ ପରେ ସେଇ ହତଭାଗ୍ୟ ଶିଶୁଟି ଅତ୍ୟନ୍ତ ଦୁଃଖପୂର୍ଣ୍ଣ ଜୀବନ କାଟୁଥିବ । ନିଃସଙ୍ଗ ମୂଷାଟିଏ ପରି ଅକଥନୀୟ ଦାରିଦ୍ର୍ୟ ମଧ୍ୟରେ ହା-ହୁତାଶ ଜୀବନ ବଂଚୁଥିବ । ଯାହାର ଜନ୍ମ ଏଭଳିଭାବେ, ତା'ର ଜୀବନ ଭିନ୍ନ ହେବ ବା କେମିତି ? ରାସ୍ତାରେ ଏକା ଏକା ଏଣେ ତେଣେ ବୁଲିବ, ବାପାକୁ ଅଭିଶାପ ଓ ମା'କୁ ଗାଳି ଦେଇ ଦେଇ ।

ଏଥିରେ କୌଣସି ସନ୍ଦେହ ନାହିଁ ଯେ ତୋଷିକାକୁ କିଛିଟା ସନ୍ତୋଷ ମିଳୁଥିଲା ବାରମ୍ବାର ଏମିତି ସବୁ ବିଷାଦପୂର୍ଣ୍ଣ କଥା ଭାବି ଭାବି । ଗାଡ଼ି ହାଞ୍ଜୋମନ ନିକଟରେ ପହଞ୍ଚିଲା ଆଉ ବ୍ରିଟିଶ୍ ଦୂତାବାସର ହତା ଟପିଗଲା । ତୋଷିକୋ ସମ୍ମୁଖରେ ପ୍ରସିଦ୍ଧ ଚେରି ବୃକ୍ଷର ସମ୍ଭାର ସତେ ଯେପରି ବିଛାଡ଼ି ହୋଇଗଲା ଶ୍ୱେତ ପବିତ୍ରତା ନେଇ । ମୁହୂର୍ତ୍ତର ଉତ୍ତେଜନା ମଧ୍ୟରେ ସେ ସ୍ଥିର କଲା ଅନ୍ଧାର ରାତିରେ ନିଜେ ଯାଇ ପାଖରୁ ଦେଖିବ ଚେରିଫୁଲର ଏଇ ସମ୍ଭାରକୁ । ତା'ଭଳି ଜଣେ ଡରକୁଳୀ ଯୁବତୀ ପାଇଁ ଏହା ଥିଲା ଏକ ଆଶ୍ଚର୍ଯ୍ୟଜନକ ନିଷ୍ପତ୍ତି, ହେଲେ ସେ ନିଜେ ଗତି କରୁଥିଲା ଏକ ଅଦ୍ଭୁତ ମାନସିକ ଅବସ୍ଥା ଦେଇ । ତା'ଛଡ଼ା ଘରକୁ ଫେରିଯିବାକୁ ତାକୁ ଭୟ ଲାଗୁଥିଲା । ସେଇ ସନ୍ଧ୍ୟାରେ ଅନେକ ବିଚିତ୍ର ଭ୍ରମ ତାକୁ ବିବ୍ରତ କରୁଥିଲା ।

ସେ ରାସ୍ତା ପାର ହେଲା : ଅନ୍ଧାରରେ କ୍ଷୀଣ, ଏକାକିନୀ ନାରୀଟିଏ । ରାସ୍ତା ଟପିଲାବେଳେ ସେ ସବୁବେଳେ ଭୟରେ ତା' ସାଙ୍ଗରେ ଯିଏ ଥାଏ ତାକୁ ଜାବୁଡ଼ି ଧରେ, ହେଲେ ଆଜି ସେ ନିର୍ଦ୍ୱନ୍ଦ୍ୱରେ ରାସ୍ତା ପାର ହୋଇ ଗଡ଼ଖାଇ ପାର୍ଶ୍ୱରେ ଥିବା

ସରୁଆ ପ୍ରମୋଦ ଉଦ୍ୟାନରେ ପହଞ୍ଚିଲା । ସେଇ ଉଦ୍ୟାନକୁ 'ଚିଦୋରିଗାଫୁଚି' ବୋଲି କୁହନ୍ତି । ଯାହାର ଅର୍ଥ ସହସ୍ର ପକ୍ଷୀଙ୍କର ଅତଳ ଗହ୍ୱର ।

ଏଇ ରାତିରେ ସାରା ପ୍ରମୋଦ ଉଦ୍ୟାନଟା ଗୋଟିଏ ଚେରି ତୋଟା ପରି ମନେ ହେଉଥାଏ । ଗମ୍ଭୀର ମେଘଭରା ଆକାଶ ତଳେ ଚେରିଫୁଲ ସୃଷ୍ଟି କରିଥାଏ ଏକ ବିରାଟ ଶ୍ୱେତ ସ୍ତୂପ । ଚେରି ଗଛମାନଙ୍କ ମଝିରେ ତାର ଯୋଗେ ଝୁଲୁଥିବା କାଗଜ ଲଣ୍ଠନ ସବୁକୁ ଲିଭାଇ ଦିଆଯାଇ ତା' ଜାଗରେ ଫୁଲ ତଳେ ନାଲି, ନୀଳ, ହଳଦିଆ ରଙ୍ଗର ଛୋଟ ଛୋଟ ବଲ୍‌ବ ଖଞ୍ଜା ଯାଇଥାଏ । ସେଗୁଡ଼ିକ ଫୁଲ ତଳେ ନିଷ୍ପ୍ରଭ ଦିଶୁଥା'ନ୍ତି । ରାତି ଦଶଟା କେତେବେଳୁ ବାଜି ସାରିଥାଏ । ଫୁଲ ଦେଖିବା ପାଇଁ ଆସିଥିବା ଦର୍ଶକମାନେ ଫେରି ଯାଇ ସାରିଥାନ୍ତି । ଉଦ୍ୟାନ ମଧ୍ୟଦେଇ କେହି କେହି ସାମୟିକ ଭାବେ ଚାଲି ଯାଉଥିବା ସମୟରେ ପଡ଼ି ରହିଥିବା ଖାଲି ବୋତଲଗୁଡ଼ିକରେ ତାଙ୍କ ଗୋଡ଼ ବାଜି ଯାଉଥିଲା, ବେଳେ ବେଳେ ପାଦ ତଳେ ଅଳିଆ କାଗଜ ଦଳି ହୋଇ ଯାଉଥିଲା ।

ଖବରକାଗଜ ତୋଷିକୋର ପୁଣି ମନେ ପଡ଼ିଗଲା ସେ ଘଟଣା । ରକ୍ତଦାଗ ଲାଗିଥିବା ଖବରକାଗଜ । ଯଦି ଜଣେ ଜାଣିବାକୁ ପାଏ ସେଇ ଶୋଚନୀୟ ଜନ୍ମର କଥା ଆଉ ତାକୁ କୁହାଯାଏ ଯେ ସେ ସେମିତି ଖବରକାଗଜରେ ଗୁଡ଼ା ହୋଇ ପଡ଼ିଥିଲା, ତା'ହେଲେ ନିଶ୍ଚିତ ଭାବେ ତା'ର ଜୀବନଟା ଛାରଖାର ହୋଇଯିବ । ଭାବନ୍ତୁ ତ ଦେଖି ମୁଁ ଜଣେ ସମ୍ପୂର୍ଣ୍ଣ ଅପରିଚିତ ବ୍ୟକ୍ତି ଏଭଳି ଏକ ରହସ୍ୟକୁ ନିଜ ପାଖରେ ଧରି ରଖିବି, ଗୋଟିଏ ମଣିଷର ସ୍ଥିତିର ରହସ୍ୟକୁ ।

ଏମିତି ଭାବୁ ଭାବୁ ତୋଷିକୋ ଉଦ୍ୟାନ ମଧ୍ୟରେ ଆଗକୁ ଚାଲିଥାଏ । ଅଳ୍ପ କେତେଜଣ ପ୍ରେମିକ ପ୍ରେମିକା ଚୁପ୍‌ଚାପ୍ ବସିଥାନ୍ତି, କାହାର ଦୃଷ୍ଟି ତୋଷିକୋ ଆଡ଼େ ନଥାଏ । ସେ ଦେଖିଲା ଗୋଟିଏ ପଥର ବେଞ୍ଚ୍ ଉପରେ ଖାଇ ପାଖରେ ଦୁଇଜଣ ବସିଛନ୍ତି, ଆଉ ସେମାନେ ଫୁଲ ଆଡ଼କୁ ନ ଚାହିଁ ପାଣିକୁ ଚାହିଁଛନ୍ତି । ପାଣି ଗାଢ଼ କଳା ଦିଶୁଥାଏ, ବହଳିଆ ଛାଇର ଆଭରଣ ତାକୁ ଢ଼ାଙ୍କି ରଖିଥାଏ । ଖାଇ ସେପଟେ ଥିବା ରାଜପ୍ରାସାଦର ତିମିରାଚ୍ଛନ୍ନ ଜଙ୍ଗଲ ତା'ର ଦୃଷ୍ଟିକୁ ପ୍ରତିହତ କରୁଥାଏ । ବିଶାଳ ବୃକ୍ଷରାଜି ରାତିର ଆକାଶରେ ସୃଷ୍ଟି କରିଥାନ୍ତି ଅନ୍ଧକାରର ଏକ ପିଣ୍ଡ । ତୋଷିକୋ ଧୀରେ ଧୀରେ ଆଗେଇ ଚାଲିଥାଏ, ପାଦଚଲା ରାସ୍ତାରେ, ମୁଣ୍ଡ ଉପରେ ଓଜନିଆ ହୋଇ ଝୁଲୁଥିବା ଫୁଲ ପେନ୍ଥାମାନଙ୍କ ତଳେ ତଳେ । ପଥର ବେଞ୍ଚଟିଏ ଉପରେ ସେ ଲକ୍ଷ୍ୟ କଲା ବିବର୍ଣ୍ଣ ବସ୍ତୁଟିଏ । ପ୍ରଥମେ ସେ ଭାବିଥିଲା ହୁଏତ ଚେରିଫୁଲ କଢ଼ଟିଏ ଅବା କେହି ଛାଡ଼ି ଯାଇଥିବା କିଛି ବସ୍ତୁ । ପାଖରେ ପହଞ୍ଚିଲା ପରେ ସେ ଦେଖିଲା ଜଣେ କେହି ବେଞ୍ଚ ଉପରେ ଶୋଇଛି । ହୁଏତ କେହି ମଦ୍ୟପ ହୋଇଥିବ । ନା', ନୁହେଁ, କାରଣ ଶୋଇଥିବା ଲୋକଟିର ଶରୀରକୁ ଢାଙ୍କି ରଖିଛି ସଯତ୍ନରେ ବିଛା ଯାଇଥିବା କିଛି ଖବରକାଗଜ । ଆଉ ସେଇ ଖବରକାଗଜରେ ଧଳା ରଙ୍ଗ ହିଁ ତୋଷିକୋର ଧ୍ୟାନ ଆକର୍ଷଣ କରିଥିଲା । ବେଞ୍ଚ ପାଖରେ ଛିଡ଼ା ହୋଇ ସେ ସେଇ ଶୋଇଥିବା ଲୋକଟିକୁ ଲକ୍ଷ୍ୟ କରିବାକୁ ଲାଗିଲା ।

ବାଦାମୀ ରଙ୍ଗର ଜର୍ସି ପିନ୍ଧିଥିବା ଲୋକଟି କିଛି ଖବରକାଗଜ ବିଛାଇ ତା' ଉପରେ ଜାକିଜୁକି ହୋଇ ଶୋଇଥାଏ, ଆଉ କିଛି ଖବରକାଗଜ ଘୋଡ଼ାଇ ହୋଇଥାଏ । ବସନ୍ତର ଆଗମନରେ ଲୋକଟି ଯେ ଏଇ ବେଞ୍ଚଟିକୁ ନିଜର ବିଶ୍ରାମସ୍ଥଳ ଭାବେ ବାଛି ନେଇଛି, ଏଥିରେ ସନ୍ଦେହ ନାହିଁ । ତୋଷିକୋ ଲୋକଟିର ଅପରିଷ୍କାର ହୋଇ ଜାଗାଏ ଜାଗାଏ ଜଟ ହୋଇ ଯାଇଥିବା କେଶଗୁଚ୍ଛକୁ ଲକ୍ଷ୍ୟ କରୁଥିଲା । ଖବର କାଗଜରେ ଗୁଡ଼ାଇ ହୋଇ ଶୋଇଥିବା ଲୋକଟିକୁ ଦେଖି ତା'ର ମେଜିଆ ଉପରେ ଅସହାୟ ଭାବେ ପଡ଼ି ରହିଥିବା ହତଭାଗ୍ୟ ଶିଶୁଟିଏ କଥା ମନେ ପଡ଼ି ଯାଇଥିଲା । ନିଃଶ୍ୱାସ ପ୍ରଶ୍ୱାସ ସହିତ ତାଳ ରଖି ଲୋକଟିର କାନ୍ଧ ଉଠୁଥାଏ, ପଡୁଥାଏ ।

ତୋଷିକୋର ମନେହେଲା, ଅଚାନକ ତା'ର ସମସ୍ତ ଆଶଙ୍କା, ପୂର୍ବାଭାସ ବାସ୍ତବତାରେ ପରିଣତ ହୋଇ ଯାଇଛି । ଅନ୍ଧାରରେ ବି ସେଇ ଲୋକଟାର କପାଳ ସ୍ପଷ୍ଟ ଦେଖି ହେଉଥିଲା । ଲୋକଟାର ବୟସ ଯେ ବେଶୀ ନୁହେଁ, ସେଥିରୁ ସହଜରେ ବାରି ହେଉଥିଲା, ଯଦିଓ ଦାରିଦ୍ର୍ୟ ଓ ଦୁଃଖ ଯନ୍ତ୍ରଣାର କେତୋଟି ରେଖା ମଧ୍ୟ ସେଇ କପାଳରେ ସ୍ପଷ୍ଟ ଥିଲା । ମୋଜା ନଥିବା ପାଦରେ ଦୁଇହଳ ଛିଣ୍ଡା ଖୋଳଯୋତା, ଖାକି ପ୍ୟାଣ୍ଟ ସାମାନ୍ୟ ଉପରକୁ ଉଠି ଯାଇଥିଲା । ସେ ତା'ର ମୁହଁଟା ଦେଖି ପାରୁ ନଥିଲା । ହଠାତ୍ ତା'ର ସେଇ ମୁହଁଟିକୁ ଦେଖିବାର ଅଦମ୍ୟ ଇଚ୍ଛା ହୋଇଥିଲା ।

ବେଞ୍ଚ ମୁଣ୍ଡ ପାଖକୁ ଯାଇ ସେ ଟିକେ ନଇଁ ତାକୁ ଦେଖିବାକୁ ଚେଷ୍ଟା କଲା । ତା'ର ମୁଣ୍ଡ ତା' ଦୁଇହାତ ମଧ୍ୟରେ ଅଧା ଲୁଚି ରହିଥାଏ । ତଥାପି ଲୋକଟାର ବୟସ ଆଶ୍ଚର୍ଯ୍ୟଜନକ ଭାବେ କମ୍ ମନେ ହେଉଥିଲା । ତା'ର ଗହଳିଆ ଭ୍ରୂ ଆଉ ଧାରୁଆ ନାକ ତୋଷିକୋର ଆଖିରେ ପଡ଼ିଲା । ତା'ର ଅଳ୍ପ ଖୋଲାଥିବା ପାଟିରେ ଭରି ରହିଥିଲା ଜୀବନ ଓ ଯୌବନ ।

କିନ୍ତୁ ତୋଷିକୋ ତା'ର ଅତି ପାଖକୁ ଚାଲି ଯାଇଥିଲା । ରାତିର ନୀରବତାକୁ ଖବରକାଗଜ ଶେଯର ଖସ୍‌ଖସ୍ ଶବ୍ଦ ଚହଲାଇ ଦେଇଥିଲା, ଲୋକଟି ହଠାତ୍ ଆଖି ଖୋଲିଲା । ଜଣେ ଅଳ୍ପବୟସ୍କା ମହିଳାଙ୍କୁ ଅତି ନିକଟରେ ଦେଖି ସେ ଉଠି ପଡ଼ିଲା ଆଉ ତା'ର ଆଖି ଦୁଇଟା ଯେମିତି ଜଳି ଉଠିଲା ! ପର ମୁହୂର୍ତ୍ତରେ ଏକ ଶକ୍ତିଶାଳୀ ପଞ୍ଝା ବଢ଼ିଆସି ତୋଷିକୋର କ୍ଷୀଣ ହାତକୁ ଧରି ପକାଇଥିଲା ।

ତୋଷିକୋକୁ ଆଦୌ ଡର ଲାଗି ନଥିଲା । ସେ ନିଜକୁ ମୁକ୍ତ କରିବା ପାଇଁ ଚେଷ୍ଟା ସୁଦ୍ଧା କଲାନି । ଗୋଟିଏ ଝଲକରେ ତା' ମନକୁ କଥାଟିଏ ଆସିଥିଲା । ତା'ହେଲେ ୟା ମଧ୍ୟରେ କୋଡ଼ିଏ ବର୍ଷ ବିତି ଯାଇଛି !

ସମ୍ପୂର୍ଣ୍ଣ ନୀରବ ଥିଲା ରାଜପ୍ରାସାଦର ଅରଣ୍ୟ, ଘନ ଅନ୍ଧକାର ମଧ୍ୟରେ ।



*ଅନୁବାଦ : **ଦୀପକ ସାମନ୍ତରାୟ***

# ହୋରେ ଲୁଇ ବୋରେସ୍

ଆର୍ଜେଣ୍ଟିନାର ଜାତୀୟ ମୁକ୍ତି ଆନ୍ଦୋଳନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିବା ଏକ ବୁଦ୍ଧିଜୀବୀ, ମଧ୍ୟବିତ୍ତ ପରିବାରରେ ବୋରେସ୍‌ଙ୍କର ଜନ୍ମ ୧୮୯୯ ମସିହାରେ । ଜେନିଭାରେ ଶିକ୍ଷାଲାଭ କରି କିଛିକାଳ ପାଇଁ ସେ ସ୍ପେନ୍‌କୁ ଆସି ସେଠାରେ 'Yetraisme' ସାହିତ୍ୟ ଆନ୍ଦୋଳନର ସଂସ୍ଥାପକମାନଙ୍କର ଘନିଷ୍ଠ ସମ୍ପର୍କରେ ଆସନ୍ତି । ଅତୀତ ଓ ପରମ୍ପରାଭିତ୍ତିକ ସାହିତ୍ୟଠାରୁ ସମ୍ପୂର୍ଣ୍ଣ ଦୂରେଇ ଯାଇ ଔପଚାରିକ ଓ ବର୍ଣ୍ଣନାତ୍ମକ ତଥା ଶୃଙ୍ଗାର ରସାତ୍ମକ ରଚନାଶୈଳୀକୁ ବର୍ଜନ କରି ଏକ ନିର୍ମଳ କବିତାର ବାତାବରଣ ସୃଷ୍ଟି କରିବା ଏ ଆନ୍ଦୋଳନର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ୧୯୨୧ ମସିହାରେ ସେ ବୁଏନ୍‌ସ ଏଆରେଜ୍ ଫେରିଆସି ଆଧୁନିକ ଅଭିବ୍ୟଞ୍ଜନାବାଦ (Modern Expressionism) ଓ ଜାତୀୟ ମୂଲ୍ୟବୋଧ ଉପରେ ଆଧାରିତ ଆର୍ଜେଣ୍ଟିନୀୟ 'Uetraisme' ଆନ୍ଦୋଳନର ସୂତ୍ରପାତ କରନ୍ତି । କବିତାକୁ ସାଧାରଣ ଲୋକଙ୍କ ନିକଟରେ ପହଞ୍ଚାଇବା ପାଇଁ 'Prisma, revista mural' ପ୍ରାଚୀରପତ୍ର ପ୍ରକାଶ କରିବା ଏ ଆନ୍ଦୋଳନର ଏକ ଅନନ୍ୟ ପଦକ୍ଷେପ ଥିଲା । ଏତିକିବେଳେ ସେ ଜାତୀୟ ଗ୍ରନ୍ଥାଗାରରେ ଯୋଗ ଦିଅନ୍ତି, ମାତ୍ର ପରବର୍ତ୍ତୀ କାଳରେ ରାଜନୈତିକ କାରଣରୁ ତାଙ୍କୁ ସେଠାରୁ ବିଦାୟ ନେବାକୁ ପଡ଼ିଥିଲା । ୧୯୯୫ ମସିହାରେ ସେ ଦୃଷ୍ଟିଶକ୍ତି ହରାଇ ବୁଏନ୍‌ସ ଏଆରେଜ୍ ବିଶ୍ୱବିଦ୍ୟାଳୟରୁ ପ୍ରାଧ୍ୟାପକ ଭାବରେ ଅବସର ଗ୍ରହଣ କଲେ ହେଁ ସାହିତ୍ୟ ସାଧନାରେ ନିମଗ୍ନ ରହନ୍ତି । ୧୯୩୦ ପର୍ଯ୍ୟନ୍ତ ସେ ପ୍ରାୟତଃ କବିତା ରଚନାରେ ମନୋନିବେଶ କରିଥିଲେ । କିନ୍ତୁ ପରବର୍ତ୍ତୀ କାଳରେ ସେ ଗଦ୍ୟ ରଚନା, ମୁଖ୍ୟତଃ ଗଳ୍ପ ଓ ପ୍ରବନ୍ଧ ରଚନାରେ ତାଙ୍କ

ସୃଜନୀଶକ୍ତିର ଉତ୍କର୍ଷ ପ୍ରତିପାଦନ କରିଥିଲେ । ତାଙ୍କର ପ୍ରମୁଖ ଗଳ୍ପ ସଂକଳନଗୁଡ଼ିକ ହେଉଛି 'Ficciones' (୧୯୯୪, 'Universal History of Infamy' (୧୯୩୫), 'The Book of Imaginary Beings' (୧୯୫୭) ପ୍ରଭୃତି । ୧୯୨୩ରୁ ୧୯୫୭ ମଧ୍ୟରେ ଲିଖିତ ତାଙ୍କର ଗୁରୁତ୍ୱପୂର୍ଣ୍ଣ କବିତାଗୁଡ଼ିକ 'Selected Poems'ରେ ସଂକଳିତ । ତାଙ୍କର କୃତି ପାଇଁ ବିଭିନ୍ନ ଆନ୍ତର୍ଜାତିକ ସମ୍ମାନରେ ସେ ସମ୍ମାନିତ ହୋଇଛନ୍ତି । ଟାଇମ୍ ପତ୍ରିକାର ମତ ହେଲା – ସେ ହେଉଛନ୍ତି ସ୍ପେନୀୟ ଭାଷାର ଜୀବିତ ଲେଖକମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ । ୧୯୭୧ ମସିହାରେ କଲମ୍ବିଆ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଅନୁଷ୍ଠିତ ଏକ ଆଲୋଚନା ଚକ୍ରରେ ବୋରେସ୍‌ଙ୍କ ଉପସ୍ଥିତିରେ ଏହି End of the Duel ଗଳ୍ପଟିକୁ ପାଠ କରାଯାଇଥିଲା ଏବଂ ସେ କିପରି ତାଙ୍କର ସଂଗୃହୀତ କଥାବସ୍ତୁକୁ ଗଳ୍ପର ରୂପ ଦିଅନ୍ତି, ତାହାକୁ ଏହି ଗଳ୍ପର ଉଦାହରଣ ଦେଇ ବୁଝାଇଥିଲେ । ଏକ ପ୍ରଶ୍ନର ଉତ୍ତରରେ ସେ କହିଥିଲେ ଯେ ଏହି ଗଳ୍ପର କଥାବସ୍ତୁକୁ ସେ ୨୫ରୁ ୩୦ ବର୍ଷ ଯାଏ ମନରେ ରଖି ପରିଶେଷରେ ଏହାକୁ ଗଳ୍ପରେ ରୂପାନ୍ତରିତ କରି ପାରିଥିଲେ । End of the Duel ଗଳ୍ପର ଓଡ଼ିଆ ଅନୁବାଦ – ଦ୍ୱନ୍ଦ୍ୱଯୁଦ୍ଧର ସମାପ୍ତି ।

# ଦ୍ୱନ୍ଦ୍ୱଯୁଦ୍ଧର ସମାପ୍ତି

ଏକ ବାସନ୍ତୀ ସନ୍ଧ୍ୟାରେ ଉରୁଗୁଏର ଔପନ୍ୟାସିକଙ୍କ ପୁଅ କାର୍ଲସ ରେଲି ମୋତେ ଏ ଗପଟି କହିଥିଲେ । ମୋ ସ୍ମୃତିରେ ଆଜି ପର୍ଯ୍ୟନ୍ତ ଏହାର ଅସମାହିତ ଦ୍ୱନ୍ଦ୍ୱ ତଥା କୁହୁଡ଼ିଆ ପରିସମାପ୍ତି, ପକ୍ଷୀର କୂଜନ ଆଉ ୟୁକାଲିପ୍‌ଟସ୍ ବୃକ୍ଷର ଔଷଧୀୟ ବାସ୍ନା ସହ ତଥାପି ମିଶି ରହିଛି ।

ସବୁଦିନ ପରି ଆମେ ବସି ଆମ ଦୁଇ ଦେଶ ଉରୁଗୁଏ ଓ ଆର୍ଜେଣ୍ଟିନାର ଛନ୍ଦାଛନ୍ଦି ଇତିହାସ ଆଲୋଚନା କରୁଥିଲୁ । ରେଲି କହିଲେ, ବୋଧହୁଏ ମୁଁ ଜୁଆନ୍ ପାଟ୍ରିସିଓ ନୋଲାନ୍‌ଙ୍କ ନାମ ଶୁଣିଥିବି, ଯିଏ ଜଣେ ସାହସୀ ଲୋକ, ଜୋକର ଓ ବଦମାସ୍ ରୂପେ ଖ୍ୟାତିଲାଭ କରିଥିଲେ । ମୁଁ ମିଛରେ କହିଲି – ହଁ, ନୋଲାନ୍ ନବେ ମସିହାରୁ ମରି ସାରିଥିଲେ ମଧ୍ୟ ଲୋକେ ତଥାପି ତାଙ୍କୁ ବଂଧୁ ଦୃଷ୍ଟିରେ ଦେଖୁଥିଲେ । ସାଧାରଣତଃ ସଂସାରରେ ଯେପରି ଘଟେ, ସେହିପରି ତାଙ୍କର ମଧ୍ୟ ଶତ୍ରୁ ଥିଲେ ।

ନୋଲାନ୍ ସମ୍ପର୍କିତ ବହୁ କାହାଣୀ ମଧ୍ୟରୁ ଗୋଟିଏ ରାଲି ମୋତେ କହିଲେ, ଏହା ମାନାଣ୍ଟିଏଲସ୍ ଯୁଦ୍ଧର ଅଳ୍ପ ପୂର୍ବର ଘଟଣା, ସେରୋଲାର୍ଗୋର ଦୁଇଟି ବାହାପିଆ ମୂର୍ଖ, ମାନୁଏଲ୍ କାର୍ଡୋସୋ ଓ କାର୍ମେନ୍ ସିଲ୍‌ଭେରା ଏହାର ମୁଖ୍ୟ ଚରିତ୍ର ।

ସେମାନେ କାହିଁକି ପରସ୍ପରକୁ ଘୃଣା କରୁଥିଲେ ? ଶହେବର୍ଷ ପରେ କିପରି ଜଣେ ବହୁକାଳୁ ଭୁଲି ହୋଇ ଯାଇଥିବା ଏହି ଦୁଇ ଜଣଙ୍କୁ, ସେମାନଙ୍କ ଶେଷ ଦ୍ୱନ୍ଦ୍ୱ ଯୁଦ୍ଧ ପାଇଁ ହିଁ କେବଳ, କାହିଁକି ବା ମନେ ରଖିବ ? ରାଲି ବାପାଙ୍କ ଅଫିସ୍‌ରେ ଜଣେ କର୍ମଚାରୀ, ଯାହାଙ୍କର 'ବାଘ ନିଶ ପରି' ନିଶ ଥିଲା, ଲୋକଙ୍କଠାରୁ ଶୁଣିଶୁଣି ସେ ଯାହା ସଂଗ୍ରହ କରିଥିଲେ, ତାହାକୁ ମୁଁ ଏଠାରେ ବର୍ଣ୍ଣନା କରୁଛି । ଏଥିରେ ଅନେକ ମିଛ ବି ଥାଇପାରେ, କାରଣ ଭୁଲାମନ ଓ ସ୍ମୃତି ଉଭୟର ସୃଷ୍ଟିଦକ୍ଷତା ପ୍ରବଳ ।

ମାନୁଏଲ୍ କାର୍ଡୋସୋ ଓ କାର୍ମେନ୍ ସିଲ୍‌ଭେରାଙ୍କର କିଛି ଚାଷଜମି ପାଖାପାଖି ଥିଲା । ଅନ୍ୟାନ୍ୟ ଆବେଗର ମୂଳ ପରି, ଘୃଣାର ଅୟମାରମ୍ଭ ମଧ୍ୟ ଅତ୍ୟନ୍ତ ରହସ୍ୟମୟ । କିନ୍ତୁ ଶୁଣିବା କଥା, ଗାଇଗୋରୁ ଗଣ୍ଡଗୋଳ କି ଘୋଡ଼ାଦୌଡ଼ ପ୍ରତିଯୋଗିତାରେ ଅଧିକ ଶକ୍ତିଶାଳୀ ସିଲ୍‌ଭେରା କାର୍ଡୋସୋଙ୍କର ଘୋଡ଼ାକୁ କୁଆଡ଼େ ପଥଚ୍ୟୁତ କରି ଦେଇଥିଲେ । ପ୍ରାୟ ମାସେ ପରେ ସେଇ ସହରର ଏକ କ୍ଲବ୍‌ରେ ଦି'ଜଣିଆ ତାସ୍ ଖେଳ ପ୍ରତିଯୋଗିତା ହେବାର ଠିକ୍ ହେଲା । ପ୍ରତିଥର ଖେଳ ପରେ ସିଲଭେରା ତାଙ୍କର ପ୍ରତିଦ୍ୱନ୍ଦ୍ୱୀଙ୍କୁ ତାଙ୍କ

ଖେଳ କୌଶଳ ଲାଗି ଅଭିନନ୍ଦନ ଜଣାଇଲେ, କିନ୍ତୁ ଶେଷରେ ତାଙ୍କୁ ପାହୁଲାଟିଏ ନ ଦେଇ ଛାଡ଼ିଦେଲେ । ନିଜ ମନିବ୍ୟାଗ୍‌ରେ ଅର୍ଥତକ ପୂରାଇ ରଖିଲା ବେଳକୁ କାର୍ଡୋସୋଙ୍କୁ ତାଙ୍କର କୌଶଳ ପାଇଁ ପୁଣିଥରେ ସିଲ୍‌ଭେରା ଧନ୍ୟବାଦ ଦେଲେ । ମୋର ବିଶ୍ୱାସ, ସେତିକିବେଳେ, ସେମାନେ ମୁହାଁମୁହିଁ ସଂଘର୍ଷ ଅବସ୍ଥାକୁ ଆସି ଯାଇଥିଲେ । ଖେଳର ମଧ୍ୟ ନିଜସ୍ୱ ଉତ୍‌ଥାନ ପତନ ଥିଲା । ସେହି ସ୍ଥଳ ଜାଗାରେ ଆଉ ସେଇଦିନ ହିଁ ଉଭୟଙ୍କୁ ଅଲଗା କରିଦେଲେ । କାହାଣୀର ଆଉ ଏକ ବିଚିତ୍ର ମୋଡ଼ ହେଲା, ମାନୁଏଲ୍ କାର୍ଡୋସୋ ଆଉ କାର୍ମେନ୍ ସିଲ୍‌ଭେରା ନିଶ୍ଚୟ ପାହାଡ଼ ଉପରେ ସକାଳେ ସଂଜରେ ଏକାଧିକବାର ମୁହାଁମୁହିଁ ହୋଇଥିବେ । କିନ୍ତୁ ଶେଷ ପର୍ଯ୍ୟନ୍ତ ସେମାନେ ପ୍ରକୃତରେ ପରସ୍ପରର ସମ୍ମୁଖୀନ ହୋଇ ନଥିଲେ । ହୁଏତ ସେମାନଙ୍କର ଅସ୍ୱଚ୍ଛଳ ଓ ଚିରାଚରିତ ଜୀବନଧାରା ପରସ୍ପର ପ୍ରତି ଘୃଣା ବ୍ୟତିରେକେ ଆଉ କିଛି ରଖି ନଥିଲା, ଆଉ ସେଇ ଘୃଣାକୁ ହିଁ ସେମାନେ ଯତ୍ନରେ ସାଇତା ସମ୍ବଳ କରି ନିଜ ଭିତରେ ବଢ଼ାଇ ଚାଲିଲେ । ପରିଶେଷରେ ସେମାନଙ୍କ ଅଜାଣତରେ, ନିଃସନ୍ଦେହରେ ଉଭୟେ ଉଭୟଙ୍କର ଦାସ ହୋଇ ଯାଇଥିଲେ ।

ମୁଁ ଯାହା କହିବାକୁ ଯାଉଛି, ତାହା ପରିଣତି କି କାରଣ, ମୁଁ ଜାଣେ ନାହିଁ । କାର୍ଡୋସୋ ପ୍ରେମରେ ନୁହେଁ, ନିଃସଙ୍ଗତାରୁ ରକ୍ଷା ପାଇବା ଲାଗି ଏକ ପଡ଼ୋଶୀ ଝିଅ ଲା ସର୍ଭେଲିନା ସହ ସମ୍ପର୍କ ସ୍ଥାପନ କଲେ । ସିଲ୍‌ଭେରାଙ୍କର ଏତିକି କେବଳ ଜାଣିବା ଦରକାର ଥିଲା । ବାସ୍, ଯେମିତି ଜାଣିଗଲେ ନିଜ ବାଟରେ ନିଜେ ତା ସହ ପ୍ରେମ ଆରମ୍ଭ କରିଦେଲେ ଓ ତାକୁ ଘରକୁ ଡାକି ଆଣିଲେ । କିଛି ମାସ ପରେ, ଯେତେବେଳେ ଦେଖିଲେ, ଯେ ତାଙ୍କ ବାଟରେ ପ୍ରତିବନ୍ଧକ ହେଲା, ତାକୁ ବିଦା କରି ଦେଲେ । ଏଥିରେ ରାଗିଯାଇ ସ୍ତ୍ରୀଟି କାର୍ଡୋସୋଙ୍କ ପାଖରେ ଆଶ୍ରୟ ନେବାକୁ ଚେଷ୍ଟା କଲା । କାର୍ଡୋସୋ ତା' ସହିତ ଗୋଟିଏ ରାତି କଟାଇ ପରଦିନ ଅପରାହ୍ନ ବେଳକୁ ତାକୁ ତଡ଼ିଦେଲେ । କାରଣ ଅନ୍ୟ ଲୋକର ଉଚ୍ଛିଷ୍ଟ ଗ୍ରହଣ କରିବାକୁ ସେ ରାଜି ନଥିଲେ ।

ଠିକ୍ ସେତିକି ବେଳକୁ, ଲା ସର୍ଭେଲିନା ଘଟଣା ପରେ ପରେ କିମ୍ୱା ଠିକ୍ ଆଗରୁ ସିଲ୍‌ଭେରାଙ୍କ ଜଗୁଆଳୀ କୁକୁରର ମୃତ୍ୟୁ ଘଟଣାଟି ଘଟିଲା । ସିଲ୍‌ଭେରା ଏଇ କୁକୁରଟିକୁ ଭାରି ଭଲ ପାଉଥିଲେ ଓ ଉରୁଗୁଏର ୩୩ ଜଣ ଜାତୀୟ ପିତାଙ୍କ ଅନୁସରଣରେ ତା' ନାମ ତେତିଶିତା ରଖିଥିଲେ । ଗୋଟାଏ ଗାତ ଭିତରେ କୁକୁରଟିକୁ ଯେତେବେଳେ ସେ ମୃତ ଅବସ୍ଥାରେ ଦେଖିଲେ, କିଏ ଏହାକୁ ବିଷ ଦେଇଥିଲା ଜାଣିବାକୁ ସିଲ୍‌ଭେରାଙ୍କୁ ବେଶୀ ସମୟ ଲାଗି ନଥିଲା ।

୧୮୭୦ ମସିହା ଶୀତଦିନ ବେଳକୁ କ୍ଷମତାସୀନ କଲୋରାଡ୍‌ସ ବା ଲୋହିତ ଓ ଆପ୍ରିସିଓର ବ୍ଲାଙ୍କୋ ବା ଶ୍ୱେତାଙ୍ଗମାନଙ୍କ ମଧ୍ୟରେ ଗୃହଯୁଦ୍ଧ ଲାଗିଗଲା । ଏହି ବିଦ୍ରୋହ ସିଲ୍‌ଭେରା ଓ କାର୍ଡୋସାଙ୍କୁ ନେଇ କ୍ଲବ୍‌ଛକ ଉପରେ ଏକାଠି ଠିଆ କରାଇଲା, ଯେଉଁଠାରେ ସେମାନେ ସେମାନଙ୍କର ତାସ୍ ଖେଳ ଖେଳିଥିଲେ । ଅଶ୍ୱ-ବାହିନୀର ଗୋଟିଏ ଅଂଶର ମୁଖ୍ୟ ରୂପେ ଏକ ବ୍ରାଜିଲ୍ ବର୍ଣ୍ଣଶଙ୍କର ସୈନ୍ୟଟିଏ ସେଠାରେ ଉପସ୍ଥିତ

ସମସ୍ତଙ୍କୁ ଡାକି, ଦେଶ ଯେ ସେମାନଙ୍କୁ ଦରକାର କରୁଛି ଆଉ ସରକାରୀ ନିର୍ଯାତନା ଅସହ୍ୟ ହେଲାଣି ଇତ୍ୟାଦି ଲମ୍ବା ଭାଷଣମାନ ମାରିଲା । ସେଠାରେ ଏକତ୍ର ହୋଇଥିବା ସମସ୍ତେ ଯେଉଁ ବକ୍ତବ୍ୟରୁ ଗୋଟାଏ ଶବ୍ଦ ବି ବୁଝି ନଥିଲେ, ସେହି ବକ୍ତୃତା ଶେଷରେ ସମସ୍ତଙ୍କୁ ସେ ଗୋଟିଏ ଗୋଟିଏ ଧଳା ବ୍ୟାଜ୍ ଧରାଇ ଦେଲା, ସେମାନଙ୍କୁ ବ୍ଲାଙ୍କୋ ଦଳଭୁକ୍ତ କରିବାର ନମୁନା ଥିଲା । ସେମାନେ ନିଜ ପରିବାରଠାରୁ ବିଦାୟ ଆଣି ଆସିବାର ସୁଯୋଗ ବି ସେମାନଙ୍କୁ ଦିଆଗଲା ନାହିଁ ।

ମାନୁଏଲ୍ କାର୍ଡୋସା ଓ କାର୍ମେନ୍ ସିଲ୍‌ଭେରା ନିଜ ନିଜ ଭାଗ୍ୟକୁ ଆଦରି ନେଲେ, ଗୋଟାଏ ସୈନିକର ଜୀବନର ଗୋଟାଏ ଗାଈ ଜଗୁଆଳିର ଜୀବନଠାରୁ ଅବଶ୍ୟ କଷ୍ଟକର ନଥିଲା । ବାହାରେ ଖୋଲା ଆକାଶ ତଳେ ମେଣ୍ଢାଲୋମବାଲା କମ୍ବଳ ତଳେ ଶୋଇବାରେ ସେମାନେ ଥିଲେ ଅଭ୍ୟସ୍ତ, ଆଉ ମଣିଷ ମାରିବା କଥା, ତାହା ବି ସେମାନଙ୍କ ପାଇଁ କଷ୍ଟକର ନଥିଲା, କାରଣ ସେଇ ହାତ ଗୋରୁ ମାରିବାରେ ଆଗରୁ ଅଭ୍ୟସ୍ତ ଥିଲା । ଆଉ ଅଶ୍ୱବାହିନୀ ଯୁଦ୍ଧରତ ହେଲାବେଳେ ଲଗାମ ଓ ଅସ୍ତ୍ରର ଝନତ୍‌କାର ଶୁଣାଯିବା ଗୋଟାଏ ନିତ୍ୟନୈମିତ୍ତିକ ବ୍ୟାପାର । ଏଥିରେ ଯେ ଆହତ ହେଉ ନଥିଲା ସେ ନିଜକୁ ଅପରାଜେୟ ଭାବୁଥିଲା । ବେଳେବେଳେ ଗୋଟାଏ ଦଳ ଦାୟିତ୍ୱରେ ରହୁଥିଲା ବେଳେ ଭୟ ସେମାନଙ୍କ ଦେହରେ ଘଷି ହୋଇ ଚାଲି ଯାଉଥିଲେ ମଧ୍ୟ କାର୍ଡୋସୋ ଓ ସିଲ୍‌ଭେରା ଉଭୟ କଳ୍ପନା ଶକ୍ତିର ଅଭାବ ଯୋଗୁଁ କ'ଣ କେଜାଣି ଭୟଠାରୁ ଓ ଦୟାଠାରୁ ମୁକ୍ତ ଥିଲେ । ସେମାନଙ୍କର କେବେ ଘରକଥା ମନେ ପଡୁ ନଥିଲା । ଦେଶଭକ୍ତିର ଧାରଣା କିମିତି ଜିନିଷ ବି ସେମାନେ ଜାଣି ନଥିଲେ, ଆଉ ନିଜ ଟୋପିରେ ଧଳା ବ୍ୟାଜ୍ ଲଗାଇଥିବା ସତ୍ତ୍ୱେ ଏଦଳ ଓ ସେଦଳ ଭିତରେ ସେମାନେ କୌଣସି ପାର୍ଥକ୍ୟ ଦେଖୁ ନଥିଲେ । ସମର ଶିକ୍ଷା ପ୍ରସ୍ତୁତି କାଳରେ ଢାଲ ସାହାଯ୍ୟରେ ଜଣେ କ'ଣ କରିପାରେ ତାହା ସେମାନେ ଶିଖିଗଲେ, ଆଉ ପରସ୍ପରର ସାଥୀ ହୋଇ ରହିବା ସେମାନଙ୍କୁ ଶତ୍ରୁରୂପେ ରହିବାକୁ ଶିଖାଇଥିବାରୁ ସେମାନେ ଜାଣିପାରିଲେ । କାନ୍ଧକୁ କାନ୍ଧ ଲଗାଇ ସେମାନେ ଯୁଦ୍ଧ କରୁଥିଲେ, ଆଉ ଆମ ଜାଣିବାରେ, ପଦେ ହେଲେ ବାକ୍ୟ ନିଜ ଭିତରେ ବିନିମୟ କରି ନଥିଲେ ।

୧୮୭୧ ମସିହାରେ ଆବେଗଭରା ପତନ ସହିତ ସେମାନଙ୍କର ଶେଷାନ୍ତ ଆସିବାର ଥିଲା । ଏହି ଯୁଦ୍ଧ, ଯାହା ଘଣ୍ଟାଟିଏ ବି ଲାଗି ନଥିଲା, ତାହା ଏପରି ଏକ ଯାଗାରେ ଘଟିଥିଲା, ଯାହା ନାମ ସେମାନେ ଜାଣି ନଥିଲେ । (ଐତିହାସିକମାନେ ପରେ ଏହି ଯାଗାର ନାମକରଣ କରିଥିଲେ ।) ଯୁଦ୍ଧର ଶେଷ ସନ୍ଧ୍ୟାରେ କାର୍ଡୋସୋ ଦୁଇହାତ ଦୁଇଗୋଡ଼ରେ ଗୁରୁଣ୍ଡି ଗୁରୁଣ୍ଡି ଯାଇ ଅଫିସରଙ୍କ ତମ୍ବୁ ଭିତରେ ପଶି ତାଙ୍କୁ ଚୋରଙ୍କ ଭଳିଆ ପଚାରିଲେ, ଯଦି ପରଦିନ ଶ୍ୱେତାଙ୍ଗମାନେ ଜିତନ୍ତି ତା'ହେଲେ ଲୋହିତମାନଙ୍କ ମଧ୍ୟରୁ ଗୋଟାକୁ ତାଙ୍କୁ ମାରିବା ପାଇଁ ମିଳିବ କି, କାରଣ ସେତେବେଳ ଯାଏ ସେ ଜଣକର ବି ତଣ୍ଟି କାଟି ନଥିଲେ ଆଉ ସେ ଏହା କିପରି ଲାଗେ ଜାଣିବାକୁ ଚାହୁଁଥିଲେ । ତାଙ୍କ ଅଫିସର ତାଙ୍କୁ କଥା ଦେଲେ ଯେ, ଯଦି ସେ ଉପଯୁକ୍ତ ବ୍ୟବହାର ଦେଖାନ୍ତି, ତା'ହେଲେ ତାଙ୍କୁ ଏ ସୁଯୋଗ ସେ ଦେବେ ।

ଶ୍ୱେତାଙ୍ଗମାନଙ୍କ ସଂଖ୍ୟା ଶତ୍ରୁ-ସଂଖ୍ୟାଠାରୁ ଅଧିକ ଥିଲା, କିନ୍ତୁ ଲୋହିତମାନେ ଅଧିକ ଅସ୍ତ୍ରସଜ୍ଜିତ ଓ କୁଶଳୀ ଥିଲେ, ଏଣୁ ପାହାଡ଼ ଉପରୁ ଶ୍ୱେତାଙ୍ଗମାନଙ୍କୁ ତଡ଼ି ଆଣିଲେ । ଦୁଇଥର ବ୍ୟର୍ଥ ଆକ୍ରମଣ ପରେ କମାଣ୍ଡର ନିର୍ଦ୍ଦୟ ଭାବରେ ଆହତ ହୋଇ ଆତ୍ମସମର୍ପଣ କଲେ । ସେହି ସ୍ଥାନରେ ହିଁ, ତାଙ୍କ ନିଜର ଅନୁରୋଧକ୍ରମେ ଖଣ୍ଡାଘାତରେ ତାଙ୍କୁ ହତ୍ୟା କରାଗଲା ।

ପରାଜିତମାନେ ଅସ୍ତ୍ର ସମର୍ପଣ କଲେ । ଲୋହିତମାନଙ୍କ କମାଣ୍ଡର କାବଟେନ୍ ଜୁଆନ୍ ପାଟ୍ରିସିଓ ନୋଲାନ୍ ବନ୍ଦୀମାନଙ୍କ ନିମନ୍ତେ ପ୍ରତ୍ୟାଶିତ ମୃତ୍ୟୁଦଣ୍ଡର ବ୍ୟବସ୍ଥା ନିଜେ ଟିଖିନିଖି କରି କଲେ । ସେ ନିଜେ ଥିଲେ ସେରୋଲାର୍ଗୋର ବାସିନ୍ଦା । ଆଉ ସିଲ୍‌ଭେରା ଓ କାର୍ଡୋସାଙ୍କ ମଧ୍ୟରେ ପୁରୁଣା ଶତ୍ରୁତା ବିଷୟରେ ସବୁ ଜାଣିଥିଲେ । ସେ ଉଭୟଙ୍କୁ ଡକାଇ ପଠାଇଲେ ଓ କହିଲେ, 'ମୁଁ ଆଗରୁ ଜାଣିଛି ତୁମେ ଦୁହେଁ ପରସ୍ପରକୁ ଦେଖି ପାର ନାହିଁ, ଆଉ ଉଭୟେ ଏହାକୁ ପ୍ରକାଶ କରିବାର ସୁଯୋଗକୁ ଅପେକ୍ଷା କରି ରହିଛ । ମୁଁ ତୁମ ପାଇଁ ଶୁଭ ସମ୍ବାଦ ରଖିଛି । ସୂର୍ଯ୍ୟାସ୍ତ ପୂର୍ବରୁ ତୁମ ଦୁହିଁଙ୍କ ଭିତରୁ କିଏ ବେଶୀ ଭଲ ତାହା ଦେଖାଇବାର ସୁଯୋଗ ଉଭୟ ପାଇବ । ତୁମେ ଦୁହେଁ ପ୍ରତିଯୋଗିତାରେ ଦୌଡ଼ିବ, ଭଗବାନ ଜାଣନ୍ତି କିଏ ଜିତିବ ।' ଯେଉଁ ସୈନ୍ୟମାନେ ସେମାନଙ୍କୁ ଧରି ଆଣିଥିଲେ ଫେରାଇ ନେଇଗଲେ । କ୍ୟାମ୍ପ ସାରା ଏହି ସମ୍ବାଦ ଅତିଶୀଘ୍ର ପ୍ରଚାରିତ ହୋଇଗଲା ।

ନୋଲାନ୍ ମନରେ ସ୍ଥିର କରିଥିଲେ ଯେ ଏହି ପ୍ରତିଯୋଗିତା ପାଇଁ କୌଣସି ନୀତିନିୟମ ପାଳିତ ହେବ ନାହିଁ । କିନ୍ତୁ ବନ୍ଦୀମାନେ ଏକ ପ୍ରତିନିଧି ପଠାଇ ନୋଲାନ୍‌ଙ୍କୁ ଜଣାଇ ଦେଲେ ଯେ, ସେମାନେ ମଧ୍ୟ ଏହାର ଦର୍ଶକ ହେବାକୁ ଚାହୁଁଥିଲେ ଓ ଫଳାଫଳ ଉପରେ ବାଜି ରଖିବାକୁ ଇଚ୍ଛା ପ୍ରକାଶ କରିଥିଲେ । ନୋଲାନ୍‌ଙ୍କର ବୁଝିବା ଶକ୍ତି ଥିଲା ପ୍ରଖର ଓ ସେ ଏହି ବାର୍ତ୍ତାରେ ଏକମତ ହେଲେ । ବାଜିମାନ ଏକାଠି ଗଦା ହେଲେ – ଅର୍ଥ, ଅଶ୍ୱାରୋହୀ ପୋଷାକ, ଢାଲ, ଖଡ୍‌ଗ, ଛୁରିକା ଓ ଘୋଡ଼ା ଇତ୍ୟାଦି । ଉପଯୁକ୍ତ ସମୟରେ ଏହା ବିଧବା ପତ୍ନୀ ବା ନିକଟତମ ସମ୍ପର୍କୀୟଙ୍କୁ ଦିଆଯିବ । ଗରମ ପ୍ରବଳ ହେଉଥିଲା, ଏଣୁ କେହି ଯେପରି ନିଜର ବିଶ୍ରାମରୁ ବଂଚିତ ନ ହୁଅନ୍ତି, ସେଥିପାଇଁ ଏହି କାର୍ଯ୍ୟକୁ ଚାରିଟା ବେଳଯାଏ ଗଡ଼ାଇ ଦିଆଗଲା । ନୋଲାନ୍ ଦକ୍ଷିଣ ଆମେରିକୀୟ ଢଙ୍ଗରେ ସେମାନଙ୍କୁ ଆହୁରି ଘଣ୍ଟାଏ ଅପେକ୍ଷା କରାଇଲେ । ସମ୍ଭବତଃ ସେ ତାଙ୍କର ଅଫିସରମାନଙ୍କ ସହ ଏହି ବିଷୟ ଆଲୋଚନା କରୁଥିଲେ, ତାଙ୍କ ଅଙ୍ଗରକ୍ଷୀ ଚା'ପାତ୍ର ଧରି ଭିତର ବାହାର ହେଉଥିଲେ ।

ତମ୍ବୁ ସାମ୍ନାରେ ମାଟି ରାସ୍ତା ଦୁଇପଟେ ବନ୍ଦୀମାନେ ଠିଆ ହୋଇ ଘଟଣାଟିକୁ ସହଜ କରିବା ପାଇଁ ପଛପଟେ ହାତ ବନ୍ଧା ହୋଇଥିବା ସତ୍ତ୍ୱେ ମାଟି ଉପରେ ଆଣ୍ଠୁ ଯାକି ବସି ପଡ଼ିଥିଲେ । ସେମାନଙ୍କ ଭିତରୁ କେତେଜଣ ଗୁଡ଼ାଏ ଗାଳିର ସ୍ରୋତ ମାଧ୍ୟମରେ ନିଜ ଅନୁଭବକୁ ପ୍ରକାଶ କରୁଥିଲେ, ଜଣେ ବାରମ୍ବାର ଭଗବାନଙ୍କୁ ପ୍ରାର୍ଥନା କରୁଥିଲେ,

ଅଧିକାଂଶ ପ୍ରାୟ ସ୍ତବ୍ଧ ହୋଇ ଯାଇଥିଲେ । ସେମାନେ ଅବଶ୍ୟ ସିଗାରେଟ୍ ଟାଣିବାର ତ ନଥିଲା, ସେମାନେ ଆଉ ପ୍ରତିଯୋଗିତାକୁ ବି ଖାତିର୍ କରୁ ନଥିଲେ, କିନ୍ତୁ ସମସ୍ତେ ଅନାଇ ରହିଥିଲେ ।

'ସେମାନେ କେଉଁ ଦିନ ମୋରି ତଣ୍ଟି ବି କାଟିଦେବେ ।' ଦର୍ଶକମାନଙ୍କ ଭିତରୁ ଜଣେ ପ୍ରତିହିଂସାରେ କହିଲା ।

'ନିଶ୍ଚୟ, କିନ୍ତୁ ଆହୁରି ଅନେକ ଲୋକଙ୍କ ସହିତ,' ତାଙ୍କ ପାଖ ଲୋକଟି କହିଲା ।

'ତୁମରି ପରି ।' ପ୍ରଥମଟି ଜବାବ୍ ଦେଲା ।

ସର୍ଜେଣ୍ଟ ଆସି ନିଜ ଛୁରୀରେ ଧୂଳିରାସ୍ତା ଉପରେ ଗାରଟିଏ ଟାଣିଦେଲେ । ସିଲ୍‌ଭେରା ଓ କାର୍ଡୋସୋଙ୍କର କଚଟି ଖୋଲା ହୋଇଥିଲା ଯେପରି ସେମାନେ ମୁକ୍ତ ଭାବରେ ଦୌଡ଼ି ପାରିବେ । ସେ ଦୁହିଁଙ୍କ ମଧ୍ୟରେ ପ୍ରାୟ ପାଞ୍ଚଗଜ ବ୍ୟବଧାନ ଥିଲା । ଜଣକ ପ ର ଜଣେ ଦି'ଜଣ ଯାକ ଗୋଡ଼ରେ ଦାଗଟିକୁ ଦେଖିନେଲେ । ଦୁଇଜଣ ଅଫିସର ଆସି ଦୁହିଁଙ୍କୁ କହିଲେ, ସେ ଦୁହେଁ ଯେପରି ସମସ୍ତଙ୍କ ନାକ ନିଶ ତଳେ ନ ପକାନ୍ତି, କାରଣ ପ୍ରତ୍ୟେକ ସେମାନଙ୍କ ଉପରେ କୁଆଡ଼େ ଗଭୀର ବିଶ୍ୱାସ ରଖିଥିଲେ । ଆଉ ଯେଉଁ ବାଜି ରଖା ହୋଇଥିଲା, ସେହି ଅର୍ଥର ପରିମାଣ ବେଶ୍ ବଡ଼ ଗଦାଟାଏ ହୋଇଥିଲା ।

ସିଲ୍‌ଭେରା ଭାଗ୍ୟକୁ ଶଙ୍କରା ନୋଲାନ୍ ତାଙ୍କ ହତ୍ୟାକାରୀ ହେବାର ଗୁଳା ଉଠିଲା । ତାଙ୍କର ପୂର୍ବପୁରୁଷ ନିଃସନ୍ଦେହରେ କାପ୍‌ଟେନ୍ ପରିବାରର ଦାସ ଥିଲେ ଓ ସେଥିପାଇଁ ତାଙ୍କ ନାମ ନେଇଥିଲେ । କାର୍ଡୋସୋଙ୍କ ଭାଗ୍ୟକୁ ଲୋହିତ ସେନାନୀର ତଣ୍ଟିକଟା ଅଫିସର ପଡ଼ିଲେ । କୋରିଏନ୍ତର ଏହି ବାସିନ୍ଦା ଦୀର୍ଘକାଳ ଧରି ଦୋଷୀକୁ ଆଶ୍ୱାସନା ଦେବାକୁ ଯାଇ ତା' କାନ୍ଧରେ ହାତ ଥାପୁଡ଼ାଇ କହୁଥିଲେ, 'ସାହସ ରଖ ବନ୍ଧୁ, ନାରୀମାନଙ୍କ ପ୍ରସବ ଯନ୍ତ୍ରଣା ଏହାଠାରୁ ବେଶ୍ କଷ୍ଟଦାୟକ ।'

ସେମାନଙ୍କ ଦେହର ଉପରିଭାଗ ଆଗକୁ ନଇଁ ଯାଇଥିଲା । ଦୁଇଟି ବ୍ୟାଘ୍ର ମଣିଷ ପରସ୍ପର ଆଡ଼କୁ ଅନାଇ ନଥିଲେ । ନୋଲାନ୍ ସଙ୍କେତ ଦେଲେ ।

ଅହଙ୍କାରରେ ଫୁଲି ଆକର୍ଷଣର କେନ୍ଦ୍ରସ୍ଥଳୀ ହେବାକୁ, ଜାରଜ ଅତି ଆଗ୍ରହରେ ନିଜ କାମକୁ ଅତି ବେଶୀ କରି ପକାଇଲେ, ଆଉ ସେ ସିଲ୍‌ଭେରାର ଏ କାନରୁ ସେ କାନ ପର୍ଯ୍ୟନ୍ତ ବିରାଟ ଏକ କ୍ଷତ ଖୋଲିଦେଲେ । କୋରିଏନ୍ତବାସୀ ତାଙ୍କ କାମ ସୂକ୍ଷ୍ମ ସରୁ ଏକ କ୍ଷତରେ ସମାପନ କଲେ । ଦୁହିଁଙ୍କ ତଣ୍ଟିରୁ ରକ୍ତ ପିଚକାରୀ ମାରି ବାହାରି ଆସିଲା । ତଳେ ମୁହଁ ମାଡ଼ି ପଡ଼ିଯିବା ଆଗରୁ କେଇପାଦ ସେମାନେ ଆଗକୁ ଧସେଇ ଯାଇଥିଲେ । କାର୍ଡୋସୋ ପଡ଼ି ଗଲାବେଳକୁ ବାହୁଦ୍ୱୟ ମେଲାଇ ଦେଇଥିଲେ । ସମ୍ଭବତଃ ଜାଣି ନଥିଲେ ଯେ ସେ ଜିତି ଯାଇଥିଲେ ।

■■■

*ଅନୁବାଦ* **ଶକୁନ୍ତଳା ବଳିଆରସିଂହ**

# ଚିନୁଆ ଆଚିବି

(ଆଲ୍‌ବର୍ଟ) ଚିନୁଆ (ଲୁମୋଗୁ) ଆଚେବି ଏକାଧାରରେ ଜଣେ ଔପନ୍ୟାସିକ, କବି, କଥାକାର, ସମାଲୋଚକ, ସମ୍ପାଦକ ଓ ଶିଶୁ ସାହିତ୍ୟିକ । ଜନ୍ମ ୧୯୩୦ ମସିହାରେ, ଆଫ୍ରିକାର ନାଇଜେରିଆଠାରେ । ଆଧୁନିକ ଆଫ୍ରିକୀୟ ସାହିତ୍ୟର ଜଣେ ମହାନ୍ ସ୍ରଷ୍ଟା ଭାବେ ସେ ସାରା ବିଶ୍ୱରେ ସମ୍ମାନିତ । ତାଙ୍କ ଉପନ୍ୟାସରେ ନାଇଜେରିଆରେ ୟୁରୋପୀୟ ଉପନିବେଶବାଦ, ସ୍ୱାଧୀନତାର ସଂଘର୍ଷ ପୁଣି ନାଇଜେରିଆର ଆଦିମ ଅଧିବାସୀମାନଙ୍କ ଜୀବନ, ସମାଜ, ସଂସ୍କୃତି ଉପରେ ଉପନିବେଶବାଦର କ୍ଷୟକାରୀ ପ୍ରଭାବ– ଏ ସବୁର ଏକ ସତ୍ୟନିଷ୍ଠ ଅନ୍ତରଙ୍ଗ ଚିତ୍ର ଥାଏ । ୟୁରୋପୀୟ ଶ୍ୱେତକାୟମାନଙ୍କର ଶାସନ ଓ ସଂସ୍କୃତି ସ୍ୱୟଂସମ୍ପୂର୍ଣ୍ଣ ଜୀବନ ଯାପନ କରୁଥିବା ଆଫ୍ରିକୀୟ ଅଧିବାସୀମାନଙ୍କ ଭିତରେ ଯେଉଁ ସାମାଜିକ ଓ ମନସ୍ତାତ୍ତ୍ୱିକ ଦ୍ୱନ୍ଦ୍ୱ ସୃଷ୍ଟି କରିଥିଲା ଓ ଆଫ୍ରିକୀୟ ଆଦିମ ଜନସଚେତନକୁ କିଭଳି ଭାବେ ବିପର୍ଯ୍ୟସ୍ତ କରିଥିଲା, ଏହାହିଁ ତାଙ୍କ ଉପନ୍ୟାସର ମୂଳ ଅନ୍ୱେଷଣ । ପ୍ରାକ୍ ଔପନିବେଶିକ ପାରମ୍ପରିକ ଆଦିବାସୀ ଜୀବନ, ମୂଲ୍ୟବୋଧ, ସଂସ୍କୃତି ଉପନିବେଶ ସ୍ଥାପନ ପରେ କିଭଳି ପରିବର୍ତ୍ତିତ ହୋଇଛି – ତାହାହିଁ ତାଙ୍କ ଉପନ୍ୟାସର ମୁଖ୍ୟ ପ୍ରସଙ୍ଗ । ନିଜ ରାଜ୍ୟ ନାଇଜେରିଆର ଇବୋ ଜନଜାତି ପରମ୍ପରା ଓ ଜୀବନଧାରା ଉପରେ ବସ୍ତୁବାଦୀ ୟୁରୋପୀୟ ରାଜନୀତି, ଆଦର୍ଶବାଦ, ସଂଗଠିତ ଖ୍ରୀଷ୍ଟଧର୍ମର ପ୍ରଭାବ ଓ ଏସବୁରରେ ପରିବର୍ତ୍ତିତ ଓ ବିପର୍ଯ୍ୟସ୍ତ ଜୀବନର କରୁଣ, ଦୁଃଖଦ ପରିଣତି ନେଇ ଗଢ଼ି ଉଠେ ତାଙ୍କର କାହାଣୀ ।

ପ୍ରଥମ ଉପନ୍ୟାସ 'ଥିଂସ୍ ଫଲ୍ ଆପାର୍ଟ' ପ୍ରକାଶିତ ହୁଏ ୧୯୫୮ ମସିହାରେ, ସମକାଳୀନ ଆଫ୍ରିକୀୟ ସାହିତ୍ୟରେ ଏକା ଏକ

କ୍ଲାସିକ୍ ଭାବେ ପରିଗଣିତ । ୧୯୬୦ରେ ପ୍ରକାଶ ପାଏ ଉପନ୍ୟାସ 'ନୋ ଲଙ୍ଗର୍ ଆଟ୍ ଇଜେ', ତୃତୀୟ ଉପନ୍ୟାସ, 'ଆରୋ ଅଫ୍ ଗଡ୍' ପ୍ରକାଶିତ ହୁଏ ୧୯୬୪ରେ ଓ ପରେ ପରେ 'ମ୍ୟାନ୍ ଅଫ୍ ଦି ପିପୁଲ୍' ପ୍ରକାଶିତ ହୁଏ ୧୯୬୬ରେ । ଥିଂସ୍ ଫଲ୍ ଆପାର୍ଟ ଓ ଆରୋ ଅଫ୍ ଗଡ୍‌ରେ ଅଛି ପ୍ରାକ୍ ଔପନିବେଶିକ ଆଫ୍ରିକାର ଚିତ୍ର, ପାରମ୍ପରିକ ବିପର୍ଯ୍ୟସ୍ତ ଆଫ୍ରିକୀୟ ସଂସ୍କୃତିର ବିଦେଶୀ ୟୁରୋପୀୟ ସଂସ୍କୃତିକୁ ପ୍ରତିରୋଧ କରିବାର ବ୍ୟର୍ଥତା । ସେହିଭଳି ନୋ ଲଙ୍ଗର ଆଟ୍ ଇଜେ ଓ ମ୍ୟାନ୍ ଦି ପିପୁଲ୍‌ରେ ରହିଛି ପାଶ୍ଚାତ୍ୟ ସଂସ୍କୃତିର ବସ୍ତୁବାଦୀ ପ୍ରଭାବ ଓ ସ୍ୱାଧୀନତାର ପୃଷ୍ଠଭୂମିରେ ନାଇଜେରୀୟ ଯୁବକଙ୍କ ଉପରେ ଏହାର ଅନିଷ୍ଟକାରୀ ପ୍ରଭାବ । ସେହିଭଳି ତାଙ୍କର କେତେକ ଗ୍ରନ୍ଥ ଖ୍ରୀଷ୍ଟମାସ୍ ଇନ୍ ବାୟାଫ୍ରା ଆଣ୍ଡ୍ ଅଦର୍ ପୋଏମ୍‌ସରେ ରହିଛି ନାଇଜେରୀୟ ଗୃହଯୁଦ୍ଧର ଶୀକାର ମଣିଷର ଏକ ଦୁଃସହ ମାନସିକ ଯନ୍ତ୍ରଣାର ଚିତ୍ର ।

ସେହିଭଳି 'ଗାର୍ଲସ୍ ଆଟ୍ ୱାର୍ ଆଣ୍ଡ ଅଦର୍ ଷ୍ଟୋରିଜ୍'ରେ ରହିଛି ଯୁଦ୍ଧ ଓ ଜାତୀୟତାବାଦର ମୋହଭଙ୍ଗ । ୧୯୭୪ରେ ପ୍ରକାଶିତ ଏହି ସଂକଳନର ଅନ୍ୟତମ ଗଳ୍ପ 'ଭୋଟର୍'ର ଓଡ଼ିଆ ଅନୁବାଦ – ଭୋଟର ।

# ଭୋଟର

ରୁଫସ୍ ଓ କେକେ । ରୁଫ୍' ତା' ଗାଁର ଜଣେ ଜନପ୍ରିୟ ବ୍ୟକ୍ତି ଥିଲା । ଲୋକେ ଏହା କଥାରେ ବ୍ୟକ୍ତ କରୁନଥିଲେ ବି ଜଣେ ଉଦ୍ୟମୀ ଓ ଦୀପ୍ତିବାନ ଯୁବକ ହିସାବରେ ତା'ର ପ୍ରଶଂସା କରୁଥିଲେ । ଅନ୍ୟ ଯୁବକମାନଙ୍କ ଭଳି କାମଧନ୍ଦା ଅନ୍ୱେଷଣରେ ନିଜ ଗାଁ ଛାଡ଼ି ନଥିଲା । ରୁଫ୍ କୌଣସି କୁଟିଳ ଲୋକ ମଧ୍ୟ ନଥିଲା । ସମସ୍ତେ ଜାଣିଥିଲେ ଯେ ପୋର୍ଟ ହାର୍‌କଟ୍‌ରେ ସାଇକେଲ୍ ମରାମତିରେ ଦୁଇବର୍ଷ ଧରି ତାଲିମ୍ ନେବା ସତ୍ତ୍ୱେ ନିଜର ଉଜ୍ଜ୍ୱଳ ଭବିଷ୍ୟତକୁ ଜଳାଞ୍ଜଳି ଦେଇ ଏଭଳି ଏକ କଠିନ ସମୟରେ ନିଜ ଗାଁକୁ ଦିଗ୍‌ଦର୍ଶନ ଦେବା ପାଇଁ ଫେରି ଆସିଥିଲା । ଏହାର ଅର୍ଥ ନୁହେଁ ଯେ ତା'ର ଗାଁ 'ଉମୁ ଓ ଫିଆ' ବେଶୀ କିଛି ଦିଗ୍‌ଦର୍ଶନ ଆଶା କରୁଥିଲା । ଉମୁ ଓ ଫିଆର ସବୁ ଲୋକ ପିପୁଲ୍‌ସ ଆଲିଅନ୍‌ସ ପାର୍ଟିର ଅନୁଗାମୀ ଥିଲେ ଓ ଗାଁର ଦୀପ୍ତିବାନ୍ ପୁରୁଷ ମହାମାନ୍ୟ ମାର୍କସ ଇବେ ବହିର୍ଗାମୀ ମନ୍ତ୍ରୀମଣ୍ଡଳରେ ସଂସ୍କୃତିମନ୍ତ୍ରୀ ଥିଲେ । ଏହି ନିର୍ବାଚନରେ ମଧ୍ୟ ଏହି ଦଳ ପୁନର୍ବାର କ୍ଷମତାକୁ ଆସିବା ପ୍ରାୟତଃ ନିଶ୍ଚିତ ଥିଲା । ଏହା ନିଃସନ୍ଦେହ ଥିଲା ଯେ ମାନ୍ୟବର ମନ୍ତ୍ରୀ ମହୋଦୟ ଏଥର ମଧ୍ୟ ତାଙ୍କ ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହୋଇ ଆସିବେ । ତାଙ୍କୁ ପ୍ରତିରୋଧ କରିବା ଅର୍ଥ ମାଛିଟିଏ ଗୋବର ଗଦାକୁ ଘୁଞ୍ଚାଇବା ଭଳି ଅପଚେଷ୍ଟା । ପୁଣି ଦଳେ ସମ୍ପୂର୍ଣ୍ଣ ନୂଆ ଲୋକ ପକ୍ଷରେ ଏଭଳି କାମ କରିବା ନିଶ୍ଚିତ ଭାବେ ହାସ୍ୟାସ୍ପଦ ।

ଆଶାନୁରୂପ ଭାବେ ଆଗାମୀ ନିର୍ବାଚନରେ ରୁଫ୍ ମାନ୍ୟବର ମନ୍ତ୍ରୀଙ୍କ ପାଇଁ କାମ କରୁଥିଲା । ସେ ଗାଁ ସ୍ଥାନୀୟ ଓ ରାଷ୍ଟ୍ରସ୍ତର ନିର୍ବାଚନ ପ୍ରଚାରରେ ଜଣେ ନିପୁଣ ବ୍ୟକ୍ତି ଥିଲା । ସେ ଯେ କୌଣସି ମୁହୂର୍ତ୍ତରେ ଭୋଟରମାନଙ୍କ ମିଜାଜ୍ ଓ ଚିନ୍ତାଧାରା ବିଷୟରେ ଠିକ୍ ଠିକ୍ କହି ପାରୁଥିଲା । ବିଗତ ନିର୍ବାଚନଠାରୁ ଏହି ନିର୍ବାଚନରେ ଉମୁ ଓ ଫିଆ ଭୋଟରମାନଙ୍କ ମନୋଭାବର ଯେ ଏକ ଆମୂଳଚୂଳ ପରିବର୍ତ୍ତନ ଘଟିଛି, ଏହା ସେ ମାର୍କସ୍‌ଙ୍କୁ ସାବଧାନ କରିଥିଲା ।

ଏଇ ପାଞ୍ଚବର୍ଷର ରାଜନୀତି ଭିତରେ ମାର୍କସ ଧନସମ୍ପତ୍ତି, ମୁଖ୍ୟ ଆଖ୍ୟା, ଡକ୍ଟରେଟ୍ ଡିଗ୍ରୀ ଓ ଆହୁରି ଅନେକ ସମ୍ମାନର ଅଧିକାରୀ ହୋଇଛି । ଗାଁ ଲୋକେ ଏସବୁ ଜିନିଷ ଠିକ୍ ଭାବେ ବୁଝି ପାରୁ ନଥାନ୍ତି, କାରଣ ସରଳ ଗ୍ରାମବାସୀଙ୍କ ହିସାବରେ ଜଣେ ଡାକ୍ତରର

କାମ ହେଲା କେବଳ ମାତ୍ର ରୋଗୀର ରୋଗ ଉପଶମ କରିବା । ପୁଣି ଏସବୁ ସମ୍ମାନ ଓ ଫାଇଦା ପାଇଥିବା ଲୋକକୁ କେବଳ ସେମାନେ ହିଁ ପାଞ୍ଚବର୍ଷ ପୂର୍ବେ ମାଗଣାରେ ଭୋଟ୍ ଦେଇ ଜିତେଇଥିଲେ । ଏଣୁ ଏଥରକ ସେମାନେ ନିଜର ଭୋଟ୍‌କୁ ଏକ ଭିନ୍ନ ଉପାୟରେ ବିନିଯୋଗ କରିବା ପାଇଁ ପ୍ରସ୍ତୁତ ଥିଲେ ।

ସେମାନଙ୍କ କହିବା କଥା ହେଲା, ମାର୍କସ ଇବେ ଜଣେ ସଫଳ ମିଶନ୍ ସ୍କୁଲ୍ ଶିକ୍ଷକ ମଧ୍ୟ ନଥିଲେ । ଉମୁ ଓ ଫିଆକୁ ରାଜନୀତି ଆସିଲା ପରେ ସେ ଏଥିରେ ଯୋଗ ଦେଇ ନିଜ ବୁଦ୍ଧିମତ୍ତାର ପରିଚୟ ଦେଇଥିଲେ । କେତେକ କହନ୍ତି, ଜଣେ ଶିକ୍ଷୟିତ୍ରୀକୁ ଗର୍ଭବତୀ କରିଥିବା ଅଭିଯୋଗରେ ସ୍କୁଲ୍‌ରୁ ତଡ଼ା ଖାଇବା ଭୟରେ ସେ ରାଜନୀତିରେ ଯୋଗ ଦେଇଥିଲେ । ଦୁଇ ଦୁଇଟି ଲମ୍ବା କାର୍ ଓ ଗାଁର ସବୁଠୁ ବିରାଟ ପ୍ରକୋଷ୍ଠର ମାଲିକ ଥାଇ ସେ ଆଜି ସମ୍ମାନନୀୟ ମୁଖ୍ୟ । ତଥାପି ବି ସ୍ୱୀକାର କରିବାକୁ ହେବ ଯେ ମାର୍କସ ଏସବୁ ସଫଳତାରେ ବୁଡ଼ି ରହିନଥିଲେ । ସେ ସବୁବେଳେ ଲୋକମାନଙ୍କ ପାଇଁ ଉତ୍ସର୍ଗୀକୃତ ଥିଲେ । ଯେତେବେଳେ ପାରିବେ ରାଜଧାନୀର ସୁଖସୁବିଧା ଛାଡ଼ି ଦେଇ ସେ ଆସି ଗାଁରେ ବିନା ବିଦ୍ୟୁତ୍ ଓ ଜଳ ଯୋଗାଣ ବ୍ୟବସ୍ଥା ଭିତରେ ବି ରହି ଯାଉଥିଲେ । ଅବଶ୍ୟ ଏବେ ସେ ବିଦ୍ୟୁତ୍ ଯୋଗାଣ ପାଇଁ ଏକ ଘରୋଇ ପ୍ଲାଣ୍ଟ ସ୍ଥାପନ କରିଥିଲେ । ପକ୍ଷୀଟିଏ ଖାଇପିଇ ଦେଇ ନିଜର ଜୀବାତ୍ମାକୁ ଆହ୍ୱାନ କଲାଭଳି ନ କରି ସେ ବରଂ ନିଜ ସୌଭାଗ୍ୟର ଉତ୍ସକୁ ଠିକ୍ ଚିହ୍ନୁଥିଲେ ! ତେଣୁ ସେ ନିଜର ନୂଆ ଘରକୁ ଗାଁର ସମ୍ମାନାର୍ଥେ 'ଉମୁ ଓ ଫିଆ ମେନ୍‌ସନ୍' ନାମରେ ନାମିତ କରି ଆର୍କିବିସପ୍ ଏହାକୁ ଉଦ୍‌ଘାଟନ କଲାଦିନ ପାଞ୍ଚଟି ବଳଦ ଓ ଅସଂଖ୍ୟ ଛେଳି ମାରି ଗାଁଲୋକଙ୍କୁ ଆପ୍ୟାୟିତ କରିଥିଲେ ।

ପ୍ରତ୍ୟେକ ତାଙ୍କ ପ୍ରଶଂସାରେ ଶତମୁଖ ହୋଇ ଉଠିଲେ । ଜଣେ ବୃଦ୍ଧ ବ୍ୟକ୍ତି କହିଲେ, 'ଆମର ପୁଅ ଜଣେ ଭଲ ଲୋକ । ସାମ୍‌ନାକୁ ଖାଦ୍ୟ ଆସିଗଲା କ୍ଷଣି ଜମି ଆଡ଼କୁ ପଛ କରି ଦେଉଥିବା ମାଷ୍ଟର ଭଳି ସେ ନୁହଁନ୍ତି ।' ଭୋଜିଭାତ ସରିଲା ପରେ ଗାଁ ଲୋକେ କୁହାକୁହି ହେଲେ ଯେ ସେମାନେ ପୂର୍ବରୁ ଭୋଟ କାଗଜର ଉଚିତ୍ ମୂଲ୍ୟ ବୁଝି ପାରି ନ ଥିଲେ, କିନ୍ତୁ ଏଥର ସେମାନେ ସେଭଳି କରିବା ଉଚିତ୍ ନୁହଁ । ଅବଶ୍ୟ ମାର୍କସ ଇବେ ମଧ୍ୟ ଏଥିପାଇଁ ଅପ୍ରସ୍ତୁତ ନଥିଲେ । ସେ ପାଞ୍ଚମାସର ଦରମା ଆଗତୁରା ଉଠାଇ ଦେଇ ତାଙ୍କ ପ୍ରଚାରକମାନଙ୍କୁ ସିଲିଂ ଭର୍ତ୍ତି ବେଗ୍ ଗୋଟେ ଲେଖାଏଁ ଦେଇ ଆସନ୍ତା ନିର୍ବାଚନ ଯୁଦ୍ଧ ପାଇଁ ପ୍ରସ୍ତୁତ କରିଥିଲେ । ଦିନ ବେଳା ସେ ନିଜେ ଓ ରାତିରେ ତାଙ୍କର ଦକ୍ଷ ଅନୁଗତମାନେ ଗୁପ୍ତ ଭାବରେ ନିର୍ବାଚନ ପ୍ରଚାର କରିବା ଆରମ୍ଭ କରି ଦେଇଥିଲେ । ରୁଫ୍ ସବୁ ପ୍ରଚାରକମାନଙ୍କ ଭିତରେ ସବୁଠୁ ବେଶୀ ଅନୁଗତ ଓ ବିଶ୍ୱସ୍ତ ଥିଲା ।

ଜଣେ ଉଚ୍ଚପଦସ୍ଥ ପାରମ୍ପରିକ ଆଖ୍ୟାଧାରୀ ବ୍ୟକ୍ତି ଓଗ୍‌ବୁଏଫି ଏଜେନ୍ୱା ଘରେ ସେ ଦଳେ ବୟୋଜ୍ୟେଷ୍ଠ ଲୋକଙ୍କୁ କହୁଥିଲା, 'ଆମେ ନିଜ ଗାଁର, ଆମ ଭିତରୁ ଜଣଙ୍କୁ

ମନ୍ତ୍ରୀ ହିସାବରେ ପାଇଛୁଁ । ଏହାଠାରୁ ବଳି ଆଉ କ'ଣ ବା ଅଧିକ ସମ୍ମାନ ଗାଁ ପାଇଁ ହୋଇପାରେ ? ଆପଣମାନେ କେବେ ଚିନ୍ତା କରିଛନ୍ତି କାହିଁକି ଆମ ଗାଁ ସ୍ୱତନ୍ତ୍ର ସମ୍ମାନ ପାଇଛି ? କାରଣ ହେଲା ଆମ ଗାଁରେ ପ୍ରୋଗ୍ରେସିଭ୍ ଆଲାଏନ୍‌ସ ପାର୍ଟି ଶାସନ ଅବ୍ୟାହତ ରହିବ । ସେମାନେ ପ୍ରତିଶ୍ରୁତି ଦେଇଥିବା ପାଇପ୍ ଜଳ ଯୋଗାଣ ବ୍ୟବସ୍ଥା ବିଷୟରେ ଭାବି ଦେଖନ୍ତୁ ।'

ରୁଫ୍ ଓ ତା' ସହକାରୀ ବ୍ୟତୀତ ସେହି କୋଠରୀରେ ଆଉ ପାଞ୍ଚଜଣ ବୟୋଜ୍ୟେଷ୍ଠ ଲୋକ ଥିଲେ । ମଝିରେ ସରୁ ଭଙ୍ଗା କାଚ ଥିବା ହରିକେନ୍ ଲେମ୍ପଟି ହଳଦିଆ ଧୂଆଁ ନିର୍ଗତ କରି ଚାଲିଥାଏ । ଛୋଟ ଛୋଟ ଷ୍ଟୁଲ୍‌ରେ ବସିଥିବା ସେହି ପାଞ୍ଚଜଣଙ୍କ ସାମ୍ନାରେ ଦୁଇ ସିଲିଂ ଲେଖାଏଁ ପଡ଼ିଥାଏ । ଶକ୍ତ ଅବରୁଦ୍ଧ କବାଟ ବାହାରେ ଜହ୍ନଟି ସିଧା ଚାହିଁ ରହିଥାଏ ।

'ଆମେ ତମର ପ୍ରତ୍ୟେକ କଥାକୁ ସତ ବୋଲି ବିଶ୍ୱାସ କରୁଛୁ । ଆମେ ସମସ୍ତେ ନିଜ ନିଜର ଭୋଟ ମାର୍କସକୁ ଦେବୁ । ତୃପ୍ତିକର ଭୋଜି ଛାଡ଼ି କିଏ ବା କାହିଁକି ଏକ ସାଧାରଣ ପାରମ୍ପରିକ ଭୋଜନ ପାଇଁ ଯିବ ? ମାର୍କସକୁ କହିବ ଆମର ଓ ଆମ ସ୍ତ୍ରୀମାନଙ୍କର ଭୋଟ ସେ ହିଁ ପାଇବ । କିନ୍ତୁ ଆମ କହିବାର ଅର୍ଥ ହେଲା ଯେ ଦୁଇ ସିଲିଂ ବହୁତ ଲଜ୍ଜାଜନକ ହେଉଛି ।' କହିସାରି ଏଜେନ୍ୱା ଲେମ୍ପକୁ ଆହୁରି ପାଖକୁ ଟାଣିଲା ଓ ବଙ୍କାକରି ସେ ଯେ ଦୁଇସିଲିଂ ଠିକ୍ ଦେଖିଛି ପରଖି ନେଲା । ସେ ପୁଣି କହିଲା, 'ହଁ ଦୁଇ ସିଲିଂ ଅତି ଲଜ୍ଜାକର । ଯଦି ମାର୍କସ ଗରିବ ହୋଇଥାନ୍ତେ ଆମର ପୂର୍ବପୁରୁଷଙ୍କ କହିବା ମୁତାବକ ମୁଁ ହିଁ ପ୍ରଥମେ ମୋର ଭୋଟ ତାଙ୍କୁ ମାଗଣାରେ ଦେଇଥାନ୍ତି । କିନ୍ତୁ ମାର୍କସ ଆଜି ଜଣେ ବଡ଼ଲୋକ ଓ ତାଙ୍କର କାମ ମଧ୍ୟ ବଡ଼ବଡ଼ିଆ । ଆମେ ଗତ କାଲି ତ ତାଙ୍କୁ ପଇସା ମାଗି ନଥିଲୁ କି ଆସନ୍ତା ଥର ମଧ୍ୟ ମାଗିବୁ ନାହିଁ । କିନ୍ତୁ ଆଜି ହେଉଛି ଆମର ଦିନ । ଯଦି ଆମେ ଇରୋକୋ ଗଛରେ ଚଢ଼ି ଆବଶ୍ୟକ ମୁତାବକ ଜାଳେଣୀ କାଠ ନଆଣି ପାରିଲୁ ତାହା ଆମର ବୋକାମୀ ହେବ ନାହିଁ କି ?'

ଏଜେନ୍ୱାର ଅର୍ଥପୂର୍ଣ୍ଣ କଥାରେ ରୁଫ୍‌କୁ ରାଜି ହେବାକୁ ପଡ଼ିଲା । ସେ ବି ଏ ଭିତରେ ଅନେକ ଫାଇଦା ଉଠାଇବାରେ ଲାଗିଛି । ଏଇ ଗତକାଲି ହିଁ ସେ ମାର୍କସ୍‌ଙ୍କୁ ତା'ର ପ୍ରଭାବର କାଣିଚାଏ ଦେବା ପାଇଁ କହି ପାରିଥିଲା । ଗତ ରବିବାର ଦିନ ମାର୍କସ୍‌ଙ୍କ ସ୍ତ୍ରୀ (ଯେଉଁ ଶିକ୍ଷୟିତ୍ରୀ ପାଇଁ ମାର୍କସ ବିପଦରେ ପଡ଼ିବା ଉପରେ ଥିଲେ) ରୁଫ୍ ଯେତେବେଳେ ଫ୍ରିଜ୍ ଭିତରୁ ପାଞ୍ଚ ନମ୍ବର ବିଅର୍ ବୋତଲ କାଢ଼ିଲା ମନା କଲା ଏବଂ ଏଥିପାଇଁ ମାର୍କସ୍ ସମସ୍ତଙ୍କ ସାମ୍ନାରେ ତାଙ୍କ ସ୍ତ୍ରୀକୁ ଗାଳି ଦେଇଥିଲେ । ସର୍ବୋପରି ଏହି ନିକଟରେ ରୁଫ୍ ଗୋଟିଏ ଜମି ମୋକଦ୍ଦମାରେ ଜିଣିଥିଲା, କାରଣ ସେ ବିବାଦାସ୍ପଦ ଜାଗାକୁ ନିଜେ ମୋଟର ଚାଳନା କରି ଯାଇଥିଲା । ତେଣୁ ସେ ସେହି ବୟୋଜ୍ୟେଷ୍ଠ ଲୋକମାନଙ୍କ 'ଜାଳେଣୀ କାଠ' ବିଷୟ ଠିକ୍ ବୁଝି ପାରିଥିଲା ।

'ଠିକ୍ କଥା', ଇଂରାଜୀରେ ଆରମ୍ଭ କରି 'ଇବୋ' ଭାଷାକୁ ଫେରି ଆସି ରୁଫ୍ କହିଲା, 'ଆମେ ଛୋଟ ଛୋଟ କଥାରେ କଳହ କରିବା ଉଚିତ୍ ନୁହେଁ ।' ଠିଆ ହୋଇ ନିଜର ପୋଷାକ ସଜାଡ଼ି ନେଇ ସେ ପୁଣି ଥରେ ବେଗ୍ ଭିତରକୁ ହାତ ପୂରାଇଲା । ତା'ପରେ ଧର୍ମଯାଜକଟିଏ ଭଳି ସେ ଏଜେନ୍ସା ଓ ଅନ୍ୟ ସମସ୍ତଙ୍କ ସାମ୍ନା ଚଟାଣ ଉପରେ ଆଉ ଗୋଟିଏ ଲେଖାଏଁ ସିଲିଂ ରଖିଦେଲା, କିନ୍ତୁ କାହାରି ହାତରେ ଧରାଇଲା ନାହିଁ । ସେହି ଲୋକମାନେ ଏଯାଏଁ ପଇସା ନବାକୁ ମଙ୍ଗି ନଥିଲେ, ମାତ୍ର ଅଧିକ ଗୋଟେ ଲେଖାଏଁ ସିଲିଂ ଦେଖି ମୁଣ୍ଡ ଟୁଙ୍ଗାରିଲେ । ରୁଫ୍ ପୁଣିଥରେ ଛିଡ଼ା ହୋଇ ପ୍ରତ୍ୟେକଙ୍କ ସାମ୍ନାରେ ଆଉ ଗୋଟିଏ ଲେଖାଏଁ ସିଲିଂ ରଖିଦେଲା ।

କାମ ହୋଇଯିବାର ଆଶାରେ ତା'ର ଔଦ୍ଧତ୍ୟ ସ୍ପଷ୍ଟ କୃତ୍ରିମତାର ରୂପ ନେଲା । ଶାଳୀନତା ନ ହରାଇ କେତେ ଆଗକୁ ବଢ଼ାଯାଇପାରେ, ତାହା ସେହି ବୟୋଜ୍ୟେଷ୍ଠ ଲୋକମାନଙ୍କୁ ଠିକ୍ ଜଣାଥିଲା । ତେଣୁ ରୁଫ୍ ଯେତେବେଳେ କହିଲା, 'ତୁମେ ଯଦି ଚାହୁଁଛ ଯାଅ ତୁମମାନଙ୍କ ଭୋଟ ସବୁ ଶତ୍ରୁପକ୍ଷକୁ ଦେଇଦିଅ ।' ସେମାନେ ପ୍ରତ୍ୟେକେ ଗୋଟେ ଲେଖାଏଁ ଉପଯୁକ୍ତ ବକ୍ତବ୍ୟ ଦେଇ ତାକୁ ଶାନ୍ତ କଲେ । ଅନ୍ତିମ ଲୋକ କହିସାରିବା ଭିତରେ ନିଜର ସମ୍ମାନ ବିଶେଷ ନ ହରାଇ ସେହି ସିଲିଂସବୁ ଚଟାଣରୁ ଗୋଟାଇବା ସମ୍ଭବ ଥିଲା ।

ରୁଫ୍ ସୂଚାଇଥିବା ଶତ୍ରୁ ପକ୍ଷ ଥିଲା ଉପକୂଳବର୍ତ୍ତୀ ଆଦିବାସୀମାନଙ୍କର ପ୍ରୋଗ୍ରେସିଭ୍ ଅର୍ଗାନାଇଜେସନ୍ ପାର୍ଟି । ସେମାନେ ନିଜକୁ ରାଜନୈତିକ, ସାଂସ୍କୃତିକ, ସାମାଜିକ ତଥା ଧର୍ମକ୍ଷେତ୍ରରେ ସମ୍ପୂର୍ଣ୍ଣ ବିଲୋପକୁ ପ୍ରତିହତ କରିବା ପାଇଁ ସଂଗଠିତ ହୋଇଥିଲେ ।

ଏହି ନିର୍ବାଚନରେ ପ୍ରୋଗ୍ରେସିଭ୍ ଅର୍ଗାନାଇଜେସନ୍ ପାର୍ଟି ଜିତିବା ସମ୍ଭବ ନ ଥିଲା । କାରଣ ପ୍ରୋଗ୍ରେସିଭ୍ ଏଲିଆନ୍‌ସ ପାର୍ଟି ବିପକ୍ଷରେ ସିଧାସଳଖ ପ୍ରତିଦ୍ୱନ୍ଦ୍ୱିତା କରୁଥିଲା । ତଥାପି କେତେଜଣ ଗାଉଁଲି ଶଠ ଓ ଦୁର୍ଜନ ଲୋକଙ୍କୁ କାର୍ ଓ ଡାକବାଜି ଯନ୍ତ୍ର ଦେଇ ଏହା ହୋ ହଲ୍ଲା କରାଉଥିଲା । ପ୍ରୋଗ୍ରେସିଭ୍ ଅର୍ଗାନାଇଜେସନ୍ ପାର୍ଟି ଏହି ନିର୍ବାଚନରେ ଡମ୍ଫୁ ଓ ଫିଆ ପାଇଁ କେତେ ଟଙ୍କା ଖର୍ଚ୍ଚ କରୁଛି ଏହା ନିଃସନ୍ଦେହ । ଏହା ମଧ୍ୟ ସୁସ୍ପଷ୍ଟ ଯେ ତା'ର ସ୍ଥାନୀୟ ପ୍ରଚାରକମାନେ ଧନୀ ହୋଇଯିବେ ।

ଗତ ରାତିଯାଏଁ ସବୁକିଛି ରୁଫ୍‌ର ଯୋଜନା ମୁତାବକ ଚାଲିଥିଲା । ତା'ପରେ ତା' ପାଖକୁ ପ୍ରୋଗ୍ରେସିଭ୍ ଅର୍ଗାନାଇଜେସନ୍ ପାର୍ଟି ନିର୍ବାଚନ ଦଳର ଜଣେ ନେତା ଆସିଥିଲେ । ଯଦିଓ ସେ ରୁଫ୍ ପରସ୍ପର ଜଣାଶୁଣା ଓ ସାଙ୍ଗଭଳି, ତଥାପି ବି ସେହି ସାକ୍ଷାତ୍‌ଟି ସମ୍ପୂର୍ଣ୍ଣଭାବେ ବ୍ୟାବସାୟିକ ଥିଲା । କୌଣସି ବାକ୍ୟବ୍ୟୟ ନକରି ରୁଫ୍‌ର ସାମ୍ନା ଚଟାଣ ଉପରେ ପାଞ୍ଚଟି ପାଉଣ୍ଡ ରଖି ଦେଇ ସେ କହିଲେ, 'ଆମେ ତୁମର ଭୋଟ ଚାହୁଁ ।'

ରୁଫ୍ ତା' ଚେୟାର୍‌ରୁ ଉଠି କବାଟ ପାଖକୁ ଗଲା ଓ ତାକୁ ସଯତ୍ନେ ବନ୍ଦ କରିଦେଇ ପୁଣି ନିଜ ଚେଆର ପାଖକୁ ଫେରି ଆସିଲା । ସେହି ସ୍ୱଳ୍ପ ସମୟ ତା' ପାଇଁ ପ୍ରସ୍ତାବଟିର ମୂଲ୍ୟାୟନ କରିବା ପାଇଁ ଯଥେଷ୍ଟ ଥିଲା । ସେ କହୁଥିଲା ବେଳେ ଆଖି ଦୁଇଟି କିନ୍ତୁ ଚଟାଣ ଉପରେ ଥିବା ଲାଲ୍ ନୋଟ୍ ଉପରେ ଲାଖି ରହିଥାଏ । ସେ ନୋଟ୍ ଉପରେ ଥିବା କୋକୋ ଚାଷୀର ଫସଲ ଅମଳର ଦୃଶ୍ୟରେ ସମ୍ମୋହିତ ହୋଇ ଯାଇଥିବା ଭଳି ମନେ ହେଉଥିଲା ।

'ତମେ ଜାଣ ମୁଁ ମାର୍କସ ପାଇଁ କାମ କରେ । ଏଣୁ ଏହା ବହୁତ ଖରାପ ହେବ...' ଅତି ନିଷ୍ପ୍ରଭ ଭାବରେ ରୁଫ୍ କହିଲା ।

'ତମେ ଭୋଟ ଦେବାବେଳେ ମାର୍କସ ସେଠାରେ ନଥିବ । ତମେ ଏହା ନେବ କି ନାହିଁ କହ । ଆମର ଆଜି ରାତିରେ ବହୁତ କାମ ବାକି ଅଛି ।'

'ଏହା କୋଠରୀ ବାହାରକୁ ଶୁଣାଯିବ ନାହିଁ ?' ରୁଫ୍ ପଚାରିଲା ।

'ଆମକୁ ଭୋଟ୍ ଦରକାର, ଗୁଲିଗପରେ ଆମର କ'ଣ ବା ଯାଏ ଆସେ ?'

'ଠିକ୍ ଅଛି'– ଇଂରାଜୀରେ ରୁଫ୍ କହିଲା ।

ଲୋକଟି ତା'ର ସାଥୀମାନଙ୍କୁ କହୁଣୀରେ ଠେଲି ଦେଇ ଲାଲ୍ କପଡ଼ାରେ ଆଚ୍ଛାଦିତ ଜିନିଷଟି ଆଣି ତା'ର ଘୋଡଣୀଟି କାଢ଼ି ଦେଲା । ଏହା ପରସଂଲଗ୍ନ ମାଟି ପାତ୍ରରେ ଥିବା ଦୃଶ୍ୟଟିଏ ଥିଲା ।

''ଏହା ହେଉଛି ମାବାନ୍ତାର 'ଇୟି' । ତୁମେ ଏହାର ଅର୍ଥ ଜାଣ । ଶପଥ କର କି ତୁମେ ମାଡୁକାକୁ ଭୋଟ ଦେବ । ଏହାର ଖିଲାପ୍ କଲେ ଇୟି ଚିହ୍ନଟ କରି ତା'ର କାମ କରିବ ।''

ଏହି 'ଇୟି' ଦେଖିବା କ୍ଷଣି ରୁଫ୍‌ର ହୃଦୟ ସଙ୍କୁଚିତ ହୋଇ ପଡ଼ିଲା, କାରଣ ଏସବୁ ଦିଗରେ ମାବାନ୍ତର ଖ୍ୟାତି ସେ ଜାଣିଥିଲା । ରୁଫ୍ ତୁରନ୍ତ ସିଦ୍ଧାନ୍ତ ନେଇ ପାରୁଥିବା ଲୋକ ଥିଲା । ପୁଣି ଗୋଟିଏ ମାତ୍ର ଭୋଟର ବ୍ୟତିକ୍ରମ ମାର୍କସର ନିଶ୍ଚିତ ବିଜୟ ଉପରେ କ'ଣ ବା ପ୍ରଭାବ ପକାଇ ପାରେ ?

'ମୁଁ ମୋର ଭୋଟ ମାଡୁକା ସପକ୍ଷରେ ଦେବି । ଯଦି ଦେବିନି, ତା'ହେଲେ 'ଇୟି' ଏହା ଚିହ୍ନଟ କରିପାରେ ।'

'ଦାସ୍ ଅଲ୍' କହି ଲୋକଟି ଉଠିଲା ଓ ତା' ସାଥୀମାନଙ୍କ ସହ ଇୟିକୁ ଢାଙ୍କିଦେଇ କାର୍ ପାଖକୁ ଆସିଲା ।

'ତୁମେମାନେ ଜାଣ ଯେ ମାର୍କସ ବିପକ୍ଷରେ ଜିତିବା ମାଡୁକା ପକ୍ଷରେ ଆଦୌ ସମ୍ଭବ ନୁହେଁ ।' –କବାଟ ପାଖକୁ ଛାଡ଼ିବା ବେଳେ ରୁଫ୍ କହିଲା ।

'ସେ ବର୍ତ୍ତମାନ କେତେଟା ଭୋଟ ପାଇବ, ତାହାହିଁ ଯଥେଷ୍ଟ । ଆସନ୍ତା ଥରକୁ ସେ ଆହୁରି ଅଧିକ ଭୋଟ ପାଇବ । ଲୋକେ ଯେତେବେଳେ ଜାଣିବେ ଯେ ସେ ସିଲିଂ ନୁହେଁ, ପାଉଣ୍ଡ ଦିଏ– ସେତେବେଳେ ସେମାନେ ତା' ପ୍ରତି ଅନୁରକ୍ତ ହେବେ ।'

ନିର୍ବାଚନ ଦିନ ସକାଳ ।

ପ୍ରତି ପାଞ୍ଚବର୍ଷରେ ଥରେ ଏହି ମହାନ୍ ଦିନ ଲୋକେ ତାଙ୍କର କ୍ଷମତା ସାବ୍ୟସ୍ତ କରିଥାନ୍ତି । ଘର, କାନ୍ଥ, ଗଛ ଓ ଟେଲିଗ୍ରାଫ୍ ଖମ୍ବରେ ଲାଗିଥିବା ପୋଷ୍ଟର ସବୁ ନିଷ୍ପ୍ରଭ ଓ ମଳିନ ଦେଖାଯାଉଥିଲେ । ଯେଉଁ କେତୋଟି ପୋଷ୍ଟର ଭଲ ଅବସ୍ଥାରେ ଥିଲା ସେମାନେ ପଢ଼ିବା ଲୋକଙ୍କୁ ବାର୍ତ୍ତା ଦେଉଥାନ୍ତି ।

'ପ୍ରୋଗ୍ରେସିଭ୍ ଆଲାଏନ୍‌ସ ପାର୍ଟି (ପାପ୍)କୁ ଭୋଟ ଦିଅନ୍ତୁ ! ପ୍ରୋଗ୍ରେସିଭ୍ ଅର୍ଗାନାଇଜେସନ୍ ପାର୍ଟି (ପୋପ୍)କୁ ଭୋଟ୍ ଦିଅନ୍ତୁ !'

'ପାପ୍ କୁ ଭୋଟ ଦିଅନ୍ତୁ ! ପୋପ୍‌କୁ ଭୋଟ ଦିଅନ୍ତୁ !'

ଛିଣ୍ଡା ପୋଷ୍ଟର ସବୁ ଅଧାଅଧି ବାର୍ତ୍ତା ଦେଉଥାନ୍ତି । ସବୁଥର ଭଳି ମାର୍କସ ଇବେ ଖୁବ୍ ଧୁମ୍‌ଧାମ୍‌ରେ ଭୋଟ ପ୍ରଚାର କରୁଥାନ୍ତି । ସେ ଉମ୍‌ରୁରୁ ଗୋଟିଏ ଉନ୍ନତମାନର ବେଣ୍ଡ ଭଡ଼ା ଆଣି ଭୋଟିଂ ବୁଥ୍‌ଠାରୁ ଆଇନ୍ ଅନୁଯାୟୀ ନିରାପଦ ଦୂରତ୍ୱରେ ରଖିଥିଲେ । ଅନେକ ଗ୍ରାମବାସୀ ହାତରେ ବେଲଟ୍ ପେପର୍ ଧରି ସଙ୍ଗୀତର ତାଳେ ତାଳେ ନାଚି ନାଚି ବୁଥ୍ ଭିତରକୁ ପଶୁଥିଲେ । ମାର୍କସ ଇବେ ତାଙ୍କ ସବୁଜ ରଙ୍ଗର କାର୍ ଭିତରେ ବସି ସ୍ମିତ ହସି ମୁଣ୍ଡ ଟୁଙ୍ଗାରୁ ଥିଲେ । ଜଣେ ଉତ୍‌ଫୁଲ୍ଲିତ ଗ୍ରାମବାସୀ କାର୍ ପାଖକୁ ଆସି ତାଙ୍କ ସାଙ୍ଗରେ ହାତ ମିଳେଇ ଆଗତୁରା ଅଭିନନ୍ଦନ ଜଣାଇଲା । ତା' ଦେଖାଦେଖି ଶହ ଶହ ପ୍ରଶଂସକ ମାର୍କସ ସହିତ ହାତ ମିଳେଇ ଅଭିନନ୍ଦନ ଜଣାଇଲେ ।

ରୁଫ୍ ଓ ତା'ର ଅନ୍ୟ ଆୟୋଜକମାନେ ଗର୍ବିତ ଭଙ୍ଗୀରେ ଏପଟ ସେପଟ ଝାଳନାଳ ହୋଇ ଭୋଟରମାନଙ୍କୁ ଅନ୍ତିମ ପର୍ଯ୍ୟାୟ ଉପଦେଶ ଦେଉଥିଲେ ।

ଦଳେ ଉତ୍ସାହୀ ଓ କୌତୁକପ୍ରିୟ ସ୍ତ୍ରୀ ଲୋକଙ୍କୁ ସେ କହିଲା, 'ଆମ ଚିହ୍ନ ହେଉଛି ମୋଟର୍ କାର୍, ଦେଖ ଭୁଲିଯିବ ନାହିଁ ।'

'ମାର୍କସ ବସିଥିବା ଭଳି ମୋଟର୍ କାର୍ ତ' ?' କୌତୁକ କରି ସେମାନେ ପଚାରିଲେ ।

'ଧନ୍ୟବାଦ ମା, ଏହି କାର୍ ହିଁ ଆମର ଚିହ୍ନ । ବାକ୍‌ସ ଉପରେ ଥିବା କାର୍ ଚିହ୍ନ ହେଉଛି ତୁମର କାର୍ । ମଣିଷମୁଣ୍ଡ ଚିହ୍ନଥିବା ବାକ୍‌ସ ଆଡ଼େ ଦେଖିବ ନାହିଁ । ଏହା ମୁଣ୍ଡ ଠିକ୍ ନଥିବା ଲୋକଙ୍କ ଚିହ୍ନ ।' ଗୋଟେ ନିଃଶ୍ୱାସରେ କହି ପକାଇଲା ରୁଫ୍ ।

ଉଚ୍ଚ କଣ୍ଠରେ ହସି ଲୋକେ ରୁଫ୍‌ର କଥାକୁ ସ୍ୱାଗତ ଜଣାଇଲେ । ତୀବ୍ର ଓ ବ୍ୟସ୍ତ ଚାହାଣୀ ଭିତରେ ରୁଫ୍ ଦେଖିଲା ମନ୍ତ୍ରୀ ମହୋଦୟଙ୍କ ମୁହଁରେ ପ୍ରଶଂସାସୂଚକ ଭାବ ଫୁଟି ଉଠିଛି ।

ଆହୁରି ଉତ୍ସାହର ସହିତ ବେକର ଧମନୀ ଫୁଲାଇ ସେ ବଡ଼ ପାଟିରେ ଚିତ୍କାର କରୁଥାଏ । କାର୍ ଚିହ୍ନରେ ଭୋଟ ଦିଅନ୍ତୁ – କାର୍‌ରେ ଭୋଟ ଦେଲେ ଆପଣମାନେ କାର୍‌ରେ ବସି ବୁଲିବେ ।'

'ଆମେ ନ ପାରିଲେ ବି ଅନ୍ତତଃ ଆମର ଛୁଆପିଲାମାନେ ତ ଚଢ଼ି ପାରିବେ ।' ଜଣେ ବୃଦ୍ଧା କହିଲେ ।

ବେଣ୍ଡରେ ଗୋଟେ ନୂଆ ଧୂନ୍ ଆରମ୍ଭ ହୋଇଗଲା; ଯଦି ଗାଡ଼ିରେ ଚଢ଼ି ପାରୁଛ ତା' ହେଲେ ପାଦରେ ଚାଲିବ କାହିଁକି ?'

ତାଙ୍କର ଆପାତତଃ ଶାନ୍ତ ଓ ଆସ୍ଥାବାଦୀ ସ୍ୱଭାବ ସତ୍ତ୍ୱେ ସବୁ ବିଷୟରେ ଟିଖିନିଖି ଜାଣିବା ପାଇଁ ମାର୍କସ ନିଜ ଜିଦ୍‌ରେ ଅଟଳ ଥିଲେ । ସମ୍ବାଦପତ୍ର ବିବରଣୀ ଅନୁଯାୟୀ ତାଙ୍କର ବିଜୟ ଯେ ନିଶ୍ଚିତ ଏହା ସେ ଜାଣିଥିଲେ । ମାତ୍ର ତାଙ୍କର ଗୋଟିଏ ବି ଭୋଟ୍ ଏପଟ ସେପଟ ହେବାକୁ ସେ ଚାହୁଁ ନଥିଲେ । ତେଣୁ ଭୋଟର୍‌ମାନଙ୍କ ପ୍ରଥମ ପର୍ଯ୍ୟାୟ ଭିଡ଼ ସରିବା ପରେ ସେ ନିଜର ପ୍ରଚାରକମାନଙ୍କୁ ଜଣେ ପରେ ଜଣେ ଭୋଟ୍ ଦେଇଦେବାକୁ କହିଲେ ।

'ରୁଫ୍, ତମେ ପ୍ରଥମେ ଭୋଟ୍ ଦେଇଦେବା ଉଚିତ ହେବ ।' ସେ କହିଲେ ।

ରୁଫ୍ ଭୋଟ୍ ଦେବା ଶୁଣି ଭିତରେ ଶଙ୍କିଗଲା । ମାତ୍ର ଏହା ବାହାରକୁ ଜଣା ପଡ଼ିଲା ନାହିଁ ।

ସକାଳ ସାରା ସେ ତା'ର ଗଭୀର ଚିନ୍ତାକୁ ଅତି ଯତ୍ନରେ ସହିତ ଛପେଇ ରଖିଥିଲା । ଯାହାକି ତା'ଭଳି ଲୋକ ପାଇଁ ଅତି ଅସ୍ୱାଭାବିକ ମନେ ହୋଇଥିଲା ।

ସେ ତା'ର ସ୍ୱାଭାବିକ କ୍ଷିପ୍ରଗତିରେ ବୁଥ୍ ଆଡ଼କୁ ଚାଲିଲା । ଗେଟ୍‌ରେ ଜଣେ ପୋଲିସ୍ ତାକୁ ବେଆଇନ୍ ବେଲଟ୍ ପେପର୍ ଧରିଥିବା ଆଶଙ୍କାରେ ତଦାରଖ କରି ଛାଡ଼ିଦେଲେ । ନିର୍ବାଚନ ଅଧିକାରୀ ତାକୁ ଦୁଇଟି ଭୋଟ୍ ବାକ୍‌ସ ବିଷୟରେ ବୁଝାଇଲେ । ଏ ଭିତରେ ରୁଫ୍‌ର କ୍ଷିପ୍ରତା ମିଳେଇ ସାରିଥିଲା । ସେ ଆଢୁଆଳକୁ ଯାଇ କାର୍ ମୁଣ୍ଡ ଚିହ୍ନକୁ ନେଇ ଦ୍ୱିଧାରେ ପଡ଼ିଲା । ସେ ଭୋଟ୍ କାଗଜ ଧରି ଭାବିଲା ସେ କ'ଣ ଗୋପନରେ ବି ମାର୍କସକୁ ଧୋକା ଦେଇପାରେ ? ସେହି ଲୋକ ପାଖକୁ ଯାଇ ତା'ର ପାଞ୍ଚ ପାଉଣ୍ଡ ଫେରେଇ ଦେବାକୁ ମନେ ମନେ ସଂକଳ୍ପ କଲା । ପାଞ୍ଚ ପାଉଣ୍ଡ... ସେ ପୁଣି ଥରେ ଭାବିଲା । ଏହା ଫେରେଇବା ଅସମ୍ଭବ । ସେ ପୁଣି 'ଇୟି' ପାଖରେ ଶପଥ କରିଥିଲା । ଇୟି, ଲାଲ୍ ନୋଟ୍, କୋକୋ ଚାଷୀମାନଙ୍କର କାର୍ଯ୍ୟବ୍ୟସ୍ତତା ସବୁକିଛି ତା'ର ଗୋଟି ଗୋଟି ହୋଇ ମନେ ପଡ଼ିଗଲା ।

ଠିକ୍ ଏତିକିବେଳେ ବାହାରେ ପୋଲିସ୍‌ର ଚାପା କଣ୍ଠ ଶୁଣାଗଲା । ସେ ନିର୍ବାଚନ ଅଧିକାରୀଙ୍କୁ ପଚାରାଥିବାର ଶୁଣିଲା, 'ଲୋକଟା ଏତେବେଳ ଯାଏ ଭିତରେ କ'ଣ କରୁଛି !'

ତଡ଼ିତ୍ ବେଗରେ ତା ମୁଣ୍ଡକୁ ଭାବନାଟିଏ ଛୁଟିଲା । ସେ ବେଲଟ୍ ପେପରକୁ ମୋଡ଼ି ଠିକ୍ ମଝିରୁ ସିଧା କରି ଦୁଇଫାଳ କରି ଚିରିଦେଲା ଓ ଦୁଇଟି ବାକ୍ସରେ ଗୋଟିଏ ଲେଖାଏଁ ଗଳେଇ ଦେଲା । ପ୍ରଥମ ଫାଳଟି କିନ୍ତୁ ଅତି ଯତ୍ନର ସହିତ ମାତୁକାର ବାକ୍ସରେ ଗଳେଇବାକୁ ଭୁଲି ନଥିଲା । ଏହା କରି ସେ ଅନ୍ତତଃ ନିଜକୁ ସାନ୍ତ୍ୱନା ଦେଉଥିଲା ଯେ ସେ ମାତୁକାକୁ ହିଁ ଭୋଟ୍ ଦେଇଛି ।

ସେ ଯେମିତି ପୁନର୍ବାର ବୁଥ୍ ଭିତରକୁ ପଶି ନ ପାରିବ, ତା' ବୁଢ଼ା ଆଙ୍ଗୁଳିରେ ନିର୍ବାଚନ ଅଧିକାରୀ ଅଲିଭା ଲାଲ୍ କାଳିର ଚିହ୍ନ ଦେଲେ । ସେ ଯେମିତି ଖୁସିରେ ବୁଥ୍ ଭିତରକୁ ଯାଇଥିଲା, ସେମିତି ଖୁସିରେ ବୁଥ୍ ବାହାରକୁ ଚାଲି ଆସିଲା ।

■■■

*ଅନୁବାଦ :* ***ଲୋହିତାକ୍ଷ ଯୋଶୀ***

# ଆଲାନ୍ ପାଟନ୍

*ଆଲାନ୍ ପାଟନ୍ ଜଣେ ଖ୍ୟାତିସମ୍ପନ୍ନ ଦକ୍ଷିଣ ଆଫ୍ରିକୀୟ ଲେଖକ । ୧୯୪୮ରେ ତାଙ୍କ ଉପନ୍ୟାସ 'କ୍ରାଏ ଦି ବିଲଭେଡ୍ କଣ୍ଟ୍ରି' ପ୍ରକାଶିତ ହେବା ପରେ ସେ ଆନ୍ତର୍ଜାତିକ ପ୍ରତିଷ୍ଠା ଲାଭ କରିଥିଲେ । ଦକ୍ଷିଣ ଆଫ୍ରିକାରେ ରହୁଥିବା ବିଭିନ୍ନ ବର୍ଣ୍ଣର ଲୋକମାନଙ୍କର ପାରସ୍ପରିକ ସମ୍ପର୍କ ଉପରେ ବର୍ଣ୍ଣ ବୈଷମ୍ୟ ନୀତିର ପ୍ରଭାବ ଏହି ଉପନ୍ୟାସର ମୁଖ୍ୟ ଉପଜୀବ୍ୟ । ତାଙ୍କ ସମସ୍ତ ରଚନାରେ ଦୁଇଟି ମୁଖ୍ୟ ଉଦ୍ଦେଶ୍ୟ ରହିଛି । ଶ୍ୱେତାଙ୍ଗ ୟୁରୋପୀୟ ଓ ଆଦିମ କୃଷ୍ଣକାୟ ଅଧିବାସୀମାନଙ୍କ ମଧ୍ୟରେ ଏକ ମାନବିକ ସମ୍ବେଦନଶୀଳ ସମ୍ପର୍କ ଗଢ଼ି ତୋଳିବା ଓ ଦ୍ୱିତୀୟରେ ନିଜ ଦେଶରେ ପ୍ରଚଳିତ ଦଣ୍ଡବିଧି ଆଇନ୍‌ର ସଂସ୍କାର ଆଣିବା । ଆଲାନ୍‌ଙ୍କ ଜନ୍ମ ପିଟର୍‌ମାଟିସ୍‌ବର୍ଗ, ନାତାଲଠାରେ ୧୯୦୩ ମସିହାରେ । ସେହିଠାରୁ ସ୍କୁଲ୍ ଓ କଲେଜ ଶିକ୍ଷା, ତା'ପରେ ନାତାଲ୍ ବିଶ୍ୱବିଦ୍ୟାଳୟରେ ଏକ କଲେଜରେ ଅଧ୍ୟାପନା ଆରମ୍ଭ । ୧୯୨୫ ମସିହାରେ ଆସନ୍ତି ଏକ୍ସପୋ-ଯେଉଁଠି ଲେଖାହୁଏ ଏହି ମହାନ୍ ଉପନ୍ୟାସ - 'କ୍ରାଏ୍ ଦି ବିଲଭେଡ୍ କଣ୍ଟ୍ରି ।' ଅଳ୍ପ ବର୍ଷ ପରେ ସେ ଆସନ୍ତି ଡିପ୍‌କୋପ୍ ରିଫର୍‌ମେଟରୀର ଅଧ୍ୟକ୍ଷଭାବେ ଜୋହାନ୍‌ସବର୍ଗକୁ । ଯୁବ ଅପରାଧୀମାନଙ୍କ ପାଇଁ ରିଫର୍‌ମେଟରୀଟି ଉଦ୍ଦିଷ୍ଟ ଥିଲା । ସେ ଏହାକୁ ଗୋଟିଏ ସ୍କୁଲ୍‌ରେ ପରିଣତ କରିଥିଲେ । ତାଙ୍କର ଅନ୍ୟାନ୍ୟ ରଚନା ଭିତରେ 'ଡେବିଗୋ ହୋମ୍', 'ଟୋର୍‌ଫେଟ୍ ଅଫ୍ ଦ ହେଲିନୋଫ୍' ପ୍ରକାଶିତ ଉପନ୍ୟାସ । ଏହା ବ୍ୟତୀତ ଦକ୍ଷିଣ ଆଫ୍ରିକାର ସାମାଜିକ ଓ ରାଜନୈତିକ ସମସ୍ୟା ଉପରେ ସେ ଲେଖିଛନ୍ତି ଅନେକ ଲେଖା । ଆଫ୍ରିକାର କୃଷ୍ଣକାୟ ଅଧିବାସୀମାନଙ୍କ ପାଇଁ ସହୃଦୟତା ତାଙ୍କ ସମସ୍ତ ରଚନାର ମୁଖ୍ୟ ସ୍ୱର । ମୂଳ ଇଂରାଜୀ ଗଳ୍ପ 'ହା' ପେନି'ର ଓଡ଼ିଆ ରୂପାନ୍ତର – ହା' ପେନି ।*

# ହା' ପେନି

ଅପ୍ରାପ୍ତ ବୟସ୍କା ପିଲାଙ୍କ ପାଇଁ ଉଦ୍ଦିଷ୍ଟ ରିଫର୍ମେଟୋରୀରେ ଯେଉଁ ଛ'ଶହ ପିଲା ରହୁଥିଲେ, ସେଥିରୁ ପ୍ରାୟ ଶହେ ପିଲାଙ୍କ ବୟସ ଦଶରୁ ଚଉଦ ବର୍ଷ ଭିତରେ ହେବ । ଏହି ପିଲାମାନଙ୍କୁ ସେଠି ନରଖି କାମଧନ୍ଦା ଶିଖାଉଥିବା ସ୍କୁଲ୍ ଭଳି ସ୍ୱତନ୍ତ୍ର ଅନୁଷ୍ଠାନଟିଏ ତିଆରି କରି ସେଥିରେ ରଖିବାକୁ ମୋ ଦପ୍ତର ତରଫରୁ ବହୁବାର ଚିନ୍ତା କରାଯାଇଥିଲା । ଏମିତି ବ୍ୟବସ୍ଥାଟିଏ ହୋଇ ପାରିଥିଲେ ଖୁବ୍ ଭଲ ହୋଇଥାନ୍ତା । କାରଣ ସେ ପିଲାମାନଙ୍କର ଅପରାଧ ଖୁବ୍ ମାମୁଲି ଥିଲା ଓ ସେମାନେ ନିଜେ ନିଜେ ମଧ୍ୟ ସୁଧୁରି ଯାଇ ପାରିଥାନ୍ତେ । ଏମିତି ସ୍କୁଲଟିଏ ତିଆରି ହୋଇଥିଲେ ମୁଁ ସେଠି ଅଧ୍ୟକ୍ଷ ଭାବେ ରହିବାକୁ ପସନ୍ଦ କରିଥାନ୍ତି । କାରଣ ଏପରି ଅନୁଷ୍ଠାନରେ ଜଣେ ଅଧ୍ୟକ୍ଷଙ୍କ କାମ ଖୁବ୍ ସହଜ । ଛୋଟ ଛୋଟ ପିଲାମାନେ ସ୍ୱଭାବତଃ ସ୍ନେହ ମମତା ପାଇବାକୁ ବ୍ୟାକୁଳ ଓ ଏଇଥିପାଇଁ ସ୍ନେହ ବଳରେ ସେମାନଙ୍କୁ ସହଜରେ ବଶ କରିହୁଏ ।

ପ୍ୟାରେଡ୍‌ବେଳେ, ସ୍କୁଲ୍‌ରେ ବା ଫୁଟ୍‌ବଲ୍ ଖେଳବେଳେ ମୁଁ ତାଙ୍କ ପାଖକୁ ଗଲେ କିଛି ପିଲା ମୋତେ ମନଯୋଗ ସହକାରେ ସିଧାସିଧା ନଦେଖି କଣେଇ କଣେଇ ଲୁଚି ଲୁଚି ଦେଖୁଥିଲେ । ବେଳେବେଳେ ମୁଁ ସେମାନଙ୍କୁ ଚିହ୍ନି ପାରିଲା ଭଳି ଭାବଭଙ୍ଗୀ ଦେଖାଇ ଆଶ୍ଚର୍ଯ୍ୟ କରି ଦେଉଥିଲି; ଯଦ୍ଦ୍ୱାରା ସେମାନେ ଖୁସି ହୋଇ ଆଉ ମୋ ଆଡ଼କୁ ଦୃଷ୍ଟି ନଦେଇ ମନଯୋଗ ସହକାରେ ନିଜ କାମ କରି ପାରିବେ । ଏମିତି କରିବା ଦ୍ୱାରା ସେମାନଙ୍କ ଉପରେ ମୋର କର୍ତ୍ତୃତ୍ୱ ଆହୁରି ବଢ଼ି ଯାଉଥିଲା ।

ସେମାନଙ୍କ ସଙ୍ଗରେ ମୋର ଏହି ଗୂଢ଼ ସମ୍ପର୍କ ହିଁ ମୋ ନିରବଚ୍ଛିନ୍ନ ଆନନ୍ଦର ମୂଳ ଉତ୍ସ ଥିଲା । ମୋ ନିଜ ପିଲା ହୋଇଥିଲେ ମୁଁ ତାଙ୍କୁ ଅଧିକ ଖୁସି କରି ପାରିଥାନ୍ତି । ସେମାନେ ନୀରବରେ ଓ ଶୃଙ୍ଖଳିତ ଭାବେ ପ୍ୟାରେଡ୍ କରୁଥିବା ବେଳେ ଅନେକ ସମୟରେ ମୁଁ ପ୍ୟାରେଡ୍ ଦେଖୁ ଦେଖୁ କାହା ପାଖରେ ଠିଆ ହେଉଥିଲି । ସେତେବେଳେ ସେ ଗମ୍ଭୀର ଭାବେ ଆଗକୁ ଚାହୁଁଥିଲା । ସେ ଚାହାଣୀରେ ମୁଁ ଯେ ତା' ପାଖରେ ଠିଆ ହୋଇଛି ଏମିତିକିଆ ଏକ ଶିଶୁ-ସୁଲଭ ଜ୍ଞାନ ସହିତ ଏକ ବୟସ୍କ ଲୋକର ଉଦାସୀନତା ଉଭୟ ମିଶି ରହିଥିଲା । ବେଳେବେଳେ ମୁଁ କାହାର କାହାର କାନମୋଡ଼ି ଦେଉଥିଲି ଓ ସେ ପିଲାଟି ଏହାକୁ ସ୍ୱୀକାର କଲାଭଳି ଛୋଟ ହସଟିଏ ହସୁଥିଲା ବା ନିଜ କାମରେ

ଅଧିକା ମନୋନିବେଶ କଲାଭଳି ଗମ୍ଭୀର ମୁହଁଟିଏ କରୁଥିଲା । ଏକଥା ସତ ଯେ ଖୁବ୍ କମ୍ ପିଲାଙ୍କ ସହ ଏପରି ବ୍ୟବହାର କରୁଥିଲି । ମାତ୍ର ମୋର ଏପରି ବ୍ୟବହାର ଅନ୍ୟମାନଙ୍କ ପାଇଁ ପ୍ରତୀକାତ୍ମକ ଥିଲା । ଏପରିକି କେତେକ ବୟସ୍କ ପିଲା ଏସବୁ କଥା ଲକ୍ଷ୍ୟ କରୁଥିଲେ ଓ ଏଭଳି ବ୍ୟବହାର ପାଇବେ ବୋଲି ମଧ୍ୟ ଭାବୁଥିଲେ । ଏହା ମୋ ପାଇଁ ଯଥେଷ୍ଟ ଆଶ୍ୱାସନାଦାୟକ ଥିଲା । କାରଣ ରିଫର୍ମେଟୋରୀଟି ଖୁବ୍ ଖରାପ ସମୟ ଦେଇ ଗତି କରୁଥିବା ବେଳେ ପିଲାମାନେ କର୍ତ୍ତୃପକ୍ଷଙ୍କ ସହାନୁଭୂତିରୁ ବଂଚିତ ହେବାର ଯଥେଷ୍ଟ ସମ୍ଭାବନା ରହିଥିଲା । ମୋର ଏପରି ସରଳ ଓ ଅକୃତ୍ରିମ ବ୍ୟବହାର ମୋତେ ନିଜକୁ ଓ ପିଲାମାନଙ୍କୁ ପ୍ରତ୍ୟୟ ଦେଉଥିଲା ଯେ ସବୁ ଠିକ୍‌ଠାକ୍ ଅଛି, ଯେମିତି କିଛି ବିଶେଷ ବଦଳିନି ।

ସବୁ ରବିବାର ଉପରଓଳି କାମକୁ ଯାଉଥିବା ବେଳେ ମୁଁ ରିଫର୍ମେଟୋରୀ ଫାଟକ ପାଖରେ ଗାଡ଼ି ଅଟକାଉଥିଲି । ସେତେବେଳେ ଛାଡ଼ ପାଉଥିବା ପିଲାମାନେ ଫାଟକ ଦେଇ ବାହାରକୁ ଆସୁଥିଲେ । ଏପରି ଏକ ଦୃଶ୍ୟକୁ ଛାଡ଼ ନ ପାଇଥିବା ପିଲାମାନେ ମଧ୍ୟ ଦେଖୁଥିଲେ । 'କିଛି ସପ୍ତାହ ପରେ ମୁଁ ମଧ୍ୟ ଏମିତି ଛାଡ଼ ପାଇ ବାହାରକୁ ଚାଲିଯିବି' —ଏ କଥା ନିଜ ନିଜ ଭିତରେ କୁହାକୁହି ହେଉଥିଲେ । ରୁଣ୍ଡ ହୋଇଥିବା ଦେଖଣାହାରୀଙ୍କ ଭିତରୁ ସବୁବେଳେ କିଛି ଛୋଟପିଲା ଥିଲେ । ଏମାନଙ୍କୁ ଜଣକ ପରେ ଜଣେ ମୁଁ କାର୍‌ରେ ବାହାରକୁ ବୁଲାଇବାକୁ ନେଉଥିଲି । ଜନଗହଳ ପୋଚେଷ୍ଟ୍ରୁମ୍ ରୋଡ୍, ବନଗୱାନଥ ଛକ ଦେଇ ଭାନ୍ ସ୍ୱାକ୍‌ସସ୍ ବାଟେ ଆମେ ରିଫର୍ମେଟୋରୀକୁ ଫେରୁଥିଲୁ । ସାଙ୍ଗରେ ଯିବାବେଳେ ମୁଁ ତାଙ୍କୁ ସେମାନଙ୍କ ପରିବାର, ବାପା, ମା', ଭାଇ ଭଉଣୀଙ୍କ ବିଷୟରେ ନାନା କଥା ପଚାରୁଥିଲି । ଡର୍‌ବାନ୍, ପୋର୍ଟଏଲିଜାବେଥ୍, ପୋଚେଷ୍ଟ୍ରୁମ୍, କୋଲ୍‌କୋଲାନ୍ ଏସବୁ ଜାଗା ବିଷୟରେ କିଛି ନଜାଣିଥିବାର ଅଭିନୟ କରୁଥିଲି ଓ ଏସବୁ ଜାଗା ଜୋହାନ୍‌ସବର୍ଗଠାରୁ ବଡ଼ କି ନୁହେଁ, ଏ କଥା ମଧ୍ୟ ପଚାରୁଥିଲି ।

ଏଇ ଛୋଟ ଛୋଟ ପିଲାଙ୍କ ଭିତରୁ ଜଣକ ନାଁ ଥିଲା ହା' ପେନି । ତାକୁ ବାରବର୍ଷ ବୟସ ହେବ । ତା' ଘର ବେଲାଏମ୍ ପୋଂନ୍‌ଟେନ୍ ଓ ପିଲାଙ୍କ ଭିତରେ ସେ ସବୁଠୁ ଗପୁଡ଼ି ଥିଲା । ତା' ମା ଜଣେ ଗୋରାଲୋକ ଘରେ କାମ କରୁଥିଲା । ତା'ର ଦୁଇଟି ଭାଇ ଓ ଦୁଇଟି ଭଉଣୀ ଥିଲେ । ଦୁଇ ଭାଇଙ୍କ ନାଁ ରିଚାର୍ଡ଼ ଓ ଡିକି ଏବଂ ଭଉଣୀ ଦୁଇଜଣ ଆନ୍ନା ଓ ମୀନା ।

'ରିଚାର୍ଡ ଓ ଡିକି ?' ମୁଁ ପଚାରିଲି ।

'ହଁ ଆଜ୍ଞା' ସେ ଉତ୍ତର ଦେଲା ।

'ଇଂରାଜୀରେ ରିଚାର୍ଡ଼ ଓ ଡିକି ତ ଏକା ନା', ମୁଁ କହିଲି ।

ରିଫର୍ମେଟୋରୀକୁ ଫେରି ହା' ପେନିର କାଗଜପତ୍ର ସବୁ ମଗାଇ ପଠାଇଲି । ହା' ପେନିର ଘରଦ୍ୱାର ନାହିଁ, ସେ ନିରାଶ୍ରୟ । ଏପରିକି ତା'ର କେହି ସମ୍ପର୍କୀୟ ମଧ୍ୟ

ନାହାନ୍ତି । ଏଘରେ ସେଘରେ ବୁଲି କାମ କରେ । ସେ ଭାରି ଚଗଲା ଓ କାହାରି କଥା ଶୁଣେନା । ଶେଷରେ ବଜାରରୁ ଛୋଟକାଟିଆ ଚୋରି କଲା ।

ତା'ପରେ ମୁଁ ଚିଠି ବାକ୍ସ ମଗାଇ ପଠାଇଲି । ଦେଖିଲି ହା' ପେନି ନିଜେ ଲେଖିବା ପର୍ଯ୍ୟନ୍ତ ସେ ଅନ୍ୟମାନଙ୍କ ହାତରେ ମଧ୍ୟ ଚିଠି ଲେଖାଉଥିଲା । ସେ ଥିଲେ ମିସେସ୍ ବିଟି ମାରମାନ୍ । ଠିକଣା ୪୮-ଭ୍ଲାକ୍ ଷ୍ଟ୍ରିଟ୍, ବ୍ଲୋଏମ୍‌ଫୋନ୍‌ଟେନ୍ । ମାତ୍ର ଥରେ ହେଲେ ମିସେସ୍ ମାର୍‌ମାନ୍ ତା' ପାଖକୁ ଉତ୍ତର ଦେଇ ନଥିଲେ । ତାକୁ ପଚାରିବାରୁ ସେ କହିଲା - ବୋଧହୁଏ ତାଙ୍କ ଦେହ ଖରାପ ଅଛି । ବ୍ଲୋଏମ୍ ଫୋନ୍‌ଟେନ୍‌ର ସମାଜମଙ୍ଗଳ ଅଧିକାରୀଙ୍କୁ ଏ ବିଷୟରେ ସବିଶେଷ ତଦନ୍ତ କରିବାକୁ ମୁଁ ସଙ୍ଗେ ସଙ୍ଗେ ଚିଠି ଲେଖିଲି ।

ତା' ପରଥର ଯେତେବେଳେ ହା'ପେନିକୁ ମୁଁ ଗାଡ଼ିରେ ବୁଲାଇନେଲି ତା' ଘରକଥା ପୁଣି ଥରେ ପଚାରିଲି । ସେ ପୂର୍ବଭଳି ସେଇକଥା ପୁଣି ଥରେ କହିଲା – ତା' ମା, ରିଚାର୍ଡ଼, ଡିକି, ଆନ୍ନା, ମୀନା । ମାତ୍ର କହିଲା ବେଳେ 'ଡିକି'କୁ ଏପରି ଉଚ୍ଚାରଣ କଲା ଯେ ତାହା ଏଥର 'ଟିକି' ଭଳି ଶୁଭିଲା । 'ମୁଁ ଭାବିଲି ତୁ ଡିକି ବୋଲି କହୁଛୁ' ମୁଁ ପଚାରିଲି ।

'ମୁଁ ଟିକି କହିଲି' ସେ ଉତ୍ତର ଦେଲା ।

ସେ କେମିତି ଏକ ଚାପା, ଡରକୁଳା ଆଖିରେ ମୋତେ ଦେଖୁଥିଲା । ଏକଥା ମୁଁ ଜାଣିପାରିଲି ଯେ ବ୍ଲୋଏମ୍‌ଫୋନ୍ ଟେନ୍‌ର ଏହି ନିରାଶ୍ରୟ ପିଲାଟି ଖୁବ୍ ଚାଲାକ୍ । ନିଜ ବିଷୟରେ ସେ ଯାହା କହିଥିଲା ସେ ସବୁ କାଳ୍ପନିକ, ମନଗଢ଼ା କଥା । ସେ ଜାଣିଶୁଣି ଏ ବିଷୟରେ ଅଧିକ ପ୍ରଶ୍ନକୁ ଏଡ଼ାଇବାକୁ 'ଡି' କୁ 'ଟି' ବୋଲି ଉଚ୍ଚାରଣ କରିଥିଲା । ଏକଥା ମଧ୍ୟ ମୁଁ ବୁଝିଗଲି ଯେ ତା'ର ଘରଦ୍ୱାର ଓ ପରିବାର କିଛି ନାହିଁ – ଏକଥା କହିବାକୁ ତାକୁ ଖୁବ୍ ଲାଜ ଲାଗୁଥିଲା । ତା'ର ବାପା ମା' କେହି ନାହାନ୍ତି, ଏକଥା କେହି ଯେମିତି ନଜାଣନ୍ତୁ – ପୁଣି ସେ ବଂଚିଛି କି ମରିଛି ଏକଥା ଭାବିବାକୁ ଦୁନିଆରେ ତା'ର କେହି ନାହାନ୍ତି, ଏସବୁ କଥା ଭାବି ସେ ଏମିତି ମନଗଢ଼ା ପରିବାରଟିଏ ତିଆରି କରିଥିଲା । ଏସବୁ କଥା ଜାଣି ତା' ପ୍ରତି ମୁଁ ଅଧିକ ଆକୃଷ୍ଟ ହୋଇ ପଡ଼ିଲି । ମୋ ଚାକିରି ଦାୟିତ୍ୱ ବାହାରକୁ ଯାଇ ତାକୁ ପୁଅଟିଏ ଭଳି ଭଲ ପାଇବାକୁ ଲାଗିଲି ।

ଏ ମଧ୍ୟରେ ବ୍ଲୋଏମ୍‌ଫୋନ୍‌ଟେନ୍‌ର ସମାଜ ମଙ୍ଗଳ ଅଧିକାରୀଙ୍କ ପାଖକୁ ଦେଇଥିବା ଚିଠିର ଉତ୍ତର ଆସି ପହଞ୍ଚିଲା । ସେ ଲେଖିଥିଲେ-୪୮ ଭ୍ଲାକ୍ ଷ୍ଟ୍ରିଟ୍‌ରେ ପ୍ରକୃତରେ ମିସେସ୍ ମାର୍‌ମାନ୍ ନାମ୍ନୀ ଜଣେ ଭଦ୍ରମହିଳା ରହନ୍ତି । ତାଙ୍କର ରିଚାର୍ଡ଼, ଡିକି, ଆନ୍ନା, ମୀନା ନାମରେ ଚାରୋଟି ପିଲା ଅଛନ୍ତି । ମାତ୍ର ହା'ପେନି ନାମରେ ତାଙ୍କର ନିଜର କେହି ପିଲା ନାହିଁ । ସେ ହା'ପେନିକୁ କେବଳ ଗୋଟିଏ ବାରବୁଲା ପିଲା ଭାବରେ ଜାଣନ୍ତି । ସେ କେବେ ହା'ପେନି ଚିଠିର ଉତ୍ତର ଦେଇ ନାହାନ୍ତି । କାରଣ ସେ ତାଙ୍କୁ

ମା ବୋଲି ସମ୍ବୋଧନ କରି ଚିଠି ଲେଖେ । ସେ ତା' ମା' ନୁହଁନ୍ତି ବା ତା'ର ମା' ପରି ଅଭିନୟ କରିବାରେ ମଧ୍ୟ ତାଙ୍କର ଆଗ୍ରହ ନାହିଁ । କାରଣ ସେ ଜଣେ ଆଭିଜାତ୍ୟସମ୍ପନ୍ନା ଭଦ୍ରମହିଳା ଓ ସ୍ଥାନୀୟ ଚର୍ଚ୍ଚର ବିଶ୍ୱସ୍ତ ସଭ୍ୟ ଥିଲେ । ଏଭଳି ଗୋଟିଏ ପିଲା ସହିତ ସମ୍ପର୍କ ରଖି ନିଜ ପରିବାରର ବଦନାମ୍ କରିବାକୁ ଚାହୁଁ ନଥିଲେ ।

ମୁଁ ଅନୁଭବ କଲି ଯେ ହା'ପେନି ଯାହାହେଲେ ବି ଗୋଟିଏ ସାଧାରଣ ଅପରାଧୀ ନୁହେଁ । ଗୋଟିଏ ପରିବାର ପାଇବାର ଇଚ୍ଛା ତା'ର ଏତେ ଅଧିକ, ରିଫର୍ମେଟୋରୀରେ ତା'ର ଚାଲିଚଳନ ଏଡ଼େ ତ୍ରୁଟିହୀନ, ଅନ୍ୟକୁ ଖୁସି କରିବାରେ ତା'ର ଆଗ୍ରହ ଓ ତା'ର ଅନୁରକ୍ତି ଏତେ ଅଧିକ ଥିଲା ଯେ ତା' ଭଲମନ୍ଦ ବୁଝିବା ମୋର ନିଜର ଦାୟିତ୍ୱ ବୋଲି ଭାବି ନେଇଥିଲି । ସେଇଥିପାଇଁ ତା' ମା' ବିଷୟରେ ମୁଁ ଏତେ କଥା ପଚାରୁଥିଲି ।

ସେ ତା' ମା' ବିଷୟରେ ଅଧିକ କିଛି କହିପାରିଲା ନାହିଁ । ଏପରିକି ମା'ର ଉଚ୍ଚ ପ୍ରଶଂସା ମଧ୍ୟ କରିପାରି ନଥିଲା । ଏତିକି କହିଲା ଯେ ତା' ମା' ସ୍ନେହୀ, ସଚ୍ଚୋଟ ଓ ବଡ଼ କଡ଼ା ମିଜାଜ୍‌ର ଲୋକ ଥିଲା । ତାଙ୍କ ଘର ଭାରି ସଫାସୁତରା ଥିଲା । ତା' ମା' ସବୁ ପିଲାଙ୍କୁ ଭଲ ପାଉଥିଲା । ଏକଥା ସତ ଯେ ଏଇ ନିରାଶ୍ରୟ ପିଲାଟି ମୋର ଯେତିକି ଅନ୍ତରଙ୍ଗ ହୋଇ ପାରିଥିଲା, ମା'ଟିକୁ ମଧ୍ୟ ସେତିକି ଆପଣାର କରି ପାରିଥାନ୍ତା । ମୋତେ ଦେଖିବା ଭଳି ତା' ମା'କୁ ମଧ୍ୟ ଖୁବ୍ ପାଖରୁ ଲକ୍ଷ୍ୟ କରୁଥିଲା । ମାତ୍ର ମା'ର ହୃଦୟ କେମିତି ଜିତିଲେ ସେ ତାକୁ କୋଳେଇ ନିଅନ୍ତା ଆଉ ଏ ନିଃସଙ୍ଗ ଜୀବନକୁ ତାକୁ ମୁକ୍ତି ମିଳନ୍ତା, ଏ ଗୁପ୍ତ କଥା ତାକୁ ଜଣା ନଥିଲା ।

'ଏମିତି ମା' ଥାଉଁ ଥାଉଁ ତୁ କାହିଁକି ଚୋରି କଲୁ ?' ମୁଁ ପଚାରିଲି ।

ସେ ମୋ କଥାର କିଛି ଜବାବ ଦେଲା ନାହିଁ । ସବୁ ବୁଦ୍ଧି ଓ ସାହସ ଖଟେଇ ସେ ଏ ପ୍ରଶ୍ନର କିଛି ହେଲେ ଉତ୍ତର ପାଉ ନଥିଲା । କାରଣ ସେ ମଧ୍ୟ ଜାଣିଥିଲା ଯେ ଏମିତିକା ମା'ଟିଏ ଥିଲେ ସେ କେବେ ବି ଚୋରି କରି ନଥାନ୍ତା ।

'ସେ ପିଲାଟି ନାଁ ଡିକି । ଟିକି ନୁହେଁ ।' ମୁଁ କହିଲି ।

ତା'ପରେ ସେ ଜାଣିଗଲା ଯେ ତା' ମିଛ କଥା ମୁଁ ଜାଣି ଯାଇଛି । ସେ ଧରା ପଡ଼ି ଯାଇଛି । ଅନ୍ୟ କେହି ପିଲା ହୋଇଥିଲେ କହିଥାନ୍ତା - 'ମୁଁ ତ ଡିକି ବୋଲି କହିଥିଲି ।' ମାତ୍ର ସେ ଦୃଷ୍ଟିରୁ ସେ ଖୁବ୍ ବିଚକ୍ଷଣ ଥିଲା । ସେ ଜାଣିଥିଲା ଯେ ଯଦି ମୁଁ 'ଡିକି' କିଏ ବୋଲି ଜାଣିପାରିଲି, ତେବେ ସେ କହିଥିବା ଅନ୍ୟ ସବୁ କଥା ମଧ୍ୟ ଜାଣିପାରିଥିବି । ତା' ଉପରେ ମୋ କଥାର ଏକ ତତ୍‌କ୍ଷଣାତ୍ ଓ ସ୍ୱଷ୍ଟ ପ୍ରଭାବ ଲକ୍ଷ୍ୟ କରି ମୁଁ ମ୍ରିୟମାଣ ହୋଇପଡ଼ିଲି । ସବୁ ଆଶା, ଭରସା, ସବୁ ନିର୍ଭୀକ ପ୍ରତ୍ୟୟ ତା' ଭିତରେ ମରି ଯାଇଥିଲା । ସେଠି ମିଛୁଆ ପିଲାଟିଏ ନୁହେଁ, ବରଂ ଗୋଟିଏ ନିଃସଙ୍ଗ, ଆଶ୍ରୟହୀନ ଶିଶୁଟିଏ ଏକା ଏକା ଠିଆ ହୋଇଥିଲା । ଯାହାର ଏକଦା ବାପା, ମା', ଭାଇ, ଭଉଣୀ, ଘରଦ୍ୱାର

ସବୁକିଛି ଥିଲା । ଏବେ କିନ୍ତୁ ତା'ର ନିଜର ଆଉ କେହି ନାହାନ୍ତି । ତା'ର ଦମ୍ଭ, ଅଭିମାନ, ସମ୍ମାନବୋଧର ମୂଳଦୁଆକୁ ମୁଁ ଯେମିତି ସେଦିନ ଭାଙ୍ଗିରୁଜି ନଷ୍ଟ କରି ଦେଇଥିଲି । ଏ ସହିତ ମଧ୍ୟ ଲୋପ ପାଇଗଲା ତା'ର ମଣିଷ ଭାବେ ବଂଚିବାର ସବୁ ଅର୍ଥ, ସବୁ ତାତ୍ପର୍ଯ୍ୟ ।

ଏହାପରେ ହଠାତ୍ ସେ ଅସୁସ୍ଥ ହୋଇ ପଡ଼ିଲା । ଡାକ୍ତର କହିଲେ ତାକୁ ଯକ୍ଷ୍ମାରୋଗ ହୋଇଛି । ସଙ୍ଗେ ସଙ୍ଗେ ମିସେସ୍ ମାର୍‌ମାନ୍‌ଙ୍କ ପାଖକୁ ଚିଠିଟିଏ ଲେଖିଲି । ସେଥିରେ ସବୁକଥା ତାଙ୍କୁ ବୁଝାଇ ଲେଖିଥିଲି - ଏଇ ଛୋଟ ପିଲାଟି କେମିତି ତାଙ୍କୁ ମା' ବୋଲି ଧରି ନେଇଥିଲା ଓ କେମିତି ତାଙ୍କୁ ମା' ରୂପରେ ପାଇବାକୁ ଚାହୁଁଥିଲା । ମାତ୍ର ସେ ଉତ୍ତର ଦେଲେ ସେ ତା'ର ଦାୟିତ୍ୱ ନେଇପାରିବେ ନାହିଁ । କାରଣ ହା'ପେନିର ଆଦିମ ଅଧିବାସୀ ସମ୍ପ୍ରଦାୟର ପିଲାଟିଏ ଓ ସେ ନିଜେ ଜଣେ ଭିନ୍ନ ବର୍ଣ୍ଣର ଲୋକ । ପୁଣି ଏ ତ ତାଙ୍କ ନିଜ ପିଲାର ଅସୁବିଧା ନୁହେଁ । ସେ କାହିଁକି ତାକୁ ପୁଅ କରି ନେବେ ?

ଯକ୍ଷ୍ମା ଏକ ଅଦ୍ଭୁତ ରୋଗ । ବେଳେବେଳେ ଏହା ଆଦୌ ସମ୍ଭାବନା ନଥିବା ଲୋକଠି ଦେଖାଦିଏ, ତା'ପରେ ମାଡ଼ିଚାଲେ ଶେଷ ପର୍ଯ୍ୟନ୍ତ । ହା'ପେନି ଏବେ ନିଜକୁ ଦୂରେଇ ନେଇଥିଲା - ପୃଥିବୀଠୁଁ, ପରିଚାଳକ, ଧାଈ ସମସ୍ତଙ୍କଠାରୁ । ଡାକ୍ତର କହିଲେ ତା'ର ବଂଚିବାର ଆଶା ଖୁବ୍ କମ୍ । ହତାଶ ହୋଇ ମୁଁ ମିସେସ୍ ମାର୍‌ମନ୍‌ଙ୍କ ପାଖକୁ ଆସିବାକୁ ଅନୁରୋଧ କରି ଟଙ୍କା ପଠାଇଲି ।

ସେ ଅତ୍ୟନ୍ତ ମାର୍ଜିତ ଓ ସରଳ ସ୍ୱଭାବର ମହିଳା ଥିଲେ । ପରିସ୍ଥିତିର ଗୁରୁତ୍ୱ ଦୃଷ୍ଟିରୁ ଘଟଣାକୁ ଅଧିକ ଜଟିଳ ନ କରି ସେ ହା'ପେନିକୁ ପୁଅଭାବେ ଗ୍ରହଣ କରିନେଲେ । ରିଫର୍ମେଟୋରୀରେ ମଧ୍ୟ ସମସ୍ତେ ତାଙ୍କୁ ସେଦିନ ହା'ପେନିର ମା' ଭାବେ ସ୍ୱୀକାର କରିଥିଲେ । ସେ ସାରାଦିନ ହା'ପେନି ପାଖରେ ବସି ରହିଲେ । ସେ ରିଚାର୍ଡ଼, ଡିକି, ଆନା, ମୀନା ସମସ୍ତଙ୍କ କଥା ତାକୁ କହିଲେ ଓ ସେମାନେ କେମିତି ତା' ଫେରିବାକୁ ଆଗ୍ରହରେ ଅନାଇ ବସିଛନ୍ତି ସେ କଥା ମଧ୍ୟ ବର୍ଣ୍ଣନା କଲେ । ତା' ଉପରେ ସେଦିନ ମା'ର ସବୁ ସ୍ନେହ ଅଜାଡ଼ି ଦେଇଥିଲେ । ସେତେବେଳେ ତାଙ୍କର ରୋଗ ପ୍ରତି ତିଳେମାତ୍ର ଭୟ ନଥିଲା । ହା'ପେନିକୁ ଆପଣାର କରି ନେବାରେ ତାଙ୍କ ପାଇଁ ରୋଗ ଆଉ ପ୍ରତିବନ୍ଧକ ନଥିଲା । ତା' ସାଙ୍ଗରେ ସେଦିନ ସେ ଅବିଶ୍ରାନ୍ତ ଭାବେ ଗପି ଚାଲିଥିଲେ - ସେ ଭଲ ହୋଇ ଘରକୁ ଫେରିଲେ ସେମାନେ ସବୁ କ'ଣ କରିବେ, ସେ କେମିତି ସ୍କୁଲ୍‌କୁ ଯିବ ଓ ରୋ ଫକ୍‌ସ ରାତି ଧୁମ୍‌ଧାମ୍‌ରେ ପାଳନ କରିବାକୁ କ'ଣ ସବୁ କିଣିବେ— ଏମିତି କେତେ କଥା ।

ହା'ପେନି ମଧ୍ୟ ଖୁବ୍ ମନଯୋଗ ସହକାରେ ସବୁକଥା ଶୁଣୁଥିଲା । ମୁଁ ତାକୁ ଯେତେବେଳେ ଦେଖା କଲି ସେ ମୋତେ କୃତଜ୍ଞତା ଜଣାଇଲା, କିନ୍ତୁ ସେତେବେଳକୁ ମୁଁ ତା ପୃଥିବୀରୁ ଅପସରି ଯାଇଥିଲି । ପରିବାରଟିଏ ପାଇଁ ତା'ର କାମନାକୁ ହିଁ ମୁଁ

ଅନୁଭବ କରି ପାରିଥିଲି, ସେ କାମନାର ତୀବ୍ରତାକୁ ନୁହେଁ । ସମୟ ନଷ୍ଟ ନକରି ବୁଦ୍ଧି ଖଟାଇ ତା' ପାଇଁ କିଛି ଆଗରୁ କ'ଣ ହେଲେ କରି ପାରିଥାନ୍ତି କି !

ରିଫର୍ମେଟୋରୀ କ୍ଷେତରେ ଆମେ ହା'ପେନିକୁ କବର ଦେଲୁ ।

'ଆପଣ କ୍ରସ୍ ରଖିବାବେଳେ ଲେଖିଦେବେ ଯେ ସେ ମୋ ପୁଅ ଥିଲା' – ମିସେସ୍ ମାର୍ମାନ୍ ମୋତେ ଅନୁରୋଧ କଲେ !

'ମୁଁ ଦୁଃଖିତ ଯେ ତାକୁ ଘରକୁ ନେଇ ପାରିଲି ନାହିଁ ।' ସେ କହିଲେ ।

'ଆଉ ତା' ଦେହ ? ଦେହ ତ ଯେମିତି ହେଲେ ଖରାପ ହୋଇଥାନ୍ତା' ମୁଁ ପଚାରିଲି ।

'ନା' ସେ ମୁଣ୍ଡ ହଲାଇ ଦୃଢ଼ କଣ୍ଠରେ ଉତ୍ତର ଦେଲେ ।

'ତା' ଦେହ ଖରାପ ହୋଇ ନଥାନ୍ତା । ଯଦିବା ଘରେ ଦେହ ଖରାପ ହୋଇଥାନ୍ତା, ତେବେ ତାହା ନିଶ୍ଚୟ ଭିନ୍ନ ଧରଣର ହୋଇଥାନ୍ତା' – ସେ କହିଲେ ।

ରିଫର୍ମେଟୋରୀକୁ ଏମିତି ଗୋଟିଏ ଅସାଧାରଣ ଗସ୍ତ ପରେ ମିସେସ୍ ମାର୍‌ମାନ୍ ବ୍ଲୋଏମ୍‌ଫୋନ୍‌ଟେନ୍ ଫେରି ଯାଇଥିଲେ । ଆଉ ମୁଁ ବି ସଂକଳ୍ପ କଲି ଯେ ଏସବୁ ମୋ ସରକାରୀ ଚାକିରିର ଦାୟିତ୍ୱ ନହେଲେ ବି ଦେଶ ପାଇଁ ଏଭଳି କାମ କରିବାକୁ ଅଧିକ ଶକ୍ତି ବ୍ୟୟ କରିବି ।



*ଅନୁବାଦ :* ***ସଂଗ୍ରାମ ଜେନା***

# ହୋରାସିଓ କିରୋଗା

ଲାଟିନ୍ ଆମେରିକାର ଅପ୍ରତିଦ୍ୱନ୍ଦ୍ୱୀ କଥାକାର ହୋରାସିଓ କିରୋଗାଙ୍କର ସାହିତ୍ୟିକ ଜୀବନ ଯେତିକି ଗୌରବମୟ, ତାଙ୍କର ବ୍ୟକ୍ତିଗତ ଜୀବନ ତତୋଽଧିକ କରୁଣ । ଜନ୍ମର ଅଳ୍ପ କେତେମାସ ମଧ୍ୟରେ ସେ ପିତାଙ୍କୁ ହରାନ୍ତି । ନିଜ ବନ୍ଧୁକ ଦ୍ୱାରା ସେ ଆକସ୍ମିକ ଭାବରେ ଜଣେ ପ୍ରିୟ ବନ୍ଧୁଙ୍କୁ ହରାନ୍ତି । ମା'ଙ୍କର ପୁନର୍ବିବାହ ପରେ ପକ୍ଷାଘାତ ରୋଗଗ୍ରସ୍ତ ସାବତବାପା ଆତ୍ମହତ୍ୟା କରନ୍ତି । ଏହା ପରେ ପରେ ତାଙ୍କ ସ୍ତ୍ରୀ, ପୁତ୍ର ଓ କନ୍ୟା କ୍ରମାନ୍ୱୟରେ ଆତ୍ମହତ୍ୟା କରନ୍ତି । ନିଜ କନ୍ୟାର ଜଣେ ବାନ୍ଧବୀକୁ ସେ ଦ୍ୱିତୀୟଥର ପାଇଁ ବିବାହ କରନ୍ତି । ସାରା ଜୀବନ ଏହିପରି ମାନସିକ ଓ ଶାରୀରିକ ଯନ୍ତ୍ରଣା ଦେଇ ଗତିକରି ଶେଷକୁ କର୍କଟ ରୋଗରେ ଆକ୍ରାନ୍ତ ହୋଇ ସେ ୧୯୩୭ ମସିହାରେ ଆତ୍ମହତ୍ୟା କରନ୍ତି । ସେ ଉରୁଗୁଏରେ ଜନ୍ମଲାଭ କରିଥିଲେ ହେଁ ଜୀବନର ଅଧିକାଂଶ ସମୟ ବିତାଇଥିଲେ ଆର୍ଜେଣ୍ଟିନାରେ । ସେ ତଙ୍କର ସାହିତ୍ୟିକ ଜୀବନର ମୂଳଦୁଆ କବିତା ମାଧ୍ୟମରେ ପକାଇଥିଲେ ହେଁ ଖୁବ୍ ଶୀଘ୍ର କଥାସାହିତ୍ୟକୁ ନିଜର ମାଧ୍ୟମ ଭାବରେ ଗ୍ରହଣ କରିନେଲେ । ବ୍ୟକ୍ତିଗତ ଜୀବନ ଏହିପରି ବିଷାଦମୟ ହୋଇଥିଲେ ହେଁ ତଦ୍ୱାରା ସେ ସଙ୍କୁଚିତ ନ ହୋଇ ବରଂ ତାହାକୁ ନିଜ ସାହିତ୍ୟକୃତିରେ ସଫଳ ଭାବରେ ଉପଯୋଗ କରି ଲାଟିନ୍ ଆମେରିକାର କଥାସାହିତ୍ୟକୁ ଏକ ଯୁଗାନ୍ତକାରୀ ମୋଡ଼ ଦେଇଥିଲେ, ନିଜ ଶୈଳୀର ଚମତ୍କାରିତା ମାଧ୍ୟମରେ । ବିଷୟବସ୍ତୁ ବା ଚରିତ୍ରଠାରୁ ପରିସ୍ଥିତି ଉପରେ ଅଧିକ ଗୁରୁତ୍ୱ ଦେବା ହେଉଛି ତାଙ୍କ ସୃଷ୍ଟିର ବୈଶିଷ୍ଟ୍ୟ । ତାଙ୍କ ଲିଖିତ ଗଳ୍ପ 'ଥ୍ରି ଲେଟର୍ସ ଆଣ୍ଡ ଏ ଫୁଟ୍‌ନୋଟ୍'ର ଓଡ଼ିଆ ଅନୁବାଦ – ତିନୋଟି ଚିଠି ଓ ଗୋଟିଏ ପାଦଟୀକା ।

# ତିନୋଟି ଚିଠି ଓ ଗୋଟିଏ ପାଦଟୀକା

ମହାଶୟ,

ଆପଣଙ୍କ ନିକଟକୁ ମୁଁ ଏଇ କେତେଧାଡ଼ି ଲେଖି ପଠାଇବାର ଅନୁମତି ଲୋଡୁଛି । ଆଶା, ଆପଣ ଏହାକୁ ସହୃଦୟତାର ସହ ନିଜ ନାମରେ ପ୍ରକାଶ କରିବେ । ଏହି ଅନୁରୋଧର କାରଣ ହେଲା, ମୋର ଜାଣିବାରେ, ଏହା ମୋ ନାଁରେ ପଠାଗଲେ ଏହାକୁ କୌଣସି ସମ୍ବାଦପତ୍ର ଗ୍ରହଣ କରିବେ ନାହିଁ । ବରଂ ଆପଣ ଉଚିତ ମନେକଲେ ଲେଖାଟିକୁ ଅଧିକ ବଳିଷ୍ଠ କରିବାକୁ ଏଥିରେ ପୌରୁଷର କିଛି ଛାପ ଦେଇ ମୋ ଲେଖାର ଭାବକୁ ମଧ ମଦଳାଇ ପାରନ୍ତି ।

ମୋର କାମ ପାଇଁ ଗତ ପାଞ୍ଚବର୍ଷ ଧରି ପ୍ରତିଦିନ ଦୁଇଥର ମୋତେ ବସ୍ ଧରିବାକୁ ପଡ଼ିଥାଏ, ଯାହା ମୁଁ ପାଞ୍ଚବର୍ଷ ହେବ କରିଆସୁଛି । ଫେରିବାବେଳେ ମୋର କେତେକ ବାନ୍ଧବୀଙ୍କ ସଙ୍ଗେ ବେଳେବେଳେ ମୁଁ ଆସେ, କିନ୍ତୁ କାମକୁ ଗଲାବେଳେ ମୁଁ ସବୁବେଳେ ଏକୁଟିଆ ଯାଏ । ମୋତେ କୋଡ଼ିଏ ବର୍ଷ, ମୁଁ ଖୁବ୍ ପାତଳୀ ନୁହେଁ, ଡେଙ୍ଗୀ ଏବଂ ବର୍ଣ୍ଣରେ ଆଦୌ ମଳିନ ନୁହେଁ । ମୁହଁଟି ଅପେକ୍ଷାକୃତ ଭାବରେ ବଡ଼ ହେଲେ ହେଁ ଶୀର୍ଣ୍ଣ ନୁହେଁ । ମୋର ଆଖିଗୁଡ଼ିକ ଛୋଟ ନୁହେଁ ବୋଲି ମୋର ବିଶ୍ୱାସ । ଏହି ବାହ୍ୟ ବର୍ଣ୍ଣନା, ଆପଣ ଲକ୍ଷ୍ୟ କରିଥିବେ – ଯାହାର ଏକ ଅନତିରଂଜିତ ଚିତ୍ର ମୁଁ ଦେଲି, ତାହା ଅନେକ ଲୋକଙ୍କ ପକ୍ଷରେ ପ୍ରଯୁଜ୍ୟ, ପ୍ରକୃତ ପକ୍ଷରେ ଏତେ ଅଧିକ ଲୋକ ଯେ ମୁଁ କହିପାରେ ସମସ୍ତଙ୍କ ସମ୍ବନ୍ଧରେ ମତାମତ ନିର୍ଣ୍ଣୟ କରିବା ପାଇଁ ମୋର ଏକାନ୍ତ ସହାୟକ ହୋଇଥାଏ । ଆପଣ ମଧ ଜାଣନ୍ତି ଯେ ବସ୍‌ରେ ଚଢ଼ିବା ପୂର୍ବରୁ ଆପଣ - ପୁରୁଷମାନେ ଅଭ୍ୟାସବଶତଃ ବସ୍‌ରେ ଥିବା ଯାତ୍ରୀମାନଙ୍କ ଉପରେ ନିମିଷକ ମଧରେ ଆଖି ବୁଲାଇ ଆଣନ୍ତି ଝରକା ବାଟେ । ଏଭଳି ଭାବରେ ଆପଣ ସମସ୍ତଙ୍କ ମୁହଁକୁ ପରଖ କରି ନିଅନ୍ତି । (ଅବଶ୍ୟ କେବଳ ମହିଳାମାନଙ୍କର, କାରଣ ଆପଣମାନଙ୍କ ଆଗ୍ରହ ହିଁ କେବଳ ସେହିମାନଙ୍କଠାରେ) ଏହି ଛୋଟ ପର୍ବଟି ସମାପନ କରି ଆପଣ ଭିତରକୁ ଆସି ବସି ଯାଆନ୍ତି ।

ଅତି ଉତ୍ତମ କଥା; ଫୁଟ୍‌ପାଥ ଛାଡ଼ି ଲୋକଟିଏ ବସ ନିକଟକୁ ଆସି ଭିତରକୁ ଦୃଷ୍ଟି ନିକ୍ଷେପ କଲାମାତ୍ରେ ମୁଁ ସଠିକ୍ ଭାବରେ ଠଉରାଇ ନିଏ ସେ କି ଧରଣର

ଲୋକ । ଏଥିରେ ମୋର ଆଦୌ ଭୁଲ୍ ହୁଏ ନାହିଁ । ମୁଁ ଜାଣିପାରେ ଯେ ଦାୟିତ୍ୱବାନ୍ ଅଥବା କେବଳମାତ୍ର ଦଶଟି ସେଣ୍ଟ ଭଡ଼ା ଦେଇ ଏକ ସହଜ ସୁଲଭ ସାହଚର୍ଯ୍ୟର ସନ୍ଧାନରେ ଥିବା ଲୋକ । ମୁଁ ମଧ୍ୟ ସ୍ୱଚ୍ଛନ୍ଦରେ ଯିବାକୁ ଚାହୁଁଥିବା ଯାତ୍ରୀଙ୍କଠାରୁ ଝିଅଙ୍କ ପାଖରେ ଥିବା ସଙ୍କୀର୍ଣ୍ଣ ସ୍ଥାନକୁ ପସନ୍ଦ କରୁଥିବା ଲୋକଙ୍କୁ ତତ୍‌କ୍ଷଣାତ୍ ବାରି ଦେଇପାରେ ।

ମୋ ପାଖ ସିଟ୍‌ଟି ଖାଲି ଥିଲା ବେଳେ ଝରକା ବାହାରର ଚାହାଣୀରୁ ମୁଁ ନିର୍ଭୁଲ୍ ଭାବରେ ଠଉରାଇଦିଏ କେଉଁମାନେ ଅନାସକ୍ତ—ଯେଉଁଠି ପାରନ୍ତି ସେଇଠି ବସିଯାଇ ପାରନ୍ତି, କେଉଁମାନେ ସ୍ୱତ୍ୱାଗ୍ରହୀ—ବସିଯିବା ପରେ ମୁହଁ ବୁଲାଇ ଥରେ ମାତ୍ର ଆମ ଆଡ଼େ ନଜର ପକାନ୍ତି ସନ୍ତର୍ପଣରେ ଏବଂ ପରିଶେଷରେ କେଉଁମାନେ ହେଉଛନ୍ତି ଉଦ୍‌ଯୋଗୀ—ସାତସାତଟା ଖାଲି ସିଟ୍ ଅତିକ୍ରମ କରି ବସ୍‌ର ପଛପଟକୁ ଚାଲିଆସି ଅସ୍ୱସ୍ତିର ସହ ମୋ ପାର୍ଶ୍ୱରେ ବସି ପଡ଼ିବେ ।

କହିବାକୁ ଗଲେ ଏମାନେ ହିଁ ହେଉଛନ୍ତି ସବୁଠାରୁ କୌତୂହଳଜନକ । ଏକୁଟିଆ ଯାତାୟତ କରୁଥିବା ଝିଅମାନଙ୍କର ସ୍ୱଭାବସୁଲଭ ଆଚରଣର ଠିକ୍ ଓଲଟା, ଯଥା ସିଟ୍‌ରୁ ଉଠିପଡ଼ି ଭିତରପଟର ଜାଗାଟିକୁ ନବାଗତ ପାଇଁ ଖାଲି କରିଦେବା ପରିବର୍ତ୍ତେ ଉତ୍ସାହୀ ଆଗନ୍ତୁକଟି ଯାଇ ଯଥେଷ୍ଟ ସ୍ଥାନ ଛାଡ଼ିଦେଇ ମୁଁ ସିଧା ଝରକା ନିକଟକୁ ଉଠିଯାଏ ।

ଯଥେଷ୍ଟ ଜାଗା ? ଏହା ହେଉଛି ଏକ ଅର୍ଥହୀନ ଅଭିବ୍ୟକ୍ତି । ଆଗନ୍ତୁକଟି ପାଇଁ ଝିଅଟି ଦ୍ୱାରା ପରିତ୍ୟକ୍ତ ବେଞ୍ଚର ତିନିଚତୁର୍ଥାଂଶ ଜାଗା ମଧ୍ୟ ତା' ପାଇଁ କେବେହେଲେ ଯଥେଷ୍ଟ ନୁହେଁ । ଇଚ୍ଛା ଅନୁଯାୟୀ ଏପାଖ ସେପାଖ ହେବା ପରେ ସେ ହଠାତ୍ ଏକ ବିସ୍ମୟକର ନିଶ୍ଚଳତାର ଆବେଗରେ ଏପରି ଏକ ଅବସ୍ଥାକୁ ଚାଲିଯାଏ, ଯେତେବେଳେ ସେ ପକ୍ଷାଘାତ ରୋଗୀ ଭଳି ମନେହୁଏ । ତାହା କିନ୍ତୁ କେବଳ ଅଭିନୟ ମାତ୍ର, କାରଣ କେହି ଯଦି ସେହି ନିଶ୍ଚଳତାକୁ ସଂଶୟର ସହ ଲକ୍ଷ୍ୟ କରନ୍ତି, ସେ ଦେଖିପାରିବେ ଯେ ଭଦ୍ରଲୋକଙ୍କ ଶରୀରଟି ଅପ୍ରତ୍ୟକ୍ଷରେ ଏବଂ ତାଙ୍କର ଅନ୍ୟମନସ୍କତାର ଛଳନାକୁ ସୁହାଉଥିବା ଧୂର୍ତ୍ତତାର ସହିତ ଏକ କାଳ୍ପନିକ ସମତଳରେ ଆସ୍ତେ ଆସ୍ତେ ଖସି ଆସୁଥିବ, ଝିଅଟି ବସିଥିବା ଝରକା ଦିଗରେ ଯଦିଓ ସେ ତା ଆଡ଼େ ଚାହୁଁ ନଥିବେ ଅଥବା ତା ସମ୍ବନ୍ଧରେ ଆଗ୍ରହ ପୋଷଣ କଲାଭଳି ଆଦୌ ଜଣାପଡୁନଥିବେ ।

ଏମାନେ ଏହିଭଳି ଜଣେ ଦୃଢ଼ତାର ସହିତ କହିଦେଇପାରେ ଯେ ସେମାନେ ଚନ୍ଦ୍ର ସମ୍ବନ୍ଧରେ ହିଁ ଚିନ୍ତା କରୁଛନ୍ତି । ପ୍ରକୃତ ପକ୍ଷରେ କିନ୍ତୁ ଏହି ସମୟରେ ତାଙ୍କର ଡାହାଣ ଗୋଡ଼ (ଅଥଚ ବାଁ ଗୋଡ଼) ଅତି ସନ୍ତର୍ପଣରେ ଉପରୋକ୍ତ ସମତଳରେ ଖସି ଚାଲିଥିବ ।

ମୁଁ କିନ୍ତୁ ସ୍ୱୀକାର କରିବି ଯେ, ଏହା ଚାଲିଥିବା ବେଳେ ମୁଁ ଆଦୌ ବିରକ୍ତ ହୋଇ ନଥାଏ । ଝରକାଆଡ଼କୁ ଘୁଞ୍ଚିଗଲା ବେଳେ ଚାହାଣୀର ମାତ୍ର ଗୋଟିଏ ଝଲକରେ ମୁଁ କଳି ନେଇଥାଏ ରସିକ ପ୍ରବରଟିକୁ । ମୁଁ ଜାଣିନିଏ ତା'ର ଆବେଗର ତାଡ଼ନାରେ ସେ

ପ୍ରଥମଥର ପାଇଁ ବଶୀଭୂତ ହୋଇଥିବା ଉତ୍ସାହୀ ଯୁବକଟିଏ ଅଥବା ମୋର ସାମାନ୍ୟ ଦୁଶ୍ଚିନ୍ତାର କାରଣ ହେବା ଭଳି ନିଲଠାପଣରେ ପାରଙ୍ଗମ ପୁରୁଷପୁଙ୍ଗବଟିଏ ! ମୁଁ ଜାଣିପାରେ, ସେ ଜଣେ ଶିଷ୍ଟାଚାରସମ୍ପନ୍ନ ଯୁବକ ଅଥବା ଲଫଙ୍ଗାଟିଏ, ଜଣେ କଟା ଦାଗୀ ଅଥବା ଛୋଟକାଟର ପକେଟ୍‌ମାର୍‌ଟିଏ, ମନୋମୁଗ୍ଧକର ତୀକ୍ଷ୍ଣବୁଦ୍ଧି ସମ୍ପନ୍ନ ଲୋକଟିଏ ଅଥବା ସ୍ତ୍ରୀ ଲୋକର ପିଛା କରୁଥିବା ଇତର ଶ୍ରେଣୀର ଲୋକଟିଏ ।

ପ୍ରଥମ ଦୃଷ୍ଟିପାତରେ ଏହା ପ୍ରତୀୟମାନ ହୋଇପାରେ ଯେ ମାତ୍ର ଗୋଟିଏ ଶ୍ରେଣୀର ଲୋକ, ଅର୍ଥାତ୍ ଚୋରମାନେ ହିଁ କେବଳ ମୁହଁରେ ଛଳନାର ମୁଖା ପିନ୍ଧି ଗୋଡ଼କୁ ଧୀରେ ଧୀରେ ଚତୁରତାର ସହିତ ଖସାଇବାର କାର୍ଯ୍ୟ ସମ୍ପାଦନ କରିପାରନ୍ତି । ପ୍ରକୃତପକ୍ଷରେ କିନ୍ତୁ ତାହା ସେଭଳି ନୁହେଁ ଏବଂ ଏପରି ଜଣେ ହେଲେ ଝିଅ ନାହିଁ, ଯେ ଏହାକୁ କେବେହେଲେ ଉପଲବ୍‌ଧି କରିନାହିଁ । ବିଭିନ୍ନ ପର୍ଯ୍ୟାୟର ଲୋକଙ୍କୁ ନେଇ ତା' ନିକଟରେ ଆତ୍ମରକ୍ଷାର ସମୁଚିତ ପ୍ରସ୍ତୁତି ଥାଏ । ଅଳ୍ପବୟସ୍କ ଅଥବା ମଳିନବସ୍ତ୍ର ପରିହିତ କରିଥିବା ଲୋକଟିକୁ କେବଳ ଏକ ପକେଟ୍‌ମାର୍ ଭାବରେ ଗଣ୍ୟ କରାଯାଇପାରେ ।

ଲୋକଟି ଅବଲମ୍ବନ କରିଥିବା କୌଶଳରେ କେବେହେଲେ ପରିବର୍ତ୍ତନ ହୁଏ ନାହିଁ । ପ୍ରଥମେ ଆକସ୍ମିକ ନିଶ୍ଚଳତା ଏବଂ ଚନ୍ଦ୍ର ସମ୍ବନ୍ଧରେ ଚିନ୍ତାଗ୍ରସ୍ତ ହେବାର ଭାବଭଙ୍ଗୀ । ଏହାପରେ ଆମ ମୁହଁ ଉପରେ ଅଳ୍ପ ସମୟ ପାଇଁ ଲାଗି ରହୁଥିବା ଶରୀରଭେଦୀ ଏକ କ୍ଷଣିକ ଦୃଷ୍ଟିପାତ, ଯାହାର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ତାଙ୍କ ଗୋଡ଼ଠାରୁ ଆମ ଗୋଡ଼ର ବ୍ୟବଧାନର କଳନା ମାତ୍ର । ଏତକ ଖବର ହାତକୁ ଆସିବା ପରେ ବର୍ତ୍ତମାନ ବିଷୟ ଯାତ୍ରାର ଶୁଭାରମ୍ଭ ।

ଆପଣ–ପୁରୁଷମାନେ ଆଙ୍ଗୁଳି ଓ ଗୋଇଠିର ଅକାତର ସଞ୍ଚାଳନରେ ଗୋଡ଼କୁ କ୍ରମଶଃ ଘୁଞ୍ଚାଇ ଆଣିବା ଭଳି କଳାକୌଶଳର ଅବତାରଣାଠାରୁ ଆହୁରି ଅଧିକ କିଛି କୌତୂହଳଜନକ ଦୃଶ୍ୟ ଅଛି ବୋଲି ମୁଁ ମନେକରେ । ଆପଣମାନେ ହୁଏତ ଏ ପ୍ରହସନକୁ ଦେଖିପାରିବେ ନାହିଁ, କିନ୍ତୁ ଗୋଟିଏ ପ୍ରାନ୍ତରେ ଥିବା ଏଗାର ନମ୍ବର ଯୋତା ସହିତ ଅନ୍ୟ ପ୍ରାନ୍ତରେ ବସ୍‌ର ଛାତ ନିକଟରେ ବିକୃତ ଓ ନିର୍ବୋଧ ଭାବ ବହନ କରୁଥିବା ମୁହଁଟିର (ନିଃସନ୍ଦେହରେ ଭାବାବେଗ ଯୋଗୁ) ମନୋରମ ମୂଷା-ବିଲେଇ ଖେଳ ଉଦ୍ଭଟତାର ନମୁନା ଆପଣମାନଙ୍କ ଅନ୍ୟ ଯେକୌଣସି କାର୍ଯ୍ୟରେ ମଧ୍ୟ ଦେଖିବାକୁ ମିଳେ ନାହିଁ ।

ମୁଁ ଆଗରୁ କହିଛି ଯେ, ଏସବୁ କାର୍ଯ୍ୟକଳାପରେ ମୁଁ ବିରକ୍ତ ହୁଏ ନାହିଁ । ଏବଂ ମୋ ମନୋରଞ୍ଜନର ଆଧାର ହେଉଛି ଏହି ରହସ୍ୟ – ଯେଉଁ ମୁହୂର୍ତ୍ତରୁ ସମ୍ମୋହକଟି ପାଦ ଦ୍ୱାରା ଅତିକ୍ରାନ୍ତ ହେବାକୁ ଥିବା ଦୂରତ୍ୱର ଏକ ସଠିକ୍ ଚିତ୍ର ନେଇଯାଏ, ତା'ପରଠାରୁ ସେ କ୍ୱଚିତ୍ ଅଧୋଭାଗକୁ ଦୃଷ୍ଟି ନିକ୍ଷେପ କରେ । ନିଜର ହିସାବରେ ସେ ଅଟଳ ଥାଏ ଏବଂ ବାରମ୍ବାର ଦୃଷ୍ଟି ନିକ୍ଷେପ ଦ୍ୱାରା ଆମକୁ ସାବଧାନ କରିଦେବାର

ଅଭିପ୍ରାୟ ତା'ର ଆଦୌ ନଥାଏ । ଆପଣ ସ୍ପଷ୍ଟ ଭାବରେ ଉପଲବ୍ଧି କରିବେ ଯେ ତାହାର ଆକର୍ଷଣ ରହିଛି ଦେହ ସ୍ପର୍ଶରେ, ଖାଲି ସାଧାରଣ ଦର୍ଶନରେ ନୁହେଁ ।

ଭଲ କଥା । ଯେତେବେଳେ ଏହି ସୁଶୀଳ ସହଯାତ୍ରୀଟି ଅଧାବାଟ ଯାଏଁ ଆଗେଇ ଯାଇଥାଏ, ତାହାର ଚାତୁର୍ଯ୍ୟକୁ ମୁଁ ଅନୁକରଣ କରିବା ଆରମ୍ଭ କରିଦିଏ ଏବଂ ଏହାକୁ ମୁଁ ସେଭଳି ଧୂର୍ତ୍ତତା ଓ ଅନ୍ୟମନସ୍କତାର ଛଳନା – ଧରନ୍ତୁ ମୋର କଣ୍ଢେଇ ବିଷୟରେ ଭାବିବାର ଛଳନାର ସହିତ ଚଳାଇ ରଖେ । କେବଳ ମୋର ଗୋଡ଼ ତା'ଠାରୁ ଘୁଞ୍ଚି ଯାଉଥାଏ । ବେଶୀ ନୁହେଁ, ଅଳ୍ପ କେତେ ଇଞ୍ଚ ହେଉଛି ଯଥେଷ୍ଟ ।

ମୋର ସହଯାତ୍ରୀଟିର ବିସ୍ମୟ ହେଉଛି ବର୍ତ୍ତମାନ ପାଇଁ ଦର୍ଶନୀୟ, ଯେତେବେଳେ ଶେଷର ସ୍ଥିରୀକୃତ ସ୍ଥାନରେ ପହଞ୍ଚି ସେ କିଛି ମଧ ସ୍ପର୍ଶ କରିପାରେ ନାହିଁ । ତା'ର ଏଗାର ନମ୍ବର ଯୋତାଟି ସମ୍ପୂର୍ଣ୍ଣ ନିଃସଙ୍ଗ । ଏହା ତାହା ପାଇଁ ମାତ୍ରାଧିକ ହୋଇପଡ଼େ । ପ୍ରଥମେ ସେ ତଳକୁ ଚାହେଁ, ତା'ପରେ ମୋ ମୁହଁକୁ । କଣ୍ଢେଇ ସହିତ କ୍ରୀଡ଼ାରତ ମୋର ମନ କିନ୍ତୁ ବୁଲୁଛି ସହସ୍ରଯୋଜନ ଦୂରରେ; କିନ୍ତୁ ଲୋକଟି ଅସଲ କାରସାଦି ବୁଝିବାକୁ ଆରମ୍ଭ କରେ ।

ସତର ଥରକୁ ପନ୍ଦର ଥର (ମୋର ସୁଦୀର୍ଘ ଅଭିଜ୍ଞତାରୁ ଏହି ହିସାବ ସଂଗୃହୀତ), ବିରକ୍ତିରେ ଭଦ୍ରଲୋକ ଅଭିଯାନରୁ ଓହରି ଯାଆନ୍ତି । ବଳକା ଦୁଇଟି କ୍ଷେତ୍ରରେ ମୋତେ ଚେତାବନୀର ଚାହାଣୀ ନିକ୍ଷେପ କରିବାକୁ ପଡ଼ିଥାଏ । ଏହା ଚାହାଣୀ ଛଡ଼ିଆରେ ଲାଞ୍ଛନା, ତାଚ୍ଛଲ୍ୟ ଅଥବା କ୍ରୋଧର ଭାବ ପ୍ରକାଶ କରିବାର କୌଣସି ଆବଶ୍ୟକତା ନାହିଁ –ଲୋକଟି ଆଡ଼େ ସିଧାସଳଖ ନ ଚାହିଁ କେବଳ ମୁଣ୍ଡଟି ବୁଲେଇଦେଲେ ହିଁ ଯଥେଷ୍ଟ । ଏସବୁ କ୍ଷେତ୍ରରେ ଆକସ୍ମିକ ଭାବରେ ଆମମାନଙ୍କ ପ୍ରତି ପ୍ରକୃତରେ ଏବଂ ଗଭୀର ଭାବରେ ଆକୃଷ୍ଟ ହୋଇପଡ଼ିଥିବା ବ୍ୟକ୍ତିଟି ସହିତ ଦୃଷ୍ଟି ବିନିମୟ ନକରିବା ହିଁ ସବୁଠାରୁ ଶ୍ରେୟସ୍କର । ଯେ କୌଣସି ଗୋଟିଏ ଛୋଟକୋଟିଆ ପକେଟ୍‌ମାର୍ ମଧ୍ୟରେ ଏକ ବିପଦ୍‌ଜନକ ଚୋରର ସମ୍ଭାବନା ସବୁବେଳେ ଲୁକ୍‌କାୟିତ । ମୋଟା ଟଙ୍କା ଦାୟିତ୍ୱରେ ଥିବା କ୍ୟାସିୟର୍‌ମାନଙ୍କୁ ଏହା ବେଶ୍ ଭଲଭାବରେ ଜଣା । ଏହା ମଧ୍ୟ ଆପଣଙ୍କର ଏହି ଗୁଣମୁଗ୍ଧା ଭଳି ଅନ୍ୟ ତରୁଣୀମାନଙ୍କୁ ବେଶ୍ ଭଲଭାବରେ ଜଣା, ଯାହାର ମୁହଁ ଓ ଆଖି ଛୋଟ ନୁହେଁ, ଗଢ଼ଣରେ ଯେ ସେପରି ପତଳୀ ନୁହେଁ ଓ ବର୍ଣ୍ଣନରେ ଯେ ଶ୍ୟାମଳୀ ନୁହେଁ ।

ଆପଣଙ୍କର

ଏମ୍. ଆର୍.

ଆଦରଣୀୟା,

ଆପଣଙ୍କର ଅନୁଗ୍ରହ ପାଇଁ ଗଭୀର ଭାବରେ କୃତଜ୍ଞ । ଅନୁରୋଧ ମୁତାବକ ଆପଣଙ୍କ ମନୋଭାବକୁ ପ୍ରତିଫଳିତ କରୁଥିବା ଲେଖାଟିରେ ମୁଁ ଆନନ୍ଦରେ ମୋର ନାମ

ସଂଯୋଗ କରିବି । କିନ୍ତୁ ଆପଣଙ୍କର ଏକାନ୍ତ ସହଯୋଗୀ ଭାବରେ ମୋର ଏହି ପ୍ରଶ୍ନଗୁଡ଼ିକର ଉତ୍ତର ଆପଣଙ୍କ ନିକଟରୁ ପାଇବା ପାଇଁ ମୁଁ ଅତ୍ୟନ୍ତ ଆଗ୍ରହୀ । ଆପଣ ବର୍ଣ୍ଣନା କରିଥିବା ଏହି ସତରଟି ପକ୍‌କା ନମୁନାକୁ ଛାଡ଼ିଦେଲେ ଆପଣ କ'ଣ କେବେହେଲେ ଡେଙ୍ଗା ବା ଗେଡ଼ା, ଗୋରା ବା ଶ୍ୟାମଳ, ସ୍ୱାସ୍ଥ୍ୟବାନ୍ ଅଥବା ଶୀର୍ଣ୍ଣକାୟ କୌଣସି ସହଯାତ୍ରୀ ପ୍ରତି ସାମାନ୍ୟତମ ଦୁର୍ବଳତା ବି ଅନୁଭବ କରି ନାହାନ୍ତି ? କେବେହେଲେ କ'ଣ ନିଜକୁ ସମର୍ପଣ କରିଦେବାର ସାମାନ୍ୟତମ ଲାଳସାରେ ବଶବର୍ତ୍ତୀ ହୋଇ ନାହାନ୍ତି ଯଦ୍ୱାରା ଆପଣଙ୍କ ଗୋଡ଼କୁ ଦୂରେଇ ନବାର ପ୍ରୟାସ ଆପଣଙ୍କୁ ନିତାନ୍ତ ଅସହଣୀୟ ଓ ଅସ୍ୱସ୍ତିକର ମନେ ହୋଇଛି ?

ହୋ: କି:

ମହାଶୟ,

ହଁ, ନିସଂକୋଚରେ କହିଲେ, କାହାରି ନିକଟରେ ନିଜକୁ ସମର୍ପିଦେବାର ଲାଳସାର ବଶବର୍ତ୍ତୀ ହୋଇଥିଲି ଜୀବନରେ ମାତ୍ର ଥରେ । ନିର୍ଦ୍ଦିଷ୍ଟ ଭାବରେ କହିଲେ ମୁଁ ଅନୁଭବ କରିଥିଲି, ଆପଣ ଉଲ୍ଲେଖ କରିଥିବା ମୋ ଗୋଡ଼ର ସେହି ଶିଥିଳତାର ଅନୁଭୂତି । ସେ ଜଣକ ଥିଲେ ଆପଣ ! କିନ୍ତୁ ତାହାର ସୁଯୋଗ ଆପଣ ନେଇ ପାରି ନଥିଲେ ।

ଏମ୍. ଆର୍.



*ଅନୁବାଦ :* **ନରେନ୍ଦ୍ର ନାରାୟଣ ଦାସ**

# ସାଦତ୍ ହାସନ୍ ମାଣ୍ଟୋ

*ପ୍ରଖ୍ୟାତ ଔପନ୍ୟାସିକ ସଲ୍‌ମନ୍ ରୁସ୍‌ଦିଙ୍କ ଭାଷାରେ 'ସାଦତ୍ ହାସାନ୍ ମାଣ୍ଟୋ' (୧୯୧୨-୫୫) ନିର୍ବିବାଦରେ ଆଧୁନିକ ଭାରତୀୟ ସାହିତ୍ୟର ଜଣେ ଅପ୍ରତିଦ୍ୱନ୍ଦ୍ୱୀ କଥାକାର ।' ତାଙ୍କର ଲେଖା ଉର୍ଦ୍ଦୁ ଭାଷାରେ । ଭାରତବର୍ଷର ପଞ୍ଜାବ୍ ପ୍ରଦେଶସ୍ଥିତ ସମ୍ବ୍ରାଲ୍‌ଠାରେ ଜନ୍ମ । ମୃତ୍ୟୁ ପାକିସ୍ତାନର ଲାହୋର୍‌ଠାରେ । ଆଧୁନିକ ଶିକ୍ଷା ପ୍ରତି ତାଙ୍କର ଆଗ୍ରହ ଥିଲା ଖୁବ୍ କମ୍ । ବହୁବାର ସେ ପରୀକ୍ଷାରେ ଅକୃତକାର୍ଯ୍ୟ ହୋଇଥିଲେ । ଏପରିକି ଯେଉଁ ଉର୍ଦ୍ଦୁ ଭାଷାରେ ସେ ବହୁ ମୌଳିକ ସାହିତ୍ୟ ସୃଷ୍ଟି କରିଛନ୍ତି, ସେହି ଭାଷାରେ ସୁଦ୍ଧା ସେ ପରୀକ୍ଷାରେ କୃତକାର୍ଯ୍ୟ ହେବାକୁ ଅସମର୍ଥ ହୋଇଥିଲେ ! ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡ, ଇଂରେଜ ଶାସନର ନିଷ୍ପେଷଣ, ସ୍ୱାଧୀନତା ଆନ୍ଦୋଳନ ଓ ଭାରତ ବିଭାଜନକାଳୀନ ନରସଂହାରର ଅନୁଭୂତି ତାଙ୍କୁ ଜଣେ ପରମ୍ପରା ବିରୋଧୀ ବିପ୍ଳବୀ କରିଥିଲା । ବାରି ଆଲିଗ୍ ନାମ ଜଣେ ବ୍ୟକ୍ତିର ପ୍ରବର୍ତ୍ତନା ହିଁ ତାଙ୍କୁ ସାହିତ୍ୟ ପ୍ରତି ଆକୃଷ୍ଟ କରିଥିଲା । ଫରାସୀ ଲେଖକ ଭିକ୍ଟର ହ୍ୟୁଗୋଙ୍କର ନାଟକ 'ଦି ଲାଷ୍ଟ ଡେଜ୍ ଅଫ୍ ଏ କଣ୍ଡେମ୍‌ଡ ମ୍ୟାନ୍'ର ଉର୍ଦ୍ଦୁ ଅନୁବାଦରୁ ହିଁ ତାଙ୍କ ସାହିତ୍ୟିକ ଜୀବନର ଆରମ୍ଭ । ଓସ୍କାର ୱାଇଲ୍‌ଡଙ୍କ 'ଭେନ୍'ର ଉର୍ଦ୍ଦୁ ଅନୁବାଦ ୧୯୩୮ରେ ପ୍ରକାଶିତ ହୋଇ ତାଙ୍କୁ ଲୋକପ୍ରିୟ କରିଥିଲା । ମାଣ୍ଟୋଙ୍କ ଗଳ୍ପ ମୁଖ୍ୟତଃ ତିନି ଶ୍ରେଣୀର —ତାଙ୍କ ପ୍ରିୟ ବମ୍ବେ ସହର ଓ ପଞ୍ଜାବର ତଳିଆ ଶ୍ରେଣୀର ଲୋକ, ଅନ୍ଧାରି ମୁଲକରେ ସଢୁଥିବା ମଣିଷ ବିଶେଷ କରି ବେଶ୍ୟା ଓ ସେମାନଙ୍କ ଦଲାଲ୍, ଭାରତ ବିଭାଜନ ସମୟରେ ସାମ୍ପ୍ରଦାୟିକ ଦଙ୍ଗା ଓ ପଣ୍ଡିତ, ମୌଲବୀମାନଙ୍କର ଶଠତାର କାହାଣୀ । ଘରଣୀମାନଙ୍କ ଅପେକ୍ଷା ଗଣିକାମାନେ, ମାଣ୍ଟୋଙ୍କ*

ପାଇଁ ଅଧିକ ଚର୍ଚ୍ଚାର ବିଷୟ ଓ ରୋଷେଇଆଟି ସରକାରୀ ଚାକିରିଆଠୁଁ ଅଧିକ ମାନବିକ । ତାଙ୍କର ସବୁ ଶ୍ରଦ୍ଧା ସମାଜର ଏଇ ନାମମାତ୍ର ମଣିଷମାନଙ୍କ ପାଇଁ । ଏଥିପାଇଁ ତତ୍‌କାଳୀନ ପ୍ରୋଗ୍ରେସିଭ୍ ରାଇଟର୍ସ ମୁଭ୍‌ମେଣ୍ଟ ତାଙ୍କ ରିଆକ୍‌ସନାରୀ ବୋଲି କହିବାକୁ ମଧ୍ୟ ପଛେଇ ନଥିଲା ! ତାଙ୍କୁ ଅନୁଭବ ଏତେ ନିଚ୍ଛକ ଓ ତୀବ୍ର ଯେ ସମସ୍ତ ଲେଖାରୁ ତାଙ୍କର ଅନୁଭୂତିର ଗନ୍ଧ ବାରିହୁଏ । ତାଙ୍କର ଗଳ୍ପ 'Kingdom's End'ର ଓଡ଼ିଆ ରୂପାନ୍ତର 'ସାମ୍ରାଜ୍ୟର ସମାପ୍ତି' ।

# ସାମ୍ରାଜ୍ୟର ସମାପ୍ତି

ଫୋନ୍ ବାଜିଲା । ମନମୋହନ ରିସିଭର୍ ଉଠାଇଲା ।

'ହେଲୋ, ୪୪୪୫୭ ।'

'ମୁଁ ଦୁଃଖିତ; ଭୁଲ୍ ନମ୍ବର ।' ଗୋଟିଏ ନାରୀକଣ୍ଠ କହିଲା ।

ମନମୋହନ ରିସିଭର ରଖି ବହି ପଢ଼ାରେ ମନଦେଲା; ଯାହାକୁ ଅନ୍ତତଃ କୋଡ଼ିଏ ଥର ପଢ଼ିସାରିଥିଲା । ବହିଟି ଯେ ଏମିତି କିଛି ଖାସ୍ ଥିଲା, ତା' ନୁହେଁ । କିନ୍ତୁ କୋଠରୀରେ ଏହାହିଁ ଥିଲା ଏକମାତ୍ର ବହି । ବହିର ଶେଷ ପୃଷ୍ଠ ଗୁଡ଼ିକ ନଥିଲା ।

ଗୋଟିଏ ସପ୍ତାହ ହେଲା ମନମୋହନ ଅଫିସ୍ ରୁମ୍‌ଟିର ଏକଚାଟିଆ ଅଧିକାରୀ । ରୁମ୍‌ଟି ଥିଲା ଜଣେ ବନ୍ଧୁର, ଯେ ବ୍ୟବସାୟ ଋଣ ସଂଗ୍ରହ ପାଇଁ ସହର ବାହାରକୁ ଯାଇଥିଲା । ବିଶାଳ ସହରରେ ଯେଉଁ ହଜାର ହଜାର ଗୃହହୀନ ଲୋକ ଫୁଟ୍‌ପାଥରେ ରାତି ବିତାନ୍ତି, ସେମାନଙ୍କ ଭିତରୁ ମନମୋହନ ଜଣେ । ବନ୍ଧୁ ଜଣକ ନିଜ ଅନୁପସ୍ଥିତିରେ ଅଫିସ୍‌ରେ ରହିବା ପାଇଁ ଏବଂ ଆସବାବପତ୍ର ଉପରେ ନଜର ରଖିବା ପାଇଁ ଅନୁରୋଧ କରିଥିଲା ।

ସେ କାମକୁ ଘୃଣା କରୁଥିଲା ଓ ପ୍ରାୟ ବାହାରକୁ ଯାଉ ନଥିଲା । ସାମାନ୍ୟ ଚେଷ୍ଟା କରିଥିଲେ ହୁଏତ ସେ କୌଣସି ସିନେମାର ନିର୍ଦ୍ଦେଶକ ହୋଇ ପାରିଥାନ୍ତା । ଚଳଚ୍ଚିତ୍ର ନିର୍ଦ୍ଦେଶନାରେ ତା'ର ପାରଦର୍ଶିତା ଥିଲା । କିନ୍ତୁ କିଛି ଦିନ ପରେ ସେ କାମ ତାକୁ ଭଲ ଲାଗିଲାନି । ଆଉଥରେ ସେଇ ଦାସତ୍ୱ ମଧ୍ୟକୁ ପ୍ରବେଶ କରିବାକୁ ତା'ର ଜମା ଇଚ୍ଛା ନଥିଲା ।

ଶାନ୍ତ, ଶିଷ୍ଟ, ସୁଧାର ମଣିଷଟିଏ । ନିଜର ସେମିତି କିଛି ବ୍ୟକ୍ତିଗତ ଖର୍ଚ୍ଚ ନଥାଏ । ତା'ର ସକଳ ଆବଶ୍ୟକତାର ଚିଠା କଲେ ଏମିତି ହେବ; ସକାଳେ ଦୁଇଖଣ୍ଡ ପାଉଁରୁଟି ସ୍ଲାଇସ୍ ଓ କପେ ଚା', ଅପରାହ୍ନରେ ସାମାନ୍ୟ ତରକାରୀ ଓ ପାଉଁରୁଟି, ଏକ ପ୍ୟାକେଟ୍ ସିଗାରେଟ୍ । ସୌଭାଗ୍ୟବଶତଃ ତା'ର ବନ୍ଧୁମାନେ ଏ ଆବଶ୍ୟକତା ପୂରଣ କରିବା ପାଇଁ ପ୍ରସ୍ତୁତ ଥିଲେ ।

ମନମୋହନର ପରିବାର ବା ନିକଟ ସମ୍ପର୍କୀୟ କେହି ନଥିଲେ । ଅଭାବ ପଡ଼ିଲେ ସେ କିଛି ନଖାଇ ଦିନଦିନ ଧରି ରହିଯାଇ ପାରୁଥିଲା । ବନ୍ଧୁମାନଙ୍କ ନିକଟରେ ମଧ୍ୟ ତା' ସମ୍ପର୍କରେ ବେଶୀକିଛି ତଥ୍ୟ ନଥିଲା । ସେମାନେ କେବଳ ଏତିକିମାତ୍ର ଜାଣିଥିଲେ

ଯେ ପିଲାଦିନେ ସେ ଘରୁ ପଳାଇ ଆସି ବମ୍ବେର ଫୁଟ୍‌ପାଥ୍‌ମାନଙ୍କରେ ଅନେକ ଦିନ ଧରି ରହୁଥିଲା । ତା' ଜୀବନରେ କେବଳ ଗୋଟିଏ ଅଭାବ ଥିଲା — ନାରୀ ।

'ମତେ କେହି ଜଣେ ନାରୀ କେବେ ଯଦି ଭଲପାଏ, ମୋ ଜୀବନର ଗତି ବଦଳିଯିବ,' ସେ କହେ ।

'ତେବେ ତୁ କୌଣସି ନାରୀକୁ ଭଲ ପାଇନାହୁଁ କାହିଁକି ?'

ସାଙ୍ଗମାନେ ପଚାରନ୍ତି ।

'ଭଲ ପାଇବାର କ'ଣ ରୋମାଞ୍ଚ ଅଛି ଯଦି ପୁରୁଷକୁ ପ୍ରଥମ ପଦକ୍ଷେପ ନେବାକୁ ପଡ଼େ ?'

ଦିନ ବଢ଼ି ଯାଇଥିଲା । ମଧ୍ୟାହ୍ନ ଭୋଜନ ପାଇଁ ସମୟ ହୋଇ ସାରିଥିଲା । ହଠାତ୍ ଫୋନ୍ ବାଜିଲା । ସେ ଫୋନ୍ ଉଠାଇଲା ।

'ହେଲୋ, ୪୪୪୫୭ ।'

'୪୪୪୫୭ ?' ଜଣେ ନାରୀକଣ୍ଠର ଆବାଜ୍ ଆସିଲା ।

'ହଁ...' ମନମୋହନ ଉତ୍ତର ଦେଲା ।

'ଆପଣ କିଏ ?' ନାରୀକଣ୍ଠ ପଚାରିଲା ।

'ମୁଁ ମନମୋହନ ।'

କିଛି ଜବାବ ମିଳିଲାନି ।

'ଆପଣ କାହା ସହିତ କଥା ହେବାକୁ ଚାହୁଁଛନ୍ତି ?'

ସେ ପଚାରିଲା ।

'ଆପଣଙ୍କ ସହିତ ।'

'ମୁଁ ?'

'ଆପଣଙ୍କର ଯଦି ଆପତ୍ତି ନଥାଏ ।'

'ନା — ଆପତ୍ତି କାହିଁକି କରିବି ?'

'ଆପଣଙ୍କ ନାମ କ'ଣ କହିଲେ —ମଦନମୋହନ ?'

'ନା, ମନମୋହନ ।'

ତା'ପରେ ନୀରବତା ।

'ମୁଁ ଭାବିଲି, ଆପଣ ମୋ ସହିତ କଥା ହେବାକୁ ଚାହୁଁଛନ୍ତି ।'

'ହଁ ।'

'ତେବେ କୁହନ୍ତୁ ।'

'କ'ଣ କହିବି ମୁଁ ଠିକ୍ କରିପାରୁନି । ଆପଣ କିଛି କହୁନାହାନ୍ତି ?'

'ଠିକ୍ ଅଛି,' ମନମୋହନ କହିଲା । 'ମୁଁ ତ ଆପଣଙ୍କୁ ମୋ ନାଁ କହି ସାରିଛି । ଆପାତତଃ ଏଇ ଅଫିସ୍ ହିଁ ମୋ ଠିକଣା । ସହରର ଫୁଟ୍‌ପାଥ୍‌ମାନଙ୍କରେ ଶୋଇବାରେ ମୁଁ ଅଭ୍ୟସ୍ତ । ଏଇ ସପ୍ତାହେ ହେବ ଏଇ ଅଫିସ୍ ଟେବୁଲ୍ ଉପରେ ଶୋଉଛି ।

'ମଶାମାନଙ୍କଠାରୁ ଆପଣ କିପରି ନିଜକୁ ରକ୍ଷା କରୁଥିଲେ ? ଫୁଟ୍‌ପାଥିରେ ମଶାରୀ ଟାଣି ?'

ମନମୋହନ ହସିଲା । 'ଏ ପ୍ରଶ୍ନର ଉତ୍ତର ଦେବା ପୂର୍ବରୁ ମୁଁ କହି ରଖୁଛି – ମୁଁ କେବେ ମିଛ କହେନି । କେତେବର୍ଷ ହେଲା ମୁଁ ଫୁଟ୍‌ପାଥିରେ ଶୋଉଛି । ଏଇ ଅଫିସ୍ ମୋ ଦଖଲକୁ ଆସିବା ଦିନୁ –ମୁଁ ଏଇଠି ରହୁଛି ।'

'ଆପଣ ସମୟ କଟାନ୍ତି କିପରି ?'

'ମୋ ପାଖରେ ବହିଟିଏ ଅଛି । ବହିର ଶେଷ ପୃଷ୍ଠାଗୁଡ଼ିକ ନାହିଁ । କିନ୍ତୁ ଏହାକୁ ମୁଁ କୋଡ଼ିଏ ଥର ପଢ଼ି ସାରିଲିଣି । ସେଇ ହଜିଲା ପୃଷ୍ଠାକୁ ଯେଉଁଦିନ ମୁଁ ପାଇବି, ଦୁଇ ପ୍ରେମିକଙ୍କର ଶେଷ ପରିଣତି କ'ଣ ହେଲା ଜାଣିବି ।'

'ଆପଣ ଭାରି ମଜାଳିଆ ଲୋକ ପରି ଜଣାପଡୁଛନ୍ତି –'

ନାରୀ କଣ୍ଠର ଆବାଜ୍ ଶୁଭିଲା ।

'ଆପଣ କ'ଣ କରନ୍ତି ?'

'କ'ଣ କରେ ?'

'ହଁ, ମାନେ ଆପଣଙ୍କ ଜୀବିକା ?'

'ଜୀବିକା କିଛି ନାହିଁ । କାମ କରୁନଥିବା ମଣିଷର ଜୀବିକା ବା କ'ଣ ଥାଇପାରେ ? ଆପଣ ପଚାରୁଛନ୍ତି ଯେତେବେଳେ ମୁଁ ଏତିକି କହିପାରେ ଯେ ଦିନ ତମାମ୍ ବୁଲିବା ଓ ରାତିରେ ଶୋଇବା ମୋର କାମ ।'

'ଆପଣ କ'ଣ ଏମିତି ଜୀବନକୁ ଭଲ ପାଆନ୍ତି ?'

'ରହନ୍ତୁ', ମନମୋହନ କହିଲା । 'ଏହି ପ୍ରଶ୍ନଟି ମୁଁ ନିଜେ ନିଜକୁ କେବେ ପଚାରି ନାହିଁ । ଆପଣ ମନେପକାଇ ଦେବାରୁ ମୁଁ ପ୍ରଥମଥର ପାଇଁ ନିଜକୁ ସେଇ ପ୍ରଶ୍ନ ପଚାରୁଛି । ମୁଁ କ'ଣ ସତରେ ମୋ ଜୀବନକୁ ଭଲ ପାଏ ?'

'କ'ଣ ଉତ୍ତର ଆପଣ ପାଇଲେ ?'

'ଏହାର ଉତ୍ତର ଆବଶ୍ୟକ କିଛି ନାହିଁ; କିନ୍ତୁ ଏତେଦିନ ଏମିତି ଚଳିବା ପରେ ଏ ପ୍ରକାର ଜୀବନକୁ ଭଲପାଏ ବୋଲି ଅନୁମାନ କରିବା ସ୍ୱାଭାବିକ ହେବ ।'

ସେପଟୁ ହସ ଶୁଭିଲା ।

'ଆପଣ ଏତେ ସୁନ୍ଦର ହସନ୍ତି ?' ମନମୋହନ କହିଲା ।

'ଧନ୍ୟବାଦ', ନାରୀଟି ଲାଜକୁଳୀ କଣ୍ଠରେ କହିଲା । ଟେଲିଫୋନ୍ ଲାଇନ୍ କଟିଗଲା । କିନ୍ତୁ ଅନେକ ସମୟ ଧରି ମନମୋହନ ରିସିଭରଟି ତଳେ ରଖି ପାରିଲା ନାହିଁ । ତାକୁ ହସ ଲାଗିଲା ।

ତା'ପର ଦିନ ସକାଳ ଆଠଟାବେଳେ ଟେଲିଫୋନ୍ ପୁଣି ବାଜିଲା । ମନମୋହନ ଶୋଇଥାଏ । ଟେଲିଫୋନ୍ ଶବ୍ଦରେ ତା' ନିଦ ଭାଙ୍ଗିଗଲା । ସେ ହାଇ ମାରିଲା ଓ ରିସିଭର ଉଠାଇଲା ।

'ହେଲୋ, ୪୪୪୫୭ରୁ କହୁଛି ।'

'ସୁପ୍ରଭାତ.. ଓ ଆପଣ ! ସୁପ୍ରଭାତ !'

'ଆପଣ କ'ଣ ଶୋଇଥିଲେ ?'

'ହଁ, ଆପଣ ଜାଣନ୍ତି । ମୁଁ ଏଠାକୁ ଆସିବା ଦିନଠାରୁ ଭାରି ଅଳସୁଆ ହୋଇଗଲିଣି । ପୁଣି ଫୁଟ୍‌ପାଥ୍‌କୁ ଫେରିଗଲେ, ନିଶ୍ଚୟ ଅସୁବିଧାରେ ପଡ଼ିବି ।'

'କାହିଁକି ?'

'ଫୁଟ୍‌ପାଥ୍‌ରେ ଶୋଇଲେ ସକାଳ ୫ଟା ପୂର୍ବରୁ ଉଠିବାକୁ ପଡ଼ିବ ।'

ସେପଟୁ ହସ ଶୁଣାଗଲା ।

'କାଲି ଆପଣ ହଠାତ୍ ଫୋନ୍ ରଖିଦେଲେ ?' ମନମୋହନ କହିଲା ।

'ମୁଁ ଭାରି ଭଲ ହସେ ବୋଲି ଆପଣ କାହିଁକି କହିଲେ ?'

'ସୁନ୍ଦର ପଦାର୍ଥକୁ ପ୍ରଶଂସା କରିବାରେ ଭୁଲ୍ କେଉଁଠି ରହିଲା ?'

'ଜମା ଭୁଲ୍ ନାହିଁ ।'

'ଆପଣ କିଛି ସର୍ତ୍ତ ରଖନ୍ତୁ ନାହିଁ । ମୁଁ କେବେ କୌଣସି ସର୍ତ୍ତକୁ ଗ୍ରହଣ କରେ ନାହିଁ । ଆପଣ ଯଦି ହସିବେ, ମୁଁ ନିଶ୍ଚୟ ଆପଣ ସୁନ୍ଦର ହସନ୍ତି ବୋଲି କହିବି ।'

'ତା'ହେଲେ ମୁଁ ଫୋନ୍ ରଖିଦେବି ।'

'ଆପଣଙ୍କ ଇଚ୍ଛା ।'

'ମୋତେ କଷ୍ଟ ଦେଇ ଆପଣ ଦୁଃଖ ପାଆନ୍ତି ନି ?'

'ଦେଖନ୍ତୁ, ମୁଁ ନିଜେ ନିଜକୁ କଷ୍ଟ ଦେବାକୁ ଚାହେଁ ନାହିଁ । ଅର୍ଥାତ୍ ଆପଣ ଯଦି ହସନ୍ତି ଏବଂ ଆପଣ ସୁନ୍ଦର ହସନ୍ତି ବୋଲି ନ କହେ, ମୁଁ ନିଜର ଭଲ ରୁଚି ପ୍ରତି ଅନ୍ୟାୟ କରିବି ।'

ନୀରବତା ବିରାଜମାନ କଲା କିଛି ସମୟ ପାଇଁ ।

ପୁଣି ସ୍ୱରଟି ଶୁଣାଗଲା ।

'ମୁଁ ଦୁଃଖିତ । ଆମ ଚାକରାଣୀ ସହିତ କଥା ହେଉଥିଲି । ଆପଣ ନିଜର ଭଲ ରୁଚି କଥା କହୁଥିଲେ । ଆପଣଙ୍କର ଆଉ କିଛି ଭଲ ରୁଚି ବିଷୟ କହିବେ କି ?'

'ଆପଣ କ'ଣ କହିବାକୁ ଚାହାନ୍ତି ?'

'ମନେକରନ୍ତୁ କିଛି ହବି ବା କାମ –ଆପଣ କିଛି କାମ କରିପାରିବେ ?'

ମନଖୋଲା ହସିଲା, 'ଫଟୋଗ୍ରାଫି ମତେ ଭଲଲାଗେ – ଏମିତି ସାମାନ୍ୟ ।'

'ଫଟୋଗ୍ରାଫି ଗୋଟିଏ ଭାରି ଭଲ ହବି ।'

'ଆପଣଙ୍କ ଭାରି ଭଲ କ୍ୟାମେରା ଥିବ !'

'ମୋର ନିଜର କ୍ୟାମେରା ନାହିଁ । କେତେବେଳେ କେମିତି ଜଣେ ସାଙ୍ଗଠାରୁ ମାଗିଆଣେ । ଯାହାହେଉ, ମୁଁ ଯଦି କେବେ ଟଙ୍କା ରୋଜଗାର କରେ, କ୍ୟାମେରାଟିଏ କିଣିବି ।'

'କି କ୍ୟାମେରା କିଣିବେ ଭାବିଛନ୍ତି ?'

'ଏକ୍‌ଜାକ୍‌ଟା, ରିଫ୍ଲେକ୍‌ସ କ୍ୟାମେରା; ମୋର ଭାରି ପସନ୍ଦ ।'

ପୁଣି ନୀରବତା –

'ମୁଁ କ'ଣ ଭାବୁଥିଲି କି' –

'କ'ଣ ?'

'ଆପଣ ତ ମୋ ନାଁ ବା ଫୋନ୍ ନମ୍ବର କେବେ ପଚାରି ନାହାନ୍ତି ।'

'ନା, ମୁଁ କେବେ ଏହାର ଆବଶ୍ୟକତା ଅନୁଭବ କରି ନାହିଁ ।'

'କାହିଁକି ?'

'ଆପଣଙ୍କ ନାଁ ଯାହା ହେଉ କିଛି ଯାଏ ଆସେ ନାହିଁ । ମୋ ନମ୍ବର ତ ଆପଣଙ୍କ ପାଖରେ ଅଛି । ତାହା ହିଁ ଯଥେଷ୍ଟ । ମୁଁ ଫୋନ୍ କରେ ବୋଲି ଆପଣ ଯେତେବେଳେ ଚାହିଁବେ ଆପଣ ନିଶ୍ଚୟ ଆପଣଙ୍କର ନାମ ଓ ଟେଲିଫୋନ୍ ନମ୍ବର ଦେବେ ।'

'ନା, ମୁଁ ଦେବି ନାହିଁ ।'

'ଆପଣଙ୍କ ଇଚ୍ଛା; ମୁଁ ପଚାରିବି ନାହିଁ ।'

'ଆପଣ ଜଣେ ବିଚିତ୍ର ଲୋକ ।'

'ଆପଣ ସତ କହିଲେ, ମୁଁ ଗୋଟିଏ ବିଚିତ୍ର ଲୋକ ।'

ପୁଣି ନୀରବତା ବିରାଜମାନ କଲା ।

'ଆପଣ ପୁଣି କ'ଣ ଭାବୁଥିଲେ ?'

'ହଁ, କିନ୍ତୁ କେଉଁ ବିଷୟରେ ଭାବିବି ଠିକ୍ କରି ପାରୁନି ।'

'ତା'ହେଲେ ଟେଲିଫୋନ୍ ରଖିଦେଉ ନାହାନ୍ତି ? ପରେ କେତେବେଳେ ହୁଏତ' –

ଏଥର ନାରୀ କଣ୍ଠରେ ବିରକ୍ତି ଥିଲା ।

'ଆପଣ ଭାରି ଉଦ୍ଧତ; ମୁଁ ଫୋନ୍ ରଖି ଦେଉଛି ।'

ମନମୋହନ ହସିଲା ଏବଂ ଫୋନ୍ ରଖିଦେଲା । ମୁହଁ ହାତ ଧୋଇବା ପରେ ପୋଷାକ ପିନ୍ଧି ବାହାରିବାକୁ ବସିଛି ଫୋନ୍ ବାଜିଲା । ସେ ରିସିଭର ଉଠାଇ କହିଲା – '୪୪୪୫୭ ।'

'ମିଷ୍ଟର ମନମୋହନ !'

'ମୁଁ ଆପଣଙ୍କ ପାଇଁ କ'ଣ କରିପାରିବି ?'

'ମୁଁ ଆପଣଙ୍କୁ ରାଗିନାହିଁ ବୋଲି କହିବାକୁ ଚାହୁଁଥିଲି ।'

'ଧନ୍ୟବାଦ ।'

'ମୁଁ ଜଳଖିଆ ଖାଇଲାବେଳେ ମୋର ଖିଆଲ ହେଲା, ମୁଁ ଆପଣଙ୍କୁ ରାଗିବା ଉଚିତ ନୁହେଁ । ଆପଣ ଜଳଖିଆ ଖାଇଲେଣି ?'

'ନା, ମୁଁ ବାହାରକୁ ଯିବା ପାଇଁ ବାହାରିଥିଲି, ଆପଣଙ୍କ ଫୋନ୍ ଆସିଲା ।'

'ତା'ହେଲେ ମୁଁ ଆପଣଙ୍କୁ ଅଟକାଇବି ନାହିଁ।'

'ନା, ଆଜି ସେମିତି କିଛି ତରବର ହେବାର କାରଣ ନାହିଁ। ଜଳଖିଆ ଖାଇବା ପାଇଁ ମୋ ପାଖରେ ପଇସା ନାହିଁ।'

'ଆପଣ ଏମିତି କାହିଁକି କହୁଛନ୍ତି ? ଆପଣ କ'ଣ ନିଜକୁ କଷ୍ଟ ଦେବାକୁ ଭଲ ପାଆନ୍ତି ?'

'ମୁଁ ନିଜ ଚଳଣିରେ ଅଭ୍ୟସ୍ତ।'

'ମୁଁ କିଛି ଟଙ୍କା ପଠାଇବି ?'

'ଆପଣ ଚାହିଁଲେ ପଠାଇ ପାରନ୍ତି। ମୋର ଋଣଦାତାଙ୍କ ଚିଠିରେ ଆଉ ଗୋଟିଏ ନାମ ଯୋଡ଼ାଯିବ।'

'ତା'ହେଲେ ମୁଁ ଟଙ୍କା ପଠାଇବି ନାହିଁ।'

'ଆପଣଙ୍କ ଇଚ୍ଛା।'

'ମୁଁ ଫୋନ୍ ରଖି ଦେଉଛି।'

'ରଖି ପାରନ୍ତି।'

ରିସିଭର୍ ରଖି ମନମୋହନ ଅଫିସ୍ ବାହାରକୁ ଆସିଲା।

ସେଦିନ ଫେରିବାବେଳକୁ ସନ୍ଧ୍ୟା ବିଳମ୍ବିତ ହୋଇ ଯାଇଥିଲା। ଫୋନ୍ କରୁଥିବା ନାରୀଟି ବିଷୟରେ ସେ ଦିନତମାମ୍ ଭାବୁଥିଲା। ତା' ସ୍ୱରରୁ ସେ ତରୁଣୀ ଓ ଶିକ୍ଷିତା ବୋଲି ଜଣା ପଡୁଥିଲା। ତା'ର ହସଟି ଥିଲା ଚମତ୍କାର।

ଏଗାରଟାବେଳେ ପୁଣି ଫୋନ୍ ବାଜିଲା।

'ହେଲୋ !'

'ମିଷ୍ଟର ମନମୋହନ ! ମୁଁ କେତେଥର ଫୋନ୍ କଲିଣି ! ଆପଣ କୁଆଡ଼େ ଯାଇଥିଲେ ?'

'ମୋର ଚାକିରି ନଥାଇପାରେ, କିନ୍ତୁ କେତେ କାମ କରିବାକୁ ଅଛି।'

'କ'ଣ କାମ ?'

'ଲକ୍ଷ୍ୟହୀନ ଭାବରେ ବୁଲିବା।'

'ଆପଣ କେତେବେଳେ ଫେରିଲେ ?'

'ଘଣ୍ଟାଏ ତଳେ।'

'ମୁଁ ଫୋନ୍ କଲାବେଳେ ଆପଣ କ'ଣ କରୁଥିଲେ ?'

'ମୁଁ ଟେବୁଲ୍ ଉପରେ ଶୋଇଥିଲି ଏବଂ ଆପଣ କେମିତି ଦେଖା ଯାଉଥିବେ କଳ୍ପନା କରୁଥିଲି। କିନ୍ତୁ ଆପଣଙ୍କ ସ୍ୱର ବ୍ୟତୀତ ମୁଁ ଆପଣଙ୍କ ସମ୍ପର୍କରେ ତ ଆଉ କିଛି ଜାଣେ ନାହିଁ।'

'ଆପଣ ସଫଳ ହେଲେ କି ?'

'ନା,'

'ବାସ୍, ଚେଷ୍ଟା କରନ୍ତୁ ନାହିଁ । ମୋ ଚେହେରା ଭାରି କୁତ୍ସିତ ।'

'ଯଦି ଆପଣ ପ୍ରକୃତରେ କୁତ୍ସିତ, ମୁଁ କୁତ୍ସିତତାକୁ ଘୃଣା କରେ ।'

'ତା' ଯଦି ହୁଏ, ମୁଁ କହିବି – ମୁଁ ଭାରି ସୁନ୍ଦର । ଆପଣ କାହାକୁ ଘୃଣା କରନ୍ତୁ – ମୁଁ ଚାହେଁ ନାହିଁ ।'

ସେମାନେ କିଛି ସମୟ ପାଇଁ କଥା ହେଲେ ନାହିଁ ।

ତା'ପରେ ମନମୋହନ ପଚାରିଲା –

'ଆପଣ କ'ଣ ଭାବୁଥିଲେ କି ?'

'ନା; କିନ୍ତୁ ମୁଁ ଆପଣଙ୍କୁ ପଚାରିବାକୁ ଯାଉଥିଲି...'

'ପଚାରିବା ପୂର୍ବରୁ ଚିନ୍ତା କରନ୍ତୁ ।'

'ମୁଁ ଗୀତ ଗାଇଲେ ଆପଣଙ୍କୁ ଭଲ ଲାଗିବ ?'

'ହଁ ।'

'ଠିକ୍ ଅଛି; ଅପେକ୍ଷା କରନ୍ତୁ ।'

ନାରୀ ଜଣକ କଣ୍ଠ ସଫା କରିବା ସେ ଶୁଣିଲା । ତା'ପରେ କୋମଳ ଅନୁଚ୍ଚ ସ୍ୱରରେ ସେ ଗୀତଟିଏ ଗାଇ ଶୁଣାଇଲା ।

'ଗୀତ ଭାରି ଭଲ ଲାଗିଲା ।'

'ଧନ୍ୟବାଦ ।'

ପୁଣି ନୀରବତା...

ରାତି ତମାମ୍ ମନମୋହନ ନାରୀଟିର ସ୍ୱର ବିଷୟରେ ସ୍ୱପ୍ନ ଦେଖିଲା । ସକାଳେ ଅନ୍ୟଦିନ ଅପେକ୍ଷା ଶୀଘ୍ର ଉଠି ସେ ତା'ର ଟେଲିଫୋନ୍‌କୁ ଅପେକ୍ଷା କଲା । କିନ୍ତୁ ଫୋନ୍ ବାଜିଲାନି । ବ୍ୟସ୍ତ ହୋଇ ସେ କୋଠରୀରେ ପଦଚାରଣ କରିବାକୁ ଲାଗିଲା ଏବଂ କିଛି ସମୟ ପରେ ଟେବୁଲ୍ ଉପରେ ଶୋଇ ଅନେକବାର ପଢ଼ି ସାରିଥିବା ବହିଟିର ପୃଷ୍ଠା ଓଲଟାଇବାକୁ ଲାଗିଲା । ଏହା ଭିତରେ ଦିନ ଯାଇ ସଂଜ ହେଲା । ପ୍ରାୟ ସାତଟାବେଳେ ପୁଣି ଫୋନ୍ ବାଜିଲା ।

ତରବରରେ ସେ ଫୋନ୍‌ଟିକୁ ଉଠାଇ କହିଲା – 'କିଏ ?'

'ମୁଁ ।'

'ଆପଣ ଦିନ ତମାମ୍ କୁଆଡ଼େ ଥିଲେ ?' ସାମାନ୍ୟ ଚଢ଼ା ଗଳାରେ ପଚାରିଲା ।

'କାହିଁକି ?' – ସ୍ୱରରେ ଥିଲା ମୃଦୁ କମ୍ପନ ।

'ମୁଁ ଅପେକ୍ଷା କରୁଥିଲି । ପଇସା ଥିଲେ ବି ଆଜି ମୁଁ କିଛି ଖାଇନି ।'

'ମୋର ଯେତେବେଳେ ଇଚ୍ଛା ହେବ, ମୁଁ ଫୋନ୍ କରିବି ।'

'ଆପଣ...'

ମନମୋହନ ତାକୁ ଅଧିକ କହିବାକୁ ନ ଦେଇ କହିଲା –

'ଦେଖନ୍ତୁ, ଆପଣ ଏ ତାମସା ବନ୍ଦ କରନ୍ତୁ – ବା କେତେବେଳେ ଫୋନ୍ କରିବେ ମୋତେ ନିର୍ଦ୍ଦିଷ୍ଟ ଭାବରେ କୁହନ୍ତୁ । ମୁଁ ଅପେକ୍ଷା କରି ପାରିବିନି ।'

'କ୍ଷମା କରିବେ । କାଲିଠାରୁ ପ୍ରତିଦିନ ସକାଳେ ଓ ସନ୍ଧ୍ୟାରେ ଆପଣଙ୍କୁ ଫୋନ୍ କରିବି ।'

'ବାଃ ଚମତ୍କାର !'

'ମୁଁ ଜାଣି ନଥିଲି, ଆପଣ...'

'କଥା ହେଉଛି, ମୁଁ ଅପେକ୍ଷା କରିବାକୁ ଭଲ ପାଏ ନାହିଁ । ଏବଂ ଯେତେବେଳେ ଅପେକ୍ଷା କରିବା ଅସହ୍ୟ ହୁଏ, ମୁଁ ନିଜକୁ କଷ୍ଟ ଦେବାକୁ ଆରମ୍ଭ କରେ ।'

'ଆପଣ ନିଜକୁ କେମିତି କଷ୍ଟ ଦିଅନ୍ତି ?'

'ଆପଣ ଆଜି ସକାଳେ ଫୋନ୍ କଲେ ନାହିଁ । ମୁଁ ବାହାରକୁ ଯାଇଥାନ୍ତି, କିନ୍ତୁ ଗଲି ନାହିଁ । ଦିନ ତମାମ୍ ଏଇଠି ଚିଡ଼ିଚିଡ଼ି ହୋଇ ବସିବି ।'

'ମୁଁ ଜାଣିଶୁଣି ଆପଣଙ୍କୁ ଫୋନ୍ କଲି ନାହିଁ ।'

'କାହିଁକି ?'

'ମୋ ଟେଲିଫୋନ୍ ନ ପାଇଲେ ଆପଣ ବ୍ୟସ୍ତ ହେଉଛନ୍ତି କି ନାହିଁ ଜାଣିବା ପାଇଁ ।'

'ଆପଣ ଭାରି ଦୁଷ୍ଟ । ବର୍ତ୍ତମାନ ଫୋନ୍ ରଖି ଦିଅନ୍ତୁ । ମୁଁ ବାହାରକୁ ଯିବି କିଛି ଖାଇବା ପାଇଁ ।'

'କେତେ ସମୟ ବାହାରେ ରହିବେ ?'

'ଅଧ ଘଣ୍ଟାଏ ।'

ଅଧ ଘଣ୍ଟା ପରେ ସେ ଫେରିଲା । ଫୋନ୍ ବାଜିଲା । ସେମାନେ ଅନେକ ସମୟ ଧରି କଥା ହେଲେ । ସେଇ ଗୀତଟି ଆଉ ଥରେ ଗାଇବା ପାଇଁ ମନମୋହନ ଅନୁରୋଧ କଲା । ନାରୀଟି ହସିଲା ଓ ଗୀତଟିକୁ ଗାଇଲା ।

ଏଣିକି ସବୁଦିନ ଫୋନ୍ ଆସେ । ସକାଳେ ଓ ସନ୍ଧ୍ୟାରେ । ବେଳେବେଳେ ସେମାନେ ଘଣ୍ଟା ଘଣ୍ଟା ଧରି କଥା ହୁଅନ୍ତି । ତଥାପି ମନମୋହନ ଅପରିଚିତା ନାରୀର ନାମ ବା ଟେଲିଫୋନ୍ ନମ୍ବର ପଚାରେ ନାହିଁ । ଆରମ୍ଭରେ ତା'ର ଚେହେରାକୁ କଳ୍ପନା

କରିବା ପାଇଁ ମନମୋହନ ଚେଷ୍ଟା କରିଥିଲା । କିନ୍ତୁ ଏବେ ଆଉ ତା'ର ଆବଶ୍ୟକତା ନଥିଲା । ତା' ସ୍ୱର ହିଁ ଥିଲା ତା'ର ମୁଖମଣ୍ଡଳ, ଆତ୍ମା ଓ ଶରୀର । ଦିନେ ନାରୀଟି ପଚାରିଲା –

'ମୋହନ ! ମୋ ନାଁ ଜାଣିବା ପାଇଁ ତମର ଆଗ୍ରହ ହେଉନାହିଁ ?'

'ଯେହେତୁ ତୁମର ସ୍ୱର ତମ ନାଁ ।'

ଆଉ ଦିନେ ସେ ପଚାରିଲା –

'ମୋହନ; ତମେ କେବେ କାହାକୁ ଭଲ ପାଇଛ ?'

'ନା ।'

'କାହିଁକି ?'

ସେ ଉଦାସ ହୋଇ ପଡ଼ିଲା ।

'ଏଇ ପ୍ରଶ୍ନର ଉତ୍ତର ଦେବା ପାଇଁ ମୋ ଜୀବନର ସବୁ ଅଳିଆଗଦାକୁ ମୋତେ ଖୋଳିବାକୁ ପଡ଼ିବ । ଆଉ, କିଛି ନମିଳିଲେ, ମୋ ଦୁଃଖର ସୀମା ରହିବ ନି ।'

'ଥାଉ ତା'ହେଲେ । ମୋ ପ୍ରଶ୍ନର ଉତ୍ତର ଦେବା ଦରକାର ନାହିଁ ।'

ଗୋଟିଏ ମାସ ବିତିଗଲା । ଦିନେ ମନମୋହନ ତା' ସାଙ୍ଗଠାରୁ ଚିଠିଟିଏ ପାଇଲା । ଟଙ୍କା ଯୋଗାଡ଼ ହୋଇ ଯାଇଛି ଏବଂ ସପ୍ତାହେ ଭିତରେ ବମ୍ବେକୁ ଫେରୁଛି ବୋଲି ସେ ଖବର ଦେଉଥିଲା ।

ସେଦିନ ସନ୍ଧ୍ୟାରେ ଯେତେବେଳେ ଫୋନ୍ ଆସିଲା, ମନମୋହନ କହିଲା –

'ମୋ ସାମ୍ରାଜ୍ୟର ଶେଷ ସମୟ ଆସିଗଲା ।'

'କାହିଁକି ?'

'ମୋର ବଂଧୁ ଫେରି ଆସୁଛି ।'

'ତମର ନିଶ୍ଚୟ କେହି ବଂଧୁ ଥିବେ, ଯାହାର ଫୋନ୍ ଥିବ ।'

'ହଁ, ସେମିତି ବଂଧୁ ଅଛନ୍ତି । କିନ୍ତୁ ମୁଁ ସେମାନଙ୍କର ନମ୍ବର ତମକୁ ଦେଇ ପାରିବି ନାହିଁ ।'

'କାହିଁକି ?'

'ଆଉ କେହି ତମର କଣ୍ଠସ୍ୱର ଶୁଣୁ, ଏହା ମୁଁ ଚାହେଁ ନାହିଁ ।'

'କାହିଁକି ?'

'ମୋର ଈର୍ଷା ହେବ ।'

'ତା'ହେଲେ ଆଉ କ'ଣ ଉପାୟ ଅଛି ?'

'କୁହ ।'

'ତମ ସାମ୍ରାଜ୍ୟର ଶେଷ ସମୟ ଆସିଗଲେ ମୁଁ ତମକୁ ମୋର ଟେଲିଫୋନ୍ ନମ୍ବର ଦେବି ।'

ତା'ର ଉଦାସଭାବ ହଠାତ୍ ଉଭେଇଗଲା । ସେ ପୁଣି ଅପରିଚିତା ନାରୀ ବଂଧୁଟିର ଚେହେରା କଳ୍ପନା କଲା । କିନ୍ତୁ କେବଳ ସ୍ୱର ବ୍ୟତୀତ କିଛି ରୂପ ତା ମନକୁ ଆସିଲା ନାହିଁ । ତାକୁ ଶରୀରରେ ଦେଖିବା ପାଇଁ ଆଉ ମାତ୍ର ଅଳ୍ପ ଦିନ ରହିଲା । ସେ ମୁହୂର୍ତ୍ତଟିର ସାନ୍ଦ୍ରତା ସେ କଳ୍ପନା କରି ପାରିଲା ନାହିଁ ।

ତା' ପରଦିନ ଫୋନ୍ ଆସିବାରୁ ସେ କହିଲା –

'ମୁଁ ତମକୁ ଦେଖିବା ପାଇଁ ଉତ୍ସୁକ ।'

'କାହିଁକି ?'

'ତମେ କହିଥିଲ, ମୋ ସାମ୍ରାଜ୍ୟ ସମାପ୍ତିର ମୁହୂର୍ତ୍ତ ଆସିଲେ ତମର ଟେଲିଫୋନ୍ ନମ୍ବର ଦେବ ।'

'ହଁ ।'

'ତମେ ତମର ଠିକଣା ବି ମତେ ଦେବ କି ? ମୁଁ ତମକୁ ଦେଖିବାକୁ ଚାହେଁ ।'

'ତମେ ଯେବେ ଚାହିଁଲେ ମତେ ଦେଖି ପାରିବ । ଆଜି ବି ।'

'ନା, ଆଜି ନୁହେଁ । ମୁଁ ଭଲ ପୋଷାକ ପିନ୍ଧି ତମକୁ ଦେଖିବାକୁ ଚାହେଁ । କିଛି ପୋଷାକ ପାଇଁ ମୁଁ ମୋର ଜଣେ ବଂଧୁଙ୍କୁ ଅନୁରୋଧ କରିଛି ।'

'ତମେ ଭାରି ପିଲାଳିଆ । ଆମର ଦେଖା ହେଲେ ମୁଁ ତମକୁ ଗୋଟିଏ ଉପହାର ଦେବି ।'

'ତମ ସହିତ ଦେଖା ହେବାଠାରୁ ପୃଥିବୀର ଆଉ କ'ଣ ବଡ଼ ଉପହାର ଅଛି ?'

'ମୁଁ ତମ ପାଇଁ ଗୋଟିଏ ଏକ୍‌ଜାକ୍‌ଟା କ୍ୟାମେରା କିଣିଛି ।'

'ଆଚ୍ଛା !'

'କିନ୍ତୁ ଗୋଟିଏ ସର୍ତ୍ତ – ତମକୁ ମୋର ଫଟୋ ଉଠାଇବାକୁ ପଡ଼ିବ ।'

'ଦେଖାହେଲେ ମୁଁ ନିଷ୍ପତ୍ତି ନେବି ।'

'ମୁଁ ଆସନ୍ତା ଦୁଇଦିନ ତମକୁ ଫୋନ୍ କରିବି ନାହିଁ ।'

'କାହିଁକି ?'

'ମୁଁ ମୋ ପରିବାର ସହିତ ବାହାରକୁ ଯାଉଛି । ମାତ୍ର ଦୁଇଦିନ ପାଇଁ ।'

ମନମୋହନ ସେଦିନ ଅଫିସ୍ ଛାଡ଼ି କୁଆଡ଼େ ଗଲା ନାହିଁ । ତା'ପର ଦିନ ସକାଳେ ତାକୁ ସାମାନ୍ୟ ଜ୍ୱର ଥିଲା ପରି ମନେହେଲା । ପ୍ରଥମେ ସେ ଭାବିଲା ଟେଲିଫୋନ୍ ନ ଆସିବାଜନିତ ଅବସାଦ ପାଇଁ ହିଁ ତାକୁ ଜ୍ୱରପରି ଲାଗୁଛି । ଅପରାହ୍ଣ ବେଳକୁ ଦେହର ଉତ୍ତାପ ବଢ଼ିବାରେ ଲାଗିଲା । ରାତିରେ ଦେହରେ ଖଇ ଫୁଟୁଥାଏ । ସେ ଟେବୁଲ୍ ଉପରେ ଶୋଇ ରହିଲା । ତଣ୍ଟି ଶୁଖି ଯାଉଥିବାରୁ ବାରମ୍ବାର ପାଣି ପିଉଥାଏ । ଛାତି ଉପରେ ଯେମିତି କିଏ ଓଜନ ଲଦି ଦେଇଛି । ପରଦିନ ସକାଳବେଳକୁ ସେ ଅବସନ୍ନ ହୋଇ ପଡ଼ିଥାଏ ।

ଜ୍ୱର ଏତେ ବଢ଼ି ଯାଇଥିଲା ଯେ ସେ ପ୍ରଳାପ କରିବାକୁ ଲାଗିଲା । ଫୋନ୍‌ରେ ସେଇ ସୁଲଳିତ ନାରୀକଣ୍ଠଟିକୁ ମଧ୍ୟ ଶୁଣୁଥାଏ । ସନ୍ଧ୍ୟାବେଳକୁ ତା' ଅବସ୍ଥା କ୍ରମେ ଖରାପ ହେଲା । ସେ ଶୁଣିପାରିଲା ତା' ମୁଣ୍ଡ ଭିତରେ ଅଜସ୍ର ଟେଲିଫୋନ୍ ବାଜିବାର ଶବ୍ଦ । ଆଉ ନିଃଶ୍ୱାସ ନେଇ ପାରିଲାନି ।

ପୁଣି ଯେତେବେଳେ ଫୋନ୍ ବାଜିଲା, ସେ ଶୁଣି ପାରିଲା ନାହିଁ । ଅନେକ ସମୟ ଧରି ଫୋନ୍ ବାଜୁଥାଏ । ହଠାତ୍ ଆବାଜ୍ ଶୁଣିପାରି ସେ କାନ୍ଥ ଉପରେ ଭରାଦେଇ ରିସିଭର ଉଠାଇଲା, ଶୁଖିଲା ଓଠ ଉପରେ ଥରେ ଜିଭ ବୁଲାଇ ଆଣି ସେ କହିଲା – 'ହେଲୋ ।'

'ହେଲୋ ମୋହନ !'

'ମୁଁ ତମ କଥା ଶୁଣି ପାରୁ ନାହିଁ ।'

ସେ କିଛି କହିବାକୁ ଚେଷ୍ଟା କଲା । କିନ୍ତୁ ତା'ର ସ୍ୱର କଣ୍ଠରେ ହିଁ ରହିଗଲା । ସେ କହିଲା – 'ଆମେ ଶୀଘ୍ର ଫେରି ଆସିଲୁ । କେତେ ଘଣ୍ଟା ହେଲା । ମୁଁ ତମକୁ ଫୋନ୍ କରିବାକୁ ଚେଷ୍ଟା କରୁଛି । ତମେ କେଉଁଠି ଥିଲ ?'

ମନମୋହନ ମୁଣ୍ଡ ଚକ୍ରୀ ଭଳି ଘୂରିଲା ।

'ତମର କ'ଣ ହୋଇଛି ?'

ବହୁ କଷ୍ଟରେ ମନମୋହନ କହିଲା – 'ମୋ ସାମ୍ରାଜ୍ୟର ଶେଷ ମୁହୂର୍ତ୍ତ ଆଜି ଆସି ଯାଇଛି !'

ତା' ପାଟିର କୋଣରୁ ରକ୍ତର ଧାରଟିଏ ବହି ଆସି ଚିବୁକ ଓ ବେକ ଉପରେ କ୍ଷୀଣ ଲାଲିଗାରଟିଏ ଟାଣି ଦେଇଥାଏ ।

ଟେଲିଫୋନ୍ ରିସିଭର୍‌ରେ ସେଇ ଅପରିଚିତା ନାରୀ କଣ୍ଠସ୍ୱର ଶୁଣାଯାଉଥାଏ : 'ମୋ ଟେଲିଫୋନ୍ ନମ୍ବର ଲେଖିନିଅ... ୫୦୧୩୪... ୫୦୧୩୪... ସକାଳେ ମୋତେ ଡାକିବ । ମୁଁ ଏବେ ଯାଉଛି ।'

ଏହା କହି ସେ ଫୋନ୍ ରଖିଦେଲା ।

ମନମୋହନ ଟେଲିଫୋନ୍ ଉପରେ ଢଳି ପଡ଼ିଲା । ତା' ପାଟିରୁ ବାହାରି ଆସିଲା ହାବୁକାଏ ରକ୍ତ !

■■■

*ଅନୁବାଦ :* **ଅରବିନ୍ଦ ବେହେରା**

# ଭି.ଏସ୍.ନାଇପଲ୍

*ତୃତୀୟ ବିଶ୍ୱର ଅନ୍ୟତମ ଖ୍ୟାତନାମା କଥାକାର ବିଦ୍ୟାଧର ସୂରଯପ୍ରସାଦ ନାଇପଲ୍ (୧୯୩୨ –) । ତାଙ୍କର ଜନ୍ମ ପଶ୍ଚିମ ଭାରତୀୟ ଦ୍ୱୀପପୁଞ୍ଜ ଅନ୍ତର୍ଗତ ତ୍ରିନିଦାଦ୍‌ର ଚାଗୁନାସ୍‌ଠାରେ, ଜଣେ ଭାରତୀୟ ବଂଶୋଦ୍ଭବଙ୍କ ପରିବାରରେ । ପିତାମହ ଜଣେ ଚୁକ୍ତିବଦ୍ଧ ଶ୍ରମିକ ଭାବରେ, ଅନ୍ୟାନ୍ୟ ଭାରତୀୟମାନଙ୍କ ସହିତ ବ୍ରିଟିଶ ସାମ୍ରାଜ୍ୟ ଅଧୀନସ୍ଥ ତ୍ରିନିଦାଦ୍‌କୁ ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଯାତ୍ରା କରିଥିଲେ । ପିତା ଶ୍ରୀ ପ୍ରସାଦ ଜଣେ ସାମ୍ବାଦିକ ତଥା ଲେଖକ ଥିଲେ – ତାଙ୍କର ଗଳ୍ପ ସଂକଳନ, ଗୁରୁଦେବ ଏଣ୍ଡ ଅଦର୍ ଇଣ୍ଡିଆନ୍ ଟେଲ୍‌ସ (୧୯୪୩) ବେଶ୍ ଲୋକପ୍ରିୟ । ବିଦ୍ୟାଧର ଅକ୍‌ସଫୋର୍ଡ ବିଶ୍ୱବିଦ୍ୟାଳୟରୁ ଇଂରାଜୀ ସମ୍ମାନ ସହିତ ବି.ଏ. ଡିଗ୍ରୀ ଲାଭ କରିବା ପରେ ଲଣ୍ଡନ୍‌ଠାରେ ବି.ବି.ସି. 'କାରିବିଆନ୍ ଭଏସ୍'ରେ ଯୋଗ ଦେଲେ । ସେଇଠାରେ ହିଁ ତାଙ୍କର ଲେଖକ ଜୀବନର ଅୟମାରମ୍ଭ । ସମ୍ପ୍ରତି ସେ ଇଂଲଣ୍ଡରେ ବସବାସ କରୁଛନ୍ତି । ତାଙ୍କର ରଚନାବଳୀ ମଧ୍ୟରେ ଉପନ୍ୟାସ, କ୍ଷୁଦ୍ରଗଳ୍ପ, ଭ୍ରମଣ କାହାଣୀ ତଥା ଆତ୍ମଚରିତ ଅନ୍ତର୍ଭୁକ୍ତ ।*

*ତିନି ପୁରୁଷରେ ତିନୋଟି ବିଭିନ୍ନ ମହାଦେଶରେ ବସବାସ କରିଥିବା ଏକ ପରିବାରର ସନ୍ତାନ ଭାବରେ ନାଇପଲ୍‌ଙ୍କର ଅନୁଭୂତି ଅନନ୍ୟ ସାଧାରଣ । ଭାରତୀୟ ସଂସ୍କୃତି, ପରମ୍ପରା ଓ କିମ୍ବଦନ୍ତୀ, ସିଧାସଳଖ ଭାବରେ ନହେଲେ ମଧ୍ୟ ପରୋକ୍ଷ ଭାବରେ ତାଙ୍କର ରୁଚି ଓ ଅଭ୍ୟାସକୁ ଆଂଶିକ ଭାବରେ ପ୍ରଭାବିତ କରିଛି । ତ୍ରିନିଦାଦ୍‌ର ବହୁ ବର୍ଣ୍ଣ - ବହୁ ଧର୍ମ ସମାଜ, ବାଳକ ନାଇପଲ୍‌ଙ୍କର ମନରେ ଗଭୀର ରେଖାପାତ କରିଛି । ପୁଣି ପ୍ରାପ୍ତ ବୟସରେ ଇଂଲଣ୍ଡରେ ଅବସ୍ଥାନ କାଳରେ ୟୁରୋପୀୟ ସଭ୍ୟତା ତାଙ୍କର*

ରୁଚି ତଥା ଚଳଣୀକୁ ମଧ୍ୟ ଅନେକାଂଶରେ ନିୟନ୍ତ୍ରଣ କରିଛି । ତାଙ୍କର ରଚନା ମଧ୍ୟରେ ସେ ଜଣେ ଲେଖକ ହିସାବରେ ନିଜର ପରିଚୟ ନିଜେ ଖୋଜି ଚାଲିଛନ୍ତି । ନାଇପଲ୍‌ଙ୍କର ରଚନା ମଧ୍ୟରେ ମିଷ୍ଟିକ୍ ମାସିଅର୍ (୧୯୫୭), ମିଗୁଏଲ୍ ଷ୍ଟ୍ରୀଟ୍ (୧୯୫୯), ଏ ହାଉସ୍ ଫର ମିଷ୍ଟର ବିଶ୍ୱାସ (୧୯୬୧), ଏନ୍ ଏରିଆ ଅଫ୍ ଡାର୍କନେସ୍ (୧୯୬୪), ମିମିକ୍ ମେନ୍ (୧୯୬୭), ଏ ଫ୍ଲାଇ ଅପ୍ ଦି ଆଇଲାଣ୍ଡ (୧୯୬୭), ଦି ଲସ୍ ଅଫ୍ ଏଲ୍ ଡେରାଡୋ (୧୯୬୯), ଇନ୍ ଏ ଫ୍ରି ଷ୍ଟେଟ୍ (୧୯୭୧), ଗରିଲା (୧୯୭୫), ଏ ବେଣ୍ଡ ଇନ୍ ଦି ରିଭର୍ (୧୯୭୯), ଦି ଏନିମା ଅଫ୍ ଆରାଇଭାଲ୍ (୧୯୮୭), ଇଣ୍ଡିଆ : ଏ ଉଣ୍ଡେଡ୍ ସିଭିଲାଇଜେସନ୍ (୧୯୭୭), ଇଣ୍ଡିଆ : ଏ ମିଲିଅନ୍ ମିଟ୍ୟୁନିଜ୍ ନାଓ (୧୯୯୦) ଉଲ୍ଲେଖଯୋଗ୍ୟ ।

୧୯୬୦ରେ ଆରମ୍ଭ ହୁଏ ତାଙ୍କର ଭ୍ରମଣ ଓ ଲେଖାହୁଏ ଅନେକ ଭ୍ରମଣ କାହାଣୀ, 'ଦି ମିଡିଲ୍ ପାସେଜ୍ (୧୯୬୨), ଏରିଆ ଅଫ୍ ଡାର୍କନେସ୍ (୧୯୬୪), ରିଟର୍ଣ୍ଣ ଅଫ୍ ଇଭାଷ ପେରନ୍ (୧୯୮୦), ଇନ୍ ଆଫ୍ରିକା ଜର୍ଣ୍ଣିଂ (୧୯୮୧), ଏ ଟର୍ଣ୍ଣ ଇନ୍ ଦି ସାଉଥ୍ (୧୯୮୯), ଇଣ୍ଡିଆ : ଏ ମିଲିଅନ୍ ମ୍ୟୁଟିନେଜ୍ (୧୯୯୦) ।

ମିଷ୍ଟିକ୍ ମାରିଅନ୍ ପାଇଁ ଜନ୍ ଲିଉଲିନ୍ ମେମୋରିଆଲ୍ ପୁରସ୍କାର, ମିଗୁଏଲ୍ ଷ୍ଟ୍ରିଟ୍ ପାଇଁ ସମରସେଟ୍ ମମ୍ ପୁରସ୍କାର, ଇନ୍ ଏ ଫ୍ରି ଷ୍ଟେଟ୍ ପାଇଁ ବୁକର୍ ପୁରସ୍କାର ଓ ଶେଷରେ ୧୯୯୦ ମସିହାରେ ମର୍ଯ୍ୟାଦାଜନକ ନାଇଟ୍‌ହୁଡ୍‌ରେ ତାଙ୍କୁ ସମ୍ମାନିତ କରାଯାଏ ।

'ନାମହୀନ ପଦାର୍ଥ' ନାଇପଲ୍‌ଙ୍କର ତ୍ରିନିଦାଦ୍ ଅନୁଭୂତି ଉପରେ ପର୍ଯ୍ୟବସିତ କାହାଣୀ ମିଗୁଏଲ ଷ୍ଟ୍ରୀଟ୍‌ର ଅଂଶବିଶେଷ । ପୋପୋ, ଏମେଲ୍‌ଦା, ହ୍ୟାଟ୍, ବୋଗାର୍ଟ – ସମସ୍ତେ ସେଇ ଗଳିର ଚରିତ୍ର ।

# ନାମହୀନ ପଦାର୍ଥ

ନିଜକୁ ବଢ଼େଇ ବୋଲାଉଥିବା ପୋପୋର ଜୀବନରେ ଏକମାତ୍ର କୃତି ହେଉଛି ତା'ର ନିଜ ଘର ପଛରେ ଥିବା ଆମ୍ବଗଛ ତଳେ ସେ ତିଆରି କରିଥିବା କର୍ମଶାଳା । ତା' ବି ଅସମ୍ପୂର୍ଣ୍ଣ । ଛାତ ଉପରର ଲୁହା ଚଦରରେ କଣ୍ଟା ବାଡ଼ା ହୋଇ ନାହିଁ – ବଡ଼ ବଡ଼ ପଥର ଖଣ୍ଡ ଲଦା ହୋଇ ଅଟକା ଯାଇଛି । ଟିକିଏ ଜୋର୍‌ରେ ପବନ ଦେଲେ ଝଣଝଣ ଶବ୍ଦ ସହ ଛାତ ଉଠିଯିବାର ଭୟ ରହିଛି ।

ଏସବୁ ସତ୍ତ୍ୱେ ବି ପୋପୋ କେବେ ଅଳସୁଆ ହୋଇ ବସି ନଥାଏ । ହାତୁଡ଼ି, କରତ ବା ନିହାଣ ଧରି କିଛି ଗୋଟାଏ କାମରେ ଲାଗିଥାଏ । କାମ କରୁଥିବା ବେଳେ ତା' ଆଡ଼କୁ ଚାହିଁବାକୁ ମୋତେ ଭଲଲାଗେ । କାଠର ଗନ୍ଧକୁ ମୁଁ ଭଲପାଏ । ପୋପୋର ବାଳ ଉପରେ କରତଗୁଣ୍ଡ ଉଠି ପଡ଼ିଥିବାର ଦୃଶ୍ୟ ମୋତେ ବେଶ୍ ଆମୋଦ ଦିଏ ।

'ତୁମେ କ'ଣ ତିଆରି କରୁଛ ?' ମୁଁ ପ୍ରଶ୍ନ କରେ ।

ସବୁବେଳେ ପୋପୋର ସେଇ ଗୋଟିଏ ଉତ୍ତର : 'ସେଇଟା ଇ ତ ପ୍ରଶ୍ନ, ବାବୁ । ମୁଁ ଏପରି ଗୋଟିଏ ଜିନିଷ କରୁଛି ଯାହାର ନାମ ନାହିଁ ।'

ତା'ର ଏଇ ଉତ୍ତର ପାଇଁ ମୁଁ ପୋପୋକୁ ଭଲପାଏ । ଲୋକଟାଠାରେ କବିତ୍ୱର ଛଟା ଅଛି ।

ଦିନେ ମୁଁ ପୋପୋକୁ କହିଲି : 'ମୋତେ ଗୋଟାଏ କିଛି କରିବାକୁ ଦିଅ ।'

'ତୁମେ କ'ଣ କରିବାକୁ ଚାହଁ ?' ସେ ପଚାରିଲା ।

ମୁଁ ଯେ ପ୍ରକୃତରେ କିଛି କରିବାକୁ ଚାହୁଁଥିଲି ଏକଥା ଭାବି ବି ପାରିଲି ନାହିଁ ।

'ଦେଖ', ପୋପୋ କହିଲା : 'ତୁମେ ଯେଉଁ ଜିନିଷ କଥା ଭାବୁଛ, ତା'ର ନାମ ନାହିଁ ।'

ଶେଷରେ ଠିକ୍ କଲି ଅଣ୍ଡା ରଖିବା ପାଇଁ ଷ୍ଟାଣ୍ଡଟିଏ କହିବି ।

'କାହା ପାଇଁ ?' ପୋପୋର ପ୍ରଶ୍ନ ।

'ମୋ ପାଇଁ ।'

ପୋପୋ ହସିଲା, କହିଲା : 'ଭାବୁଛ, ସେ ତାକୁ ବ୍ୟବହାର କରିବେ ?'

ମୋ' ମା' ଅଣ୍ଡା – ଷ୍ଟାଣ୍ଡଟି ଦେଖି ଖୁସି ହେଲେ । ପ୍ରାୟ ସପ୍ତାହକଯାଏ ତାକୁ

ବ୍ୟବହାର ବି କଲେ । ତା' ପରେ ଷ୍ଟାଣ୍ଡ ବ୍ୟବହାର କରିବାକୁ ଭୁଲିଗଲେ । ପୂର୍ବଭଳି ଗିନା ବା ଥାଳିଆରେ ଅଣ୍ଡା ରଖିବାକୁ ଆରମ୍ଭ କରିଦେଲେ ।

ଏକଥା ମୁଁ ଯେତେବେଳେ ପୋପୋକୁ କହିଲି, ସେ କେବଳ ହସିଲା ଆଉ କହିଲା : 'ଆରେ ବାବୁ, କେବଳ ନାମ ନଥିବା ବସ୍ତୁ ହିଁ ତିଆରି କରିବାକୁ ହେବ ।'

ମୁଁ ବୋଗାର୍ଟର ଦରଜୀ ଦୋକାନ ପାଇଁ ନାମଫଳକ ଲେଖିଥାଏ – ସାରିବା ପରେ, ପୋପୋ ତା' ପାଇଁ ବି ବୋର୍ଡଟିଏ ଲେଖିବାକୁ କହିଲା ।

କାନରେ ଗୁଞ୍ଜିଥିବା ଲାଲ୍ ପେନ୍‌ସିଲ୍‌ଟିକୁ ଧରି ଭାବି ଭାବି ଠିକ୍ କରିପାରିଲା ନାହିଁ – କ'ଣ ଲେଖିବ । ନିଜକୁ ସ୍ଥପତି ବୋଲି ଲେଖାଇବାକୁ ପ୍ରଥମେ କହିଲା; ମାତ୍ର ମୁଁ ତାକୁ ନିରୁତ୍ସାହିତ କଲି । ଶବ୍ଦର ବନାନ ବିଷୟରେ ସେ ନିଶ୍ଚିତ ନଥିଲା । ଶେଷରେ ନାମଫଳକରେ ଲେଖାଗଲା :

ନିର୍ମାତା ଏବଂ ଠିକାଦାର

ବଢ଼େଇ

ଏବଂ କ୍ୟାବିନେଟ୍ - ନିର୍ମାତା

ଫଳକର ନିମ୍ନଭାଗର ଡାହାଣ ପଟରେ ମୁଁ ନିଜର ସନ୍ତକ ଲେଖିଲି – ମୁଁ ଫଳକଟି ଲେଖିଥିଲି ବୋଲି ।

ନାମ ଫଳକର ସାମ୍ନାରେ ଠିଆ ହୋଇ ରହିବାକୁ ପୋପୋକୁ ଭଲ ଲାଗୁନଥିଲା । କିନ୍ତୁ କେହି ଅଜଣା, ଅପରିଚିତ ଲୋକ ଖୋଜି ଖୋଜି ସେଠାରେ ପହଞ୍ଚିଗଲେ ସେ ଆତଙ୍କିତ ଅନୁଭବ କରେ । କହେ : 'ବଢ଼େଇ ? ନା, ସେ ତ ଏଠାରେ ରହନ୍ତି ନାହିଁ ।'

ମୋ' ଦୃଷ୍ଟିରେ ପୋପୋ ବୋଗାର୍ଟଠାରୁ ଅନେକ ଗୁଣରେ ଭଲ । ବୋଗାର୍ଟ ମୋ ସହିତ କ୍ୱଚିତ୍ କଥାବାର୍ତ୍ତା କରୁଥିଲା । କିନ୍ତୁ ପୋପୋ କଥା ହେବା ପାଇଁ ସବୁବେଳେ ପ୍ରସ୍ତୁତ । ମୁଁ ଭାବୁଥିଲି, ମୋ ସହିତ କଥାହେବାକୁ ସେ ଭଲ ପାଉଥିଲା ।

ତେବେ ଆମ ସାହିରେ ପୋପୋ ସେତେଟା ଲୋକପ୍ରିୟ ନଥିଲା । ତାକୁ ପାଗଳ ବା ବୋକା ବୋଲି କେହି ଭାବୁନଥିଲେ । ହ୍ୟାଟ୍ କହେ :

'ପୋପୋଟା ଅତି ଶିଆଣିଆ ।'

ଏଇଟା କିନ୍ତୁ ଠିକ୍ କଥା ନୁହେଁ ।

ପ୍ରତିଦିନ ସକାଳେ ରାସ୍ତା ଉପରକୁ ଗିଲାସେ ରମ୍ ହାତରେ ଧରିଯିବା ପୋପୋର ଅଭ୍ୟାସ । ସେ କେବେ ସେପରି ପିଏ ନାହିଁ । ତେବେ କୌଣସି ପରିଚିତ ଲୋକକୁ ଦେଖିଲେ ଗିଲାସରେ ମଝି ଆଙ୍ଗୁଳି ବୁଡ଼ାଏ ଓ ହାତ ହଲାଇ ସୁପ୍ରଭାତ ଜଣାଏ ।

'ଆମେ ମଧ୍ୟ ରମ୍ କିଣିପାରୁ', ହ୍ୟାଟ୍ କହେ, 'କିନ୍ତୁ ପୋପୋ ପରି ଦେଖେଇ ହେଉ ନାହିଁ ।'

ମୁଁ ଏପରି କେବେ ଭାବି ନାହିଁ । ଦିନେ ପୋପୋକୁ ଏ ବିଷୟରେ ପଚାରିଲି ।

ପୋପୋ କହିଲା : 'ସକାଳେ, ସୂର୍ଯ୍ୟଙ୍କର ପହିଲି କିରଣରେ, ଶୀତଶୀତ ଲାଗୁଥିବା ବେଳେ, ଖରାରେ ଠିଆ ହୋଇ ରମ୍ ପିଇବାକୁ ଭଲ ଲାଗେ ।'

ପୋପୋ କାମ କରେ ନାହିଁ କି କିଛି ରୋଜଗାର କରେ ନାହିଁ । ତା'ର ସ୍ତ୍ରୀ ବାହାରକୁ ଯାଇ ଲୋକଙ୍କ ଘରେ କାମ କରେ । ସେଥିରେ କିଛି ଅସୁବିଧା ହୁଏ ନାହିଁ, କାରଣ ସେମାନଙ୍କର ପିଲାପିଲି ନଥିଲା । ପୋପୋ କହେ : 'କାମକୁ ଯିବାଟା ସ୍ତ୍ରୀ ଲୋକମାନଙ୍କୁ ସାଜେ, ପୁରୁଷମାନଙ୍କୁ ନୁହେଁ ।'

ହ୍ୟାଟ୍ କହେ : 'ପୋପୋଟା ମାଇଚିଆ – ପୁରୁଷ ନୁହେଁ !'

ଆମ ସ୍କୁଲ୍ ପାଖରେ ଗୋଟାଏ ବଡ଼ଘରେ ପୋପୋର ସ୍ତ୍ରୀ ରୋଷେଇବାସ କାମ କରେ । ପ୍ରତିଦିନ ଉପରବେଳା ସେ ମୋତେ ଅପେକ୍ଷା କରେ ଓ ରୋଷେଇ ଘରକୁ ଡାକିନେଇ ଭଲଭଲ ଜିନିଷ ଖାଇବାକୁ ଦିଏ । ମୁଁ ଖାଇଲାବେଳେ ସେ ଯେପରି ଢ଼ଙ୍ଗରେ ଚାହେଁ, ମୋତେ ଭଲ ଲାଗେ ନାହିଁ । ସେ ମୋତେ କହିଥାଏ, ତାକୁ ମାଉସୀ ବୋଲି ଡାକିବା ପାଇଁ ।

ସେ ଘରର ମାଳୀ ସହିତ ମୋର ପରିଚୟ କରେଇ ଦେଇଥାଏ । ଜଣେ ସୁନ୍ଦର ଶ୍ୟାମଳ ପୁରୁଷ – ବଗିଚାର ଫୁଲକୁ ସେ ଭଲପାଏ । ବଗିଚାର ବେଶ୍ ଯତ୍ନ ନିଏ । ବେଳେବେଳେ ମୋତେ ଗଛରେ ପାଣି ଦେବା ପାଇଁ ଦିଏ । ଆଉ କଟା ହୋଇଥିବା ଘାସ ବ୍ୟାଗ୍‌ରେ ଭର୍ତ୍ତି କରି ମୋ ହାତରେ ପଠାଏ ମୋ' ମା' ପାଖକୁ – କୁକୁଡ଼ା ପାଇଁ ।

ଦିନେ ପୋପୋର ସ୍ତ୍ରୀକୁ ଦେଖିବାକୁ ପାଇଲି ନାହିଁ । ସେଦିନ ସେ ମୋତେ ଅପେକ୍ଷା କରି ନଥିଲା ।

ପରଦିନ ସକାଳେ ପୋପୋକୁ ରମ୍ ଗିଲାସ ହାତରେ ଦେଖିଲି ନାହିଁ ।

ସନ୍ଧ୍ୟାରେ ବି ପୋପୋ ସ୍ତ୍ରୀ ଦେଖା ନାହିଁ ।

ପୋପୋ ମନଦୁଃଖରେ ବସିଥିଲା । ମୋତେ ଦୁଃଖ କରି କହିଲା :

'ତୋର ମାଉସୀ ଚାଲିଯାଇଛିରେ ବାବୁ !'

'କେଉଁଆଡ଼େ ?' ପଚାରିଲି ।

'ସେଇଟାଇ ତ ପ୍ରଶ୍ନ ।' ସେ ନିଜକୁ ସଜାଡ଼ି ନେଲା ।

ତା'ପରେ ସେ ଗଳିରେ ପୋପୋ ବେଶ୍ ଲୋକପ୍ରିୟ ହୋଇପଡ଼ିଲା । ଖବରଟା ଶୀଘ୍ର ସବୁଆଡ଼େ ବ୍ୟାପିଗଲା । ଦିନେ ଯେତେବେଳେ ଏଡୋସ୍ କହିଲା : 'ଆଶ୍ଚର୍ଯ୍ୟର କଥା, ପୋପୋର କ'ଣ ହେଲା, ତା' ପରି ଲୋକ ରମ୍ ହାତରେ ଦିଶୁ ନାହିଁ' ହ୍ୟାଟ୍ ଡେଇଁପଡ଼ି ତା'ର ପାଟି ବନ୍ଦ କଲା । ସମସ୍ତେ ପୋପୋର କର୍ମଶାଳାରେ ଏକତ୍ର ହେବାକୁ ଲାଗିଲେ । ବିଭିନ୍ନ ବିଷୟ ଚର୍ଚ୍ଚା ହେଲା – କ୍ରିକେଟ୍, ଫୁଟ୍‌ବଲ୍, ସିନେମା, କେବଳ ନାରୀ ପ୍ରସଙ୍ଗ ବ୍ୟତୀତ । ପୋପୋକୁ ଖୁସି କରିବା ପାଇଁ ସମସ୍ତେ ଚେଷ୍ଟା କଲେ ।

ପୋପୋର କର୍ମଶାଳାରେ ଆଉ ହାତୁଡ଼ି, କରତର ଶବ୍ଦ ଶୁଭିଲା ନାହିଁ । କରତ ଗୁଣ୍ଡ ଆଉ ସଜ ସତେଜ ନଥିଲା – ବାସି ଓ ଅସନା ଦିଶୁଥିଲା । ପୋପୋର ମଦ୍ୟପାନ ବଢ଼ି ଚାଲିଥାଏ । ତାକୁ ଏତେ ପିଇଥିବା ଅବସ୍ଥା ଦେଖିବାକୁ ମୋତ ଭଲ ଲାଗେ ନାହିଁ । ଦେହରେ ମଦର ଗନ୍ଧ । ସେ ପ୍ରଥମେ କାନ୍ଦିବାକୁ ଲାଗିଲା, ତା' ପରେ ରାଗିବାକୁ ଏବଂ ରାଗବେଳେ ଯାହାକୁ ଆଗରେ ପାଇଲା ପିଟିବାକୁ ମଧ୍ୟ ଆରମ୍ଭ କରିଦେଲା ।

ହ୍ୟାଟ୍ କହିଲା : 'ପୋପୋ ବିଷୟରେ ଆମର ଭୁଲ୍ ଧାରଣା ଥିଲା । ସେ ମଧ୍ୟ ଜଣେ ପୁରୁଷ, ଆମରିମାନଙ୍କ ପରି ।'

ନୂତନ ବନ୍ଧୁତ୍ୱ ପୋପୋକୁ ଭଲ ଲାଗୁଥିଲା । ସେ ଗଳିର ଲୋକମାନଙ୍କ ସହିତ ମିଶିବାକୁ ସେ ଚାହୁଁଥିଲା । ବରଂ ସେ ଆଶ୍ଚର୍ଯ୍ୟ ହେଉଥିଲା ଯେ ତାକୁ କେମିତି କେହି ଭଲ ପାଉନଥିଲେ । ତେଣୁ ଲାଗୁଥିଲା – ଯେପରି ପୋପୋ ଯାହା ଚାହୁଁଥିଲା, ପାଇଗଲା । କିନ୍ତୁ ପ୍ରକୃତରେ ସେ ଖୁସି ନଥିଲା । ତା' କ୍ଷେତ୍ରରେ ବନ୍ଧୁତା ଟିକେ ବିଳମ୍ବରେ ଆରମ୍ଭ ହେଲା ।

ହ୍ୟାଟ୍ ଚାହୁଁଥିଲା, ପୋପୋ ଅନ୍ୟ ନାରୀମାନଙ୍କ ବିଷୟରେ ଆଗ୍ରହ ପ୍ରକାଶ କରୁ – କିନ୍ତୁ ପୋପୋର ସେଥିରେ ଆଗ୍ରହ ନଥିଲା ।

ପୋପୋ ଭାବୁ ନଥିଲା ଯେ ଏସବୁ କଥା ଜାଣିବା ପାଇଁ ମୋର ବୟସ ହୋଇ ନାହିଁ । ଥରେ ସେ ମୋତେ କହିଲା : 'ବାବୁ, ତୁମର ଯେତେବେଳେ ମୋ ବୟସ ହେବ- ଜାଣିବ ଯାହା ପାଇଥିଲେ ଦିନେ ହୁଏତ ତମକୁ ଭଲ ଲାଗିଥାଆନ୍ତା, ସେପରି ଜିନିଷରେ ତୁମର ଆଉ ଆଗ୍ରହ ନାହିଁ ।'

ସେ ଏଇଭଳି କଥାବାର୍ତ୍ତା କରେ । ଅସ୍ପଷ୍ଟ ଢ଼ଙ୍ଗରେ । ପ୍ରହେଳିକାରେ ।

ତା'ପରେ, ଦିନେ ପୋପୋ ଆମକୁ ଛାଡ଼ି ଚାଲିଗଲା ।

ହ୍ୟାଟ୍ କହିଲା : 'କେହି କହିବା ଦରକାର ନାହିଁ – ସେ କୁଆଡ଼େ ଯାଇଛି, ଜଣାଅଛି । ସ୍ତ୍ରୀକୁ ଖୋଜିବା ପାଇଁ ଯାଇଛି ।'

ଏଡ୍‌ୱାର୍ଡ କହିଲା : 'ଭାବୁଛ, ତା' ସ୍ତ୍ରୀ ତା' ସହିତ ଫେରିବ ?'

ହ୍ୟାଟ୍ : 'ଦେଖାଯାଉ ।'

ପୋପୋ କଥା ଜାଣିବା ପାଇଁ ବେଶି ଦିନ ଅପେକ୍ଷା କରିବାକୁ ପଡ଼ିବ ନାହିଁ । ଖବର କାଗଜରେ ସବୁକଥା ବାହାରିଲା । ହ୍ୟାଟ୍ କହିଲା, ସେ ଠିକ୍ ଏଇୟା ହିଁ ଅନୁମାନ କରୁଥିଲା । ପୋପୋ ଆରିମାର ଜଣେ ଲୋକକୁ ନିସ୍ତୁକ ମାଡ଼ ଦେଇଛି – ସେ ପୋପୋର ସ୍ତ୍ରୀକୁ ନେଇ ଯାଇଥିଲା । ସେ ଲୋକ ହେଉଛି ଆମ ସ୍କୁଲ୍‌ପାଖ ବଡ଼ ଘର ବଗିଚାର ମାଳି – ଯିଏ ମୋତେ ବ୍ୟାଗ୍ ଭର୍ତ୍ତି କରି ଘାସ ଦେଉଥିଲା ।

ପୋପୋର ବିଶେଷ ଅସୁବିଧା ହେଲା ନାହିଁ । ଅବଶ୍ୟ କିଛି ଜୋରିମାନା ଦେବାକୁ ପଡ଼ିଲା । ହେଲେ ସେମାନେ ତାକୁ ଛାଡ଼ିଦେଲେ । ପୋପୋକୁ ସତର୍କ କରିଦିଆଗଲା – ସ୍ତ୍ରୀ ପ୍ରତି ଖରାପ ବ୍ୟବହାର ନ କରିବା ପାଇଁ ।

ପୋପୋ ନାଁରେ ଗୀତଟାଏ ବନ୍ଧାଗଲା । ଉତ୍ସବ ସମୟରେ ଆଣ୍ଡ୍ରିଉ ସିଷ୍ଟର୍ସ ଏକ ଆମେରିକାନ୍ ରେକର୍ଡି କମ୍ପାନୀ ପାଇଁ ସେ ଗୀତଟି ଗାଇଥିଲେ ।

ଥରେ ଏକ ଚଢ଼େଇ ଆରିମାକୁ ଗଲା

ଏମେଲଦା ବୋଲି ନାରୀକୁ ଅନେକ ଖୋଜିଲା ।

ମିଗୁଏଲ୍ ଷ୍ଟ୍ରୀଟ୍‌ରେ ଏଇଟା ଥିଲା ଗୋଟାଏ ବଡ଼ ଘଟଣା ।

ସ୍କୁଲ୍‌ରେ ମୁଁ ମନ୍ତବ୍ୟ ଦେଉଥିଲି : 'ବିଚରା ଚଢ଼େଇଟି କିନ୍ତୁ ଭଲ ଲୋକ – ମୋର ଜଣାଶୁଣା ।'

କ୍ରିକେଟ୍ ମ୍ୟାଚ୍‌ରେ, ଘୋଡ଼ା ଦଉଡ଼ରେ, ସବୁଆଡ଼େ ହ୍ୟାଟ୍ କହିବୁଲିଲା, 'ପୋପୋକୁ ଜାଣିଛ ? ହେ ଭଗବାନ୍, ମୁଁ ତ ଦିନରାତି ତା ସହିତ ପିଉଥିଲି । ତା' ପାଖରେ ସବୁବେଳେ ବୋତଲଟିଏ ଥାଏ ।'

ଫେରିବାବେଳକୁ ପୋପୋ ଆଉ ଆଗର ପୋପୋ ନଥିଲା – ଅନେକଟା ବଦଳି ଯାଇଥିଲା । ଯେତେବେଳେ ତା' ସହିତ କଥା ହେବା ପାଇଁ ଚାହିଁଲି, ସେ ବିରକ୍ତ ହେଲା । ହ୍ୟାଟ୍ ଓ ଅନ୍ୟମାନେ ସାଙ୍ଗରେ ବୋତଲେ ରମ୍ ନେଇ ପୋପୋ ପାଖକୁ ଆସିଲେ – ହେଲେ ସେମାନଙ୍କୁ ସେ ବିଦା କରିଦେଲା ।

ହ୍ୟାଟ୍ କହିଲା : 'ସ୍ତ୍ରୀଲୋକଟା ଲାଗି ଇଏ ପାଗଳ ହୋଇଗଲା, ବୁଝିଲ ?'

ପୋପୋର କର୍ମଶାଳାରୁ ପୁଣି ସେହି ପୁରୁଣା ଶବ୍ଦ ଶୁଭିଲା । ସେ କଠିନ ପରିଶ୍ରମ କରୁଥାଏ । ମୁଁ ଭାବିଲି, ସେ ଏବେ ବି ସେଇ ନାମହୀନ ବସ୍ତୁଟି ତିଆରି କରୁଛି । ହେଲେ ତାକୁ ଏକଥା ପଚାରିବାକୁ ମୋର ସାହସ ହେଲା ନାହିଁ – ଡରି ଯାଇଥିଲି ।

ପୋପୋ ବିଜୁଳି ତାରଟାଏ ଟାଣିନେଲା ତା'ର କର୍ମଶାଳାକୁ । ରାତିରେ ବି କାମ କଲା । ତା' ଘର ଆଗରେ ରାତିରେ ମଟରଗାଡ଼ିମାନ ଠିଆ ହେଲା – ଜିନିଷପତ୍ର ସବୁ ଲଦା ଉତରା ହେବାକୁ ଲାଗିଲା । ପୋପୋ ତା' ଘରକୁ ରଙ୍ଗ କଲା । କାନ୍ଥରେ ଗାଢ଼ ସବୁଜ ରଙ୍ଗ ଦେଲା – ଛାତରେ ଉଜ୍ଜ୍ୱଳ ଲାଲ୍ ରଙ୍ଗ । ହ୍ୟାଟ କହିଲା : 'ଲୋକଟା ସତରେ ପାଗଳ ହୋଇଗଲା ।' ପୁଣି ମନ୍ତବ୍ୟ ଦେଲା : 'ବୋଧହୁଏ ଆଉଥରେ ବିବାହ କରିବ ।'

ହ୍ୟାଟ ବୋଧହୁଏ ଭୁଲ୍ କହୁ ନଥିଲା । ପ୍ରାୟ ଦୁଇ ସପ୍ତାହ ପରେ ଦିନେ ତା' ସହିତ ଜଣେ ସ୍ତ୍ରୀଲୋକ ଆସିଲା । ସେ ହେଉଛି ତା'ର ସ୍ତ୍ରୀ – ମୋ' ମାଉସୀ ।

'ଏ ନାରୀ ବ୍ୟାପାରଟା କେମିତି ଦେଖୁଛ ତ ?' – ହ୍ୟାଟ୍ କହିଲା ।

ସେ କହିଚାଲିଲା :

'ସେମାନେ କ'ଣ, କି' କି' ଜିନିଷ ଭଲ ପାଆନ୍ତି ଦେଖ । ଘରର ନୂଆ ରଙ୍ଗ, ନୂଆ ଆସବାବପତ୍ର । ହେଲେ ପୁରୁଷମାନେ ଏପରି ନୁହଁନ୍ତି । ମୁଁ ବାଜି ମାରି କହିପାରେ ଆରିମାର ସେ ଲୋକର ଯଦି ନୂଆଘର ଆସବାବପତ୍ର ଥାଆନ୍ତା, ଏମେଲ୍‌ଦା କେବେ ପୋପୋ ସହିତ ଫେରି ନଥାଆନ୍ତା ।'

ହ୍ୟାଟ୍‌ର ଏ ପ୍ରକାର ମନ୍ତବ୍ୟ କିନ୍ତୁ ମୋତେ ପ୍ରଭାବିତ କଲା ନାହିଁ । ମୁଁ ବରଂ ଖୁସି ହେଲି ଯେ ସବୁଦିନେ ସକାଳେ ହାତରେ ରମ୍ ଗ୍ଲାସ୍ ଧରି ପୋପୋ ବନ୍ଧୁମାନଙ୍କୁ ହାତ ହଲାଇ ଅଭିନନ୍ଦନ କଲା । ପୁଣିଥରେ ମୋର ସେଇ ପୁରୁଣା ପ୍ରଶ୍ନ : 'ତୁମେ କ'ଣ ତିଆରି କରୁଛ ?' ଆଉ ତା'ର ସେଇ ସବୁଦିନିଆ ପୁରୁଣା ଉତ୍ତର : 'ସେଇଟାଇ ତ ପ୍ରଶ୍ନ । ମୁଁ ଏକ ନାମହୀନ ପଦାର୍ଥ ତିଆରି କରୁଛି ।'

ପୋପୋ ପୁଣିଥରେ ତା'ର ସେଇ ପୁରୁଣା ନିତିଦିନିଆ ଜୀବନର ଆରମ୍ଭ କରିଦେଲା । ଏବେବି ସେଇ ନାମହୀନ ବସ୍ତୁ ତିଆରିରେ ସମୟ ବିତଉଥାଏ । ଅନ୍ୟ ସମସ୍ତ ପ୍ରକାରର କାମ ସେ ବନ୍ଦ କରି ଦେଇଥାଏ । ତା'ର ସ୍ତ୍ରୀ ମୋ' ସ୍କୁଲ୍ ପାଖରେ ସେଇ ପୁରୁଣା ଲୋକଙ୍କ ଘରେ ପୁଣିଥରେ କାମ ଆରମ୍ଭ କରି ଦେଇଥାଏ ।

ପୋପୋର ସ୍ତ୍ରୀ ଫେରିବା ଓ ପୋପୋ ପୁଣିଥରେ ଆଗ ଢ଼ଙ୍ଗରେ ସମୟ ବିତେଇବାକୁ ଆମ ଗଳିର ଲୋକେ ପସନ୍ଦ ତ କରୁ ନଥିଲେ – ବରଂ ତା' ଉପରେ ରାଗିଯାଇ ଥିଲେ । ସେମାନେ ଭାବୁଥିଲେ, ପୋପୋ ପ୍ରତି ସେମାନଙ୍କର ସବୁ ସମବେଦନା ଏକ ପ୍ରକାର ଉପହାସରେ ପରିଣତ ହୋଇଯାଇଛି ।

ହ୍ୟାଟ୍ କହିଲା : 'ଶଳା ପୋପୋଟା ଗୋଟାଏ ଶଠ, ଭଣ୍ଡ, ବୁଝିଲ ?'

ଏଥିରେ ପୋପୋ କିନ୍ତୁ କିଛି ଭାବିଲା ନାହିଁ ।

ସେ ମୋତେ କହୁଥାଏ : 'ବାବୁ, ତୁମେ ଘରକୁ ଯାଅ ଆଉ ରାତିରେ ଈଶ୍ୱରଙ୍କୁ ପ୍ରାର୍ଥନା କର – ମୋ ଭଳି ଖୁସିରେ ରହିବା ପାଇଁ ।'

ତା' ପରର ଘଟଣା ସବୁ ଏତେ ଶୀଘ୍ର ଘଟିଗଲା ଯେ ଏପରି ସବୁ ଘଟିଛି ବୋଲି ଆମେ ଜାଣିପାରିଲୁ ନାହିଁ । ଖବର କାଗଜରେ ବାହାରିବା ଆଗରୁ ହ୍ୟାଟ୍ ମଧ୍ୟ ଏ କଥା ଜାଣି ନଥିଲା । ସେ ସବୁଦିନେ ଖବରକାଗଜ ପଢ଼େ – ସକାଳ ପ୍ରାୟ ଦଶଟାରୁ ସନ୍ଧ୍ୟା ଛଅଟା ଯାଏ ।

ହ୍ୟାଟ୍ ପାଟି କରି କହିଲା : 'ଆରେ, ମୁଁ କ'ଣ ଦେଖୁଛି ?' ତା'ପରେ ଆମକୁ ଦେଖାଇଲା – ବଢ଼େଇକୁ କାରାଦଣ୍ଡ ।

ସେ ଏକ ଅଦ୍‌ଭୁତ କାହାଣୀ ।

ପୋପୋ ଆସବାବପତ୍ର ଚୋରି କରୁଥିଲା – ନିଜେ କିଛି ତିଆରି କରୁନଥିଲା । ସେଗୁଡ଼ିକୁ ନୂଆ ଢ଼ଙ୍ଗରେ ଏପଟ ସେପଟ କରି ସେଥିରୁ କିଛି କିଛି ବିକ୍ରି କରୁଥିଲା । ସେପରି ଅବସ୍ଥାରେ ସେ ଧରା ପଡ଼ିଲା । ଏବେ ଆମେ ବୁଝିଲୁ, ପୋପୋର ଘର ଆଗରେ ଏତେ ମଟରଗାଡ଼ି କାହିଁକି ଠିଆ ହେଉଥିଲା । ଏପରିକି ରଙ୍ଗ ଓ ବ୍ରଶ୍ ମଧ୍ୟ ଚୋରି ହୋଇ ଆସିଥିଲା ।

ହ୍ୟାଟ୍ କହିଲା : 'ଲୋକଟା ବୋକା, ଚୋରି ଜିନିଷ ସବୁ ସେ ଏପରି ବିକୁଥିଲା କାହିଁକି ?'

ଆମ ସମସ୍ତଙ୍କର ବି ସେଇ ମତ – ଏଇଟା ବୋକାମୀ । ହେଲେ ଆମ ଅନ୍ତରରେ ଆମେ ଏକଥା ଅନୁଭବ କରୁଥିଲୁ ଯେ ପୋପୋ ଏକ ପୁରୁଷ – ବୋଧହୁଏ ଆମ ପ୍ରତ୍ୟେକଙ୍କ ତୁଳନାରେ ପୁରୁଷପଣିଆ ତା'ଠାରେ ଅଧିକ ।

ଆଉ ମୋର ମାଉସୀ...

ହ୍ୟାଟ୍ କହିଲା : 'ପୋପୋକୁ କେତେଦିନ ଜେଲ୍ ହେଲା ? ବର୍ଷେ । ଭଲ ବ୍ୟବହାର ପାଇଁ ତିନିମାସ ଛାଡ଼ ପାଇପାରିବ – ବାକି ରହିଲା, ସମୁଦାୟ ନ'ମାସ । ଧର ତିନି ମାସ ତା' ସ୍ତ୍ରୀ ଭଲରେ ରହିବ । ଆଉ ତା' ପରେ ମିଗୁଏଲ୍ ଷ୍ଟ୍ରୀଟ୍‌ରେ ଏମେଲ୍‌ଦା ନଥିବ, ବୁଝିଲୁ ?'

ଏମେଲ୍‌ଦା କିନ୍ତୁ କେବେ ମିଗୁଏଲ୍ ଷ୍ଟ୍ରୀଟ୍ ଛାଡ଼ି ଅନ୍ୟ କେଉଁଆଡ଼େ ଗଲା ନାହିଁ । କେବଳ ଯେ ଆମ ସ୍କୁଲ୍ ପାଖରେ ସେ ବଡ଼ ଲୋକଙ୍କ ଘରେ ରୋଷେଇବାସ କଲା ତା' ନୁହେଁ – ଲୁଗାପଟା ସଫାସଫି ଓ ଇସ୍ତ୍ରୀ କରିବା ଆରମ୍ଭ କରିଦେଲା । ସାହିରେ ସମସ୍ତେ ଭୁଲିଗଲେ ଯେ ପୋପୋ ଏକ ଲଜ୍ଜାକର କାମ କରି ଜେଲ୍ ଯାଇଛି । ଆମ ଭିତରୁ କାହା ଭାଗ୍ୟରେ କେତେବେଳେ ଏପରି ଘଟିପାରେ । ଦୁଃଖ ଲାଗୁଥାଏ କେବଳ ଏମେଲ୍‌ଦା ଲାଗି – ବିଚାରୀ ଏତେଦିନ ଏକୁଟିଆ ରହିବ ।

କାରାବାସ ପରେ ପୋପୋ ହିରୋ ପରି ଫେରିଲା । ହ୍ୟାଟ୍ ବୋଗାର୍ଟଠାରୁ ସେ ଅନେକ ଗୁଣରେ ଭଲ ।

ହେଲେ ମୋ' ଆଖିରେ ସେ ଥିଲା ଏକ ଭିନ୍ନ ମଣିଷ । ତା'ର ଏ ପ୍ରକାର ପରିବର୍ତ୍ତନ ମୋତେ ଦୁଃଖ ଦେଲା ।

ପୋପୋ କାମ ଆରମ୍ଭ କରିଦେଲା । ଚେୟାର, ଟେବୁଲ୍ ଓ ୱାର୍ଡରୋବ୍ ଅର୍ଡର ନେଉଥିଲା ।

ମୁଁ ଯେତେବେଳେ ପଚାରିଲି, 'ସେଇ ନାମହୀନ ବସ୍ତୁ ପୁଣି କେବେ ଆରମ୍ଭ କରୁଛ ?'

ସେ ବିରକ୍ତ ହୋଇ ଉଠିଲା । କହିଲା :'ବଡ଼ ଚଗଲା ପିଲା । ଶୀଘ୍ର ଏଠାରୁ ଯା' – ନଚେତ୍ ହାତ ଉଠେଇବି ।'



*ଅନୁବାଦ :* **ଅରୁଣ କୁମାର ମହାନ୍ତି**

# କୋଲେଟ୍

ମହାନ୍ ଫରାସୀ ଗାଳ୍ପିକା ଗାବ୍ରିଏଲେ ସିଡୋନି କୋଲେଟ୍ (୧୮୭୩-୧୯୫୪) ଯେଉଁଦିନ ମୃତ୍ୟୁବରଣ କଲେ, ସେହିଦିନ ପ୍ୟାରିସ୍‌ରେ ଏକ ଅଭୂତପୂର୍ବ ଝଡ଼ତୋଫାନ ହୋଇଥିଲା । ଜୀବନର ଅନ୍ତିମ ମୁହୂର୍ତ୍ତରେ ଆକାଶରେ ଚମକୁଥିବା ବିଜୁଳିକୁ ଦେଖି ସେ ଚିତ୍କାର କରି ଉଠିଥିଲେ : ଦେଖ ! ଦେଖ !

ସମାଲୋଚକଙ୍କ ମତରେ ତାଙ୍କର ଗଳ୍ପ ଓ ଉପନ୍ୟାସଗୁଡ଼ିକର ବୈଶିଷ୍ଟ୍ୟ ହେଉଛି – ଏକ ତୀବ୍ର ଓ ଅସାଧାରଣ ଅନ୍ତର୍ଦୃଷ୍ଟି, ଯାହା ଏହି ଦୁଇଟି ଶବ୍ଦରେ ରୂପାୟିତ ହୋଇଥିଲା । ୧୮୯୦ ଦଶକରେ 'ମ୍ୟୁଜିକ ହଲ୍'ର ଅଭିନେତ୍ରୀ ଭାବେ ପ୍ୟାରିସ୍‌ରେ ତାଙ୍କ କର୍ମମୟ ଜୀବନ ଆରମ୍ଭ ହୁଏ । ବିବାହ ପରେ ସ୍ୱାମୀଙ୍କ ପ୍ରୋତ୍ସାହନରେ ସେ ସାହିତ୍ୟଜଗତକୁ ପ୍ରବେଶ କରନ୍ତି । ପ୍ରଥମେ ପ୍ରଥମେ ଲେଖାଗୁଡ଼ିକ ଛଦ୍ମନାମରେ ପ୍ରକାଶ ପାଏ । ୧୯୦୦ରୁ ୧୯୦୩ ମଧ୍ୟରେ ଲେଖିଥିବା ତାଙ୍କର ଆତ୍ମଜୀବନୀମୂଳକ Claudire ସିରିଜ୍ ଉପନ୍ୟାସ ଚାରୋଟି ସାହିତ୍ୟ ଜଗତରେ ଚହଳ ପକାଏ । ଛାଡ଼ପତ୍ର ଦେବା ପରେ ଅଭିଜ୍ଞତାକୁ ଭିତ୍ତିକରି ତାଙ୍କର ପ୍ରକାଶିତ ଗଳ୍ପଗୁଡ଼ିକ ତାଙ୍କୁ ଏକ ସଫଳ କଥାକାରର ସ୍ୱୀକୃତି ଦିଏ । ମାତ୍ର ସେ 'ଚେରୀ' (୧୯୨୦) ଓ ଏହାର ଉତ୍ତର ଭାଗ 'ଲାଫିନ୍ ଡି ଚେରୀ' (୧୯୨୬)ରେ ଜଣେ ଯୁବକର ଜଣେ ବୟସ୍କା ନାରୀ ପ୍ରତି ଆସକ୍ତି ଓ ଏହାର ଦୁଃଖଦ ପରିସମାପ୍ତିର ଏକ ନିଚ୍ଛକ୍ ଚିତ୍ର ଅଙ୍କନ କରି ଫରାସୀ ସାହିତ୍ୟରେ ଆଲୋଡ଼ନ ସୃଷ୍ଟି କରିଥିଲେ । ସାହିତ୍ୟ ବ୍ୟତୀତ ଅଭିନୟ, ସାମ୍ବାଦିକତା, ଉଦ୍ଭିଦ ଓ ପ୍ରାଣୀମାନଙ୍କ ବିଷୟରେ ତାଙ୍କର ଜ୍ଞାନ ଓ ଉତ୍ସାହ ତାଙ୍କୁ ସେ ସମୟର ପ୍ୟାରିସ୍‌ରେ ଏକ ଅନନ୍ୟ ବ୍ୟକ୍ତିତ୍ୱରେ ପରିଣତ କରିଥିଲା । ୮୧ ବର୍ଷର ଘଟଣାବହୁଳ ଜୀବନର ସାୟାହ୍ନରେ, 'ଲିଜିଆନ୍ ଅଫ୍ ଅନର୍'ର ଗ୍ରାଣ୍ଡ ଅଫିସର, ଗନ୍‌କୋର୍ଟ ଆକାଦେମୀର ସଭାପତି ଏବଂ ପରିଶେଷରେ ରାଜକୀୟ ସମ୍ମାନ ସହ ଅନ୍ତ୍ୟେଷ୍ଟି କେଁତେଜଣ ଫରାସୀ ମହିଳାଙ୍କ ଭାଗ୍ୟରେ ଜୁଟେ ? ନାରୀ ଜୀବନର ବିଭିନ୍ନ ସମସ୍ୟା ଓ ସଙ୍କଟର ଏକ ତୀକ୍ଷ୍ଣ ଓ ଅନ୍ତର୍ଦୃଷ୍ଟି ସମ୍ପନ୍ନ ଚିତ୍ର ତାଙ୍କର ଯେଉଁ ଗଳ୍ପମାନଙ୍କରେ ନିପୁଣତାର ସହ ପ୍ରକଟିତ, ତହିଁରୁ The other wife (ଅନ୍ୟା) ଅନ୍ୟତମ ।

# ଅନ୍ୟା

'ଦୁଇ ଜଣଙ୍କ ପାଇଁ ଟେବୁଲ୍ ? ଏପଟେ ଆସନ୍ତୁ ସାର୍, ମାଡାମ୍ । ସମୁଦ୍ରକୁ ଯଦି ଦେଖିବାକୁ ଚାହୁଁଥାନ୍ତି ମାଡାମ୍... ସାର୍... ସେ ଝରକା ପାଖରେ ଗୋଟିଏ ଟେବୁଲ୍ ଖାଲି ଅଛି ।'

ଏଲିସ୍ ହୋଟେଲ୍ ବୟ ପଛେ ପଛେ ଚାଲିଲେ ।

'ହଁ, ହଁ, ଆସ ମାର୍କ, ଏଇଟା ଠିକ୍ ପାଣି ଉପରେ ନୌକାରେ ବସି ଦିବାଭୋଜନ ଉପଭୋଗ ପରି ହେବ । ଆସ, ଆସ ।'

ସ୍ୱାମୀ ତାଙ୍କ କହୁଣୀ ତଳେ ହାତ ଗଳାଇ ଡେଣାଟିକୁ ଧରି ପକାଇଲେ । 'ସେଠାରେ ଆମକୁ ବେଶୀ ଆରାମ ଲାଗିବ ।'

'ସେଠାରେ ? ଏତେସବୁ ଲୋକଙ୍କ ମଝିରେ ? ମୁଁ ବରଂ...'

'ଏଲିସ୍, ପ୍ଲିଜ୍... ।'

ସେ ସ୍ତ୍ରୀଙ୍କ ଡେଣା ଉପରେ ନିଜ ହାତମୁଠାକୁ ଅର୍ଥପୂର୍ଣ୍ଣଭାବରେ ଜୋର୍‌ରେ ଏପରି ଚାପି ଦେଲେ ଯେ, ସ୍ତ୍ରୀ ବୁଲିପଡ଼ି ପଚାରିଲେ, 'କ'ଣ ? ଘଟଣା କ'ଣ ?'

'ସିସ୍...' ନରମ ସ୍ୱରରେ ସେ କହିଲେ ଓ ପତ୍ନୀଙ୍କୁ ଗଭୀର ଦୃଷ୍ଟିରେ ଚାହିଁ ମଝି ଟେବୁଲ୍ ଆଡ଼କୁ ନେଇଗଲେ ।

'କ'ଣ ହୋଇଛି ମାର୍କ ?'

'କହିବି ପ୍ରିୟତମା, ସବୁ କହିବି । ଆଗ ମୁଁ ଖାଇବା ବରାଦ ଦେଇଦିଏଁ । ତୁମେ କ'ଣ ଚିଙ୍ଗୁଡ଼ି ଖାଇବ ? ନା ଚାଇନିଜ୍ ବରାଦ ଦେବା ?'

'ତୁମକୁ ଯାହା ଭଲ ଲାଗିବ ମଗାଅ, ତୁମେ ତ ଜାଣିଛ –'

କାର୍ଯ୍ୟବ୍ୟସ୍ତ ହୋଟେଲ୍ ବୟର ମୂଲ୍ୟବାନ ସମୟ ନଷ୍ଟ କରି ସେମାନେ ପରସ୍ପରକୁ ଅନାଇ ହସିଲେ, ବିଚରା ହୋଟେଲ୍ ବୟ ନର୍ଭସ ହୋଇ, ସେମାନଙ୍କ ପାଖରେ ଝାଳ ସରସର ଦେହରେ ଠିଆ ହୋଇ, ବିଭିନ୍ନ ମୁଦ୍ରାରେ ଚାହୁଁଥିଲା ।

'ମାଛ କଟଲେଟ୍', ମାର୍କ ବରାଦ ଦେଲେ । 'ଅଣ୍ଡା ଆଉ ବ୍ରେଡ୍ ଆଉ କିଛି ଚିକେନ୍ ଓ ସାଲାଡ୍ ଦେଇଦିଅ । ଆଉ ପାନୀୟ ? ଏ ହୋଟେଲ୍‌ର ସ୍ୱାତନ୍ତ୍ର୍ୟ ? ତା' ହେଲେ ସେୟା ହେଉ । ସ୍ୱତନ୍ତ୍ର ପାନୀୟ ନେଇ ଆସ, ସାମ୍ପେନ୍ । ଖାଇବା ସରିବା

ପରେ ଦୁଇଟା କଫି ଦେଇଦେବ। ମୋ ଡ୍ରାଇଭର ବି ଏଠାରେ ଖାଇବ। ଆମେ ଦୁଇଟାବେଳେ ଏ ଯାଗା ଛାଡ଼ିବୁ। ତା'ହେଲେ ସାମ୍ନେନ୍ ଆଣ।'

ଗୋଟାଏ ବଡ଼ ପ୍ରତିବନ୍ଧକ ହଟାଇ ଦେଲା ପରି ସେ ଦୀର୍ଘଶ୍ୱାସଟିଏ ପକାଇଲେ ଓ ମଧ୍ୟାହ୍ନର ରଙ୍ଗହୀନ ସମୁଦ୍ର, ମୁକ୍ତା-ଶୁଭ୍ର ଆକାଶ ଓ ତା'ପରେ ଛୋଟିଆ ସ୍ୱଚ୍ଛଟୋପି ଓ ଏଥିରୁ ଓହଳିଥିବା ଝାଲର ସହିତ ସୁନ୍ଦର ଦେଖାଯାଉଥିବା ନିଜ ପତ୍ନୀଙ୍କୁ ନିରିଖେଇ ଦେଖିଲେ।

'ପ୍ରିୟତମା, ତୁମେ ଭାରି ସୁନ୍ଦର ଦେଖାଯାଉଛ। ଆଉ ଚାରିପଟେ ଏହି ଜଳରାଶିର ନୀଳରଙ୍ଗ ତୁମ ଆଖିର ରଂଗକୁ ସବୁଜ କରି ଦେଇଛି। ଭାବିଲ ! ଆଉ ଏହି ଭ୍ରମଣ ଆରମ୍ଭ ପରଠାରୁ ତୁମ ଓଜନ ବି ଟିକିଏ ବଢ଼ିଲା ପରି ଲାଗୁଛି।... ଓଜନ ବଢ଼ିବାଟା ଗୋଟାଏ ସୀମା ପର୍ଯ୍ୟନ୍ତ ଭଲ... କିନ୍ତୁ କେବଳ ଗୋଟାଏ ସୀମା ପର୍ଯ୍ୟନ୍ତ !'

ପତ୍ନୀଙ୍କର କଠିଣ, ବର୍ତ୍ତୁଳ ବକ୍ଷୋଜ ଅହଂକାରରେ ଫୁଲିଉଠିଲା ଓ ସେ ଟେବୁଲ୍ ଉପରେ ନଇଁ ପଡ଼ିଲେ।

'ତୁମେ ସେ ଝରକା ପାଖ ଟେବୁଲ୍‌କୁ ଯିବାକୁ କାହିଁକି ମୋତେ ମନା କଲ ?'

ମାର୍କ ସିଗରୟ ମିଛ କହନ୍ତି ନାହିଁ। 'କାରଣ ତୁମେ ଯାହା ପାଖରେ ବସିବାକୁ ଯାଉଥିଲ, ମୁଁ ତାଙ୍କୁ ଜାଣେ।'

'ଆଉ ଏମିତି କିଏ ଯାହାଙ୍କୁ ମୁଁ ଜାଣେ ନାହିଁ ?'

'ମୋର ଆଗ ସ୍ତ୍ରୀ।'

ପତ୍ନୀ କ'ଣ କହିବେ ଭାବି ନପାରି ନିଜର ନୀଳନୟନ ଦୁଇଟିକୁ ଅଧିକ ବିସ୍ତାରିତ କରି ଚାହିଁଲେ।

'ସେଥିରେ କ'ଣ ଅଛି ପ୍ରିୟତମା ? ଏଇମିତି କେତେଥର ଦେଖା ହୋଇପାରେ। ଏଥିରେ ଗୁରୁତ୍ୱ ଦେବାର କିଛି ନାହିଁ।'

ଶବ୍ଦଗୁଡ଼ିକ ବାରମ୍ବାର ପ୍ରତିଧ୍ୱନିତ ହୋଇ ଏଲିସ୍‌ଙ୍କ ନାକରେ ବାଜିଲା। ଆଉ ସେ ସ୍ୱାଭାବିକ ଭାବରେ ସେହି ନିଶ୍ଚିତ ପ୍ରଶ୍ନଟିକୁ ପଚାରିଲେ। 'ସେ ତୁମକୁ ଦେଖିଛି ? ତୁମେ ତାକୁ ଦେଖିଥିବାର ସେ ଦେଖିଥାଇପାରେ ? ତାକୁ ମୋତେ ଦେଖାଇ ଦେବ ?'

'ଏବେ ସାଙ୍ଗେ ସାଙ୍ଗେ ବୁଲିକରି ଚାହଁ ନାହିଁ, ପ୍ଲିଜ୍, ସେ ନିଶ୍ଚୟ ଆମକୁ ଲକ୍ଷ୍ୟ କରୁଥିବ... ସେଇ ଯାହା ମୁଣ୍ଡରେ ବାଦାମୀ ଗହଳିଆ କେଶରାଶି, ଟୋପି ନାହିଁ, ସେ ନିଶ୍ଚୟ ଏଇ ହୋଟେଲ୍‌ରେ ରହୁଥିବ। ଏକୁଟିଆ ସେଇ ଲାଲ୍ ପୋଷାକ ପିନ୍ଧା ପିଲାମାନଙ୍କ ପଛପଟେ...'

'ହଁ, ମୁଁ ଦେଖିଲି।'

ସମୁଦ୍ର କୂଳିଆ ବଡ଼ ଟୋପି ପଛପଟେ ଲୁକ୍‌କାୟିତ ଏହି ନାରୀଟିକୁ ଏଲିସ୍ ଦେଖି ପାରିଲେ, ଶୁଭ୍ରବସ୍ତ୍ର ପରିହିତା ସେଇ ନାରୀ, ଯେ ପନ୍ଦର ମାସ ତଳେ ତାଙ୍କ ସ୍ୱାମୀଙ୍କ ସ୍ତ୍ରୀ ଥିଲେ।

'ବୁଝାମଣାର ଅଭାବ ।' ମାର୍କ କହିଲେ, 'ଓଃ, ମାନେ... ପୂରାପୂରି ବୁଝାମଣାର ଅଭାବ । ଆମେ ଉଚ୍ଚ ଅଭିଜାତମାନଙ୍କ ପରି ବି ପରସ୍ପରକୁ ଛାଡ଼ପତ୍ର ଦେଲୁ । ଆଉ ତା'ପରେ ମୁଁ ତୁମ ପ୍ରେମରେ ପଡ଼ିଗଲି, ଆଉ ତୁମେ ମୋ ସହିତ ପ୍ରକୃତରେ ସୁଖୀ ହେବାକୁ ଚାହୁଁଥିଲ । ଆମେ ସତରେ କେତେ ଭାଗ୍ୟବାନ ଯେ, ଆମେ ସୁଖ ସହିତ ଅନ୍ୟ କାହାର ଦୋଷୀଭାବ ବା ଦୁଃଖ ଜଡ଼ିତ ହୋଇ ନାହିଁ ।'

ଶୁଭ୍ର ପୋଷାକ ପରିହିତା ନାରୀଙ୍କର ଚିକ୍‌କଣ, ଗହଳ, ବହଳ କେଶରାଶୀ ଉପରେ ସମୁଦ୍ରର ଆକାଶୀ ଆଲୋକ ପ୍ରତିବିମ୍ବିତ ହେଉଥିଲା, ସେ ଅର୍ଦ୍ଧନିମୀଳତ ନୟନରେ ସିଗାରେଟ୍‌ଟିଏ ଟାଣୁଥିଲେ । ଏଲିସ୍ ସ୍ୱାମୀଙ୍କ ଆଡ଼କୁ ବୁଲିପଡ଼ି, କିଛି କଟ୍‌ଲେଟ୍ ସହ ବଟର ମିଶାଇ ଶାନ୍ତ ଭାବରେ ଖାଇଲେ । ମୁହୂର୍ତ୍ତକର ନୀରବତା ପରେ ପଚାରିଲେ, 'ତମେ କାହିଁ ମୋତେ କେବେ କହି ନାହଁ ଯେ ତା'ର ଚକ୍ଷୁର ରଙ୍ଗ ମଧ ନୀଳ ।'

'ଆଃ, ମୁଁ ଏକଥା କେବେ ଭାବି ନାହିଁ ।'

ପତ୍ନୀ ପାଉଁରୁଟି ଆଡ଼କୁ ବଢ଼ାଉଥିବା ହାତଟିକୁ ସେ ଚୁମ୍ବନ କଲେ ଆଉ ଏଲିସ୍ ଅତି ଖୁସିରେ ଲାଜେଇ ଗଲେ । ତାଙ୍କର ମଧୁର ରଙ୍ଗ ଓ ବଳିଷ୍ଠ ଦେହ ହୁଏତ ବେଳେବେଳେ କର୍କଶ ଲାଗୁଥିଲା; କିନ୍ତୁ ତାଙ୍କର ଚକ୍ଷୁର ବାରମ୍ବାର ପରିବର୍ତ୍ତିତ ନୀଳରଙ୍ଗ ଆଉ ତାଙ୍କର କୁଞ୍ଚିତ ସୁନେଲି କେଶରାଶି ତାଙ୍କୁ ଏକ ନରମ, ଭାବପ୍ରବଣ ନାରୀର ରୂପ ମଧ ଦେଉଥିଲା । ଅଜ୍ଞାତ, ଅଶାଳୀନ ଭାବରେ ସେ ଅତ୍ୟନ୍ତ ଆହ୍ଲାଦ ବିପୁଳ ପ୍ରଦର୍ଶନୀ ବିଭିନ୍ନ ଅଙ୍ଗଭଙ୍ଗୀ ଜରିଆରେ କରି ଚାଲିଥିଲେ ।

ମନ ଖୁସିରେ ସେମାନେ ଖାଇଲେ, ପିଇଲେ ଆଉ ପ୍ରତ୍ୟେକ ଭାବୁଥିଲେ ଯେ, ଅପରଜଣକ ସେଇ ଶ୍ୱେତବସ୍ତ୍ର ପରିହିତା ନାରୀଟିକୁ ଭୁଲି ଯାଇଥିବେ । ମଝିରେ ମଝିରେ ଏଲିସ୍ ଖୁବ୍ ବଡ଼ ପାଟିରେ ହସୁଥିଲେ, ଆଉ ମାର୍କ ଅତ୍ୟନ୍ତ ମୁଦ୍ରା ସଚେତନ ହୋଇ ସିଧା ହୋଇ, ମୁଣ୍ଡ ଟେକି ବସି ରହିଥିଲେ । ନୀରବରେ ସେମାନେ ଦୀର୍ଘ ସମୟ କଫି ପାଇଁ ଅପେକ୍ଷା କଲେ । ଏକ ଉତପ୍ତ ଉଜ୍ଜ୍ୱଳ ନଦୀ, ଉପରୁ ଅଦୃଶ୍ୟ ସୂର୍ଯ୍ୟର ପରାହତ କିରଣ ଧୀରେ ସମୁଦ୍ର ଜଳରେ ଆଖି ଝଲସା ଉଜ୍ଜ୍ୱଳତାରେ ବିମ୍ବିତ ହେଉଥିଲା ।

'ଜାଣ ସେ ତଥାପି ସେଇଠାରେ ବସିଛି ।' ଏଲିସ୍ ଚୁପ୍‌ଚାପ୍ କହିଲେ ।

'ତୁମକୁ ସେ ଅସୁବିଧା ଲାଗୁଛନ୍ତି ?' ତା'ହେଲେ ଆଉ କେଉଁଠାକୁ ଯିବା କଫି ଖାଇବାକୁ ?'

'ନା, ଆଦୌ ନୁହେଁ ! ତାକୁ ଅସୁବିଧା ଲାଗିବା କଥା ! ତା'ଛଡ଼ା ତୁମେ ଯଦି ତାକୁ ଠିକ୍‌ରେ ଦେଖି ପାରନ୍ତ... ଜାଣନ୍ତ ଯେ ସେ ବି ଏମିତି କିଛି ଜୀବନକୁ ଖୁବ୍ ଉପଭୋଗ କଲାପରି ଜଣାଯାଉ ନାହିଁ ।

'ମୋର ଦେଖିବା ଦରକାର ନାହିଁ । ମୁଁ ତା'ର ସେ ଚାହାଣୀ ଜାଣେ ।'

'ଓଃ, ସେ ସେହିପରି ଆଗରୁ ଥିଲା ?'

ସିଗାରେଟ୍ ଧୂଆଁ ନାକ ଭିତରକୁ ଟାଣିନେଇ ସେ ଭ୍ରୂଲତା ଦ୍ୱୟକୁ ଯୋଡ଼ି ଦେଲେ । 'ସେହିପରି ? ନା, ସତ କହିବାକୁ ଗଲେ, ସେ ମୋ ସହିତ ଖୁସି ନଥିଲା ।'

'ଓଃ, ଆଉ ଏବେ ?'

'ପ୍ରିୟତମା, ତୁମେ ମୋତେ ଯେପରି ଜଡ଼େଇ ରଖିଛ... ଏତେ ମନଲୋଭା... ପାଗଳ କରି ଦେଇଛ ମୋତେ... ତୁମେ ତୁମେ... ଗୋଟିଏ ପରୀ । ତୁମେ ମୋତେ ଭଲ ପାଅ... ତୁମର ସେ ନୟନଯୁଗଳ ଯେତେବେଳେ ମୁଁ ଦେଖେ ମୁଁ ଗର୍ବ ଅନୁଭବ କରେ । ହଁ, ସେଇ ଆଖି ଦୁଇଟି... ସେ... କେମିତି ତାକୁ ଖୁସି କରିବାକୁ ହେବ ମୁଁ ବୋଧେ ଜାଣି ନଥିଲି... ବାସ୍, ସେତିକି ମୁଁ ଜାଣିନଥିଲି କେମିତି ।'

'ସେ ଅତ୍ୟନ୍ତ ଜଟିଳ ।'

ଏଲିସ୍ ବିରକ୍ତିରେ ନିଜକୁ ପଙ୍ଖା କଲେ । ଆଉ ଆସ୍ତେ କଣେଇ କଣେଇ ଶୁଭ୍ରବସ୍ତ୍ରା ନାରୀଙ୍କୁ ଦେଖିଲେ । ସେ ସିଗାରେଟ୍ ଟାଣୁଥିଲେ, ବେତ ଚୌକିର ପଛପଟେ ତାଙ୍କ ବେକ ମୁଣ୍ଡ ଲଦି ହୋଇ ରହିଥିଲା ଓ ତାଙ୍କ ଚକ୍ଷୁ ଏକ ଗଭୀର ଆତ୍ମସନ୍ତୋଷରେ ବୁଜି ହୋଇ ଯାଇଥିଲା ।

ମାର୍କ ନମ୍ରତାର ସହ କାନ୍ଧ ହଲାଇଲେ ।

'ଠିକ୍ ଶବ୍ଦଟିଏ କହିଲ ।' ମାର୍କ ମାନିଗଲେ । 'ତୁମେ କ'ଣ କରି ପାରିବ ? ଯେଉଁମାନେ କେବେ ସନ୍ତୁଷ୍ଟ ନୁହଁନ୍ତି, ତାଙ୍କ ପାଇଁ ତୁମେ କେବଳ ଦୁଃଖ କରି ପାରିବ । କିନ୍ତୁ ଆମେ ସନ୍ତୁଷ୍ଟ, ଖୁବ୍ ସନ୍ତୁଷ୍ଟ, ନା ପ୍ରିୟତମା ?'

ସେ ଉତ୍ତର ଦେଲେ ନାହିଁ । ଲୁଚେଇ ଲୁଚେଇ, ଧୀରେ ଚୋରାଚାହାଣୀରେ ସେ ସ୍ୱାମୀଙ୍କ ଟାଣ, ସାଧାରଣ ମୁହଁକୁ ଦେଖୁଥିଲେ; ମଝିରେ ମଝିରେ ଧଳା ହୋଇ ଯାଇଥିବା ତାଙ୍କ ଗହଳ କେଶ, ତାଙ୍କ ପ୍ୟାଣ୍ଟ, ସଯତ୍ନ ହାତ, ନଖ, ଆଉ ପ୍ରଥମ ଥର ପାଇଁ ଜାଗ୍ରତ ସନ୍ଦେହରେ ସେ ନିଜକୁ ନିଜେ ପଚାରିଲେ, 'ତାଙ୍କଠାରୁ ଆଉ ଅଧିକ କ'ଣ ସେ ଆଶା କରନ୍ତି ?'

ଆଉ ହୋଟେଲ୍ ଛାଡ଼ିଲାବେଳକୁ, ମାର୍କ ଯେତେବେଳେ ବିଲ୍ ଦେଉଥିଲେ, ଆଉ ଡ୍ରାଇଭରକୁ ରାସ୍ତା କଥା ପଚାରୁଥିଲେ, ଏଲିସ୍ ଈର୍ଷାଳୁ, ଜିଜ୍ଞାସୁ ନୟନରେ ସେହି ଶୁଭ୍ର–ନାରୀକୁ ଦେଖୁଥିଲେ । ଦେଖୁଥିଲେ ସେହି ନାରୀଟିକୁ, ଯିଏ ଅସନ୍ତୁଷ୍ଟ, ଯାହାକୁ ସନ୍ତୁଷ୍ଟ କରିବା ଏତେ କଷ୍ଟକର, ଯିଏ ତାଙ୍କଠାରୁ ବହୁ ଉପରେ ।

■■■

*ଅନୁବାଦକ:* **ଶକୁନ୍ତଳା ବଳିଆରସିଂହ**

# ଆନ୍ନା ବ୍ଲାନ୍ଦିଆନା

'ପାଚେରୀ ପଛର ସାମ୍ରାଜ୍ୟ' (Empire Behind the Wall) ବା ରେଗାନ୍‌ଙ୍କ ଭାଷାରେ 'କୁ ସାମ୍ରାଜ୍ୟ' (Evil Empire) କୁହାଯାଉଥିବା ପୂର୍ବ ୟୁରୋପୀୟ ଦେଶସମୂହ ଏବେ କିନ୍ତୁ ସୋଭିଏତ୍ ପ୍ରଭାବ ଓ କର୍ତ୍ତୃତ୍ୱ ମୁକ୍ତ । ଏସବୁ ଦେଶ ପାଇଁ ବର୍ଲିନ୍ ପାଚେରୀର ପତନ ରାଜନୀତି ଦୃଷ୍ଟିରୁ ଯେତିକି ତାତ୍ପର୍ଯ୍ୟପୂର୍ଣ୍ଣ, ତା'ଠାରୁ ଅଧିକ ପ୍ରତୀକାତ୍ମକ । ସୋଭିଏତ୍ କର୍ତ୍ତୃତ୍ୱ ଯେ ଶିକ୍ଷା, ଅର୍ଥନୀତି, ସମାଜ ବ୍ୟବସ୍ଥା ଓ ଜୀବନାଦର୍ଶକୁ ନିୟନ୍ତ୍ରିତ କରିଥିଲା ତାହା ନୁହେଁ, ଏହା ସାହିତ୍ୟ, ସଂସ୍କୃତି, କଳା ଓ ବ୍ୟକ୍ତି ସ୍ୱାଧୀନତାକୁ ମଧ୍ୟ ଗଭୀର ଭାବେ ପ୍ରଭାବିତ କରିଥିଲା । ସୋଭିଏତ୍ ଗୋଷ୍ଠୀଭୁକ୍ତ ଏହି ଦେଶମାନଙ୍କରେ ଶାସକବର୍ଗ ଓ ଶାସନ ବିରୁଦ୍ଧରେ, ଏକଛତ୍ରବାଦ ଓ ସ୍ୱେଚ୍ଛାଚାର ବିପକ୍ଷରେ ଅସହମତି ଓ ପ୍ରତିବାଦର ସ୍ୱର ଉଠିଛି । ସବୁ ଦମନ ଓ ଦଣ୍ଡ ସତ୍ତ୍ୱେ ସେ ସ୍ୱର ଉଠିଛି ସାହିତ୍ୟରେ । ଏଥି ପାଇଁ କମ୍ ଯନ୍ତ୍ରଣା ସହିବାକୁ ପଡ଼ି ନାହିଁ ସାହିତ୍ୟିକମାନଙ୍କୁ – ବହି ନିଷେଧାଜ୍ଞା ଜାରିଠାରୁ ଗୁପ୍ତ ପୋଲିସ୍‌ର କାର୍ଯ୍ୟାନୁଷ୍ଠାନ ଯାଏ । ଏସବୁ ସତ୍ତ୍ୱେ ଏହି ତଥାକଥିତ 'କୁ ସାମ୍ରାଜ୍ୟ'ର ଲେଖକ ନିଜକୁ ଜାହିର୍ କରିଛି, ନିଜର ସ୍ୱପ୍ନ ଭିତରେ ପୂର୍ଣ୍ଣତା ଲାଭ କରିଛି କେବଳ ଗୋଟିଏ ବାଟରେ – ନିଜେ ବିଶ୍ୱାସ କରୁଥିବା ମୂଲ୍ୟବୋଧଗୁଡ଼ିକୁ ସେ କୌଣସି ପରିସ୍ଥିତିରେ ସାଲିସ୍ କରିବାକୁ ଦେଇ ନାହିଁ । ଏଇ ସାଲିସ୍‌ହୀନ ସଂଗ୍ରାମ ହିଁ ଥିଲା ସାହିତ୍ୟରେ ସବୁଠୁଁ ବେଶୀ । ରାଜନୈତିକ ଦଳ, ଶାସକ, ସେନ୍‌ସର୍, ଗୁପ୍ତ ପୋଲିସ୍, ଫାୟାରିଂ ସ୍କ୍ୱାର୍ଡ, ଜେଲ୍‌ଦଣ୍ଡ ଏସବୁ ଦିନେ ଥିଲା ସେ ସାମ୍ରାଜ୍ୟର ବାସ୍ତବତା । ପୁଣି ଟଲ୍‌ଷ୍ଟୟ, ଦସ୍ତୋଭସ୍କି, ତୁର୍ଗେନେଭ, ପାସ୍ତରନାକ ଓ ସୋଲ୍‌ଜେନିତ୍‌ସିନ୍‌ଙ୍କ ପରି ମଣିଷମାନେ ହିଁ

ଥିଲେ ଏ ସାମ୍ରାଜ୍ୟର ଲେଖକମାନଙ୍କର ପ୍ରେରଣାର ଉତ୍ସ । ସାହିତ୍ୟ ଓ ରାଜନୈତିକ କ୍ଷମତା ମଧ୍ୟରେ ଯେତିକି ବ୍ୟବଧାନ ବଢ଼ିଲା, ସାହିତ୍ୟିକମାନେ ଜନସାଧାରଣଙ୍କର ସେତିକି ଅଧିକ ଆସ୍ଥାଭାଜନ ହେବାକୁ ଲାଗିଲେ । ଏଇଥିପାଇଁ ନିଷେଧ ହୋଇଥିବା ବହି ବହୁ ସଂଖ୍ୟାରେ ଗୁପ୍ତରେ ବିକ୍ରି ହେବାକୁ ଲାଗିଲା । ସାହିତ୍ୟିକମାନଙ୍କର ଅଣସାହିତ୍ୟିକ ଭୂମିକା ଗୁରୁତ୍ୱପୂର୍ଣ୍ଣ ହେବାକୁ ଲାଗିଲା – ଯେମିତି ପତ୍ରକାରିତା ଓ ରାଜନୀତି । ସବୁଥିରେ ସେଇ କଟକଣା ଓ ବନ୍ଧନ ବିରୁଦ୍ଧରେ ସ୍ୱର । ଏ ଦେଶର ଜଣେ ସାହିତ୍ୟିକର ଅଭିଜ୍ଞତା ଅନନ୍ୟ, ଯାହାକି ଏକ ମୁକ୍ତ ସମାଜବ୍ୟବସ୍ଥା ମଧ୍ୟରେ ଅନୁଭବ କରିବା ସମ୍ଭବପର ନୁହେଁ ।

ଏବେ ସାମ୍ରାଜ୍ୟ ବଦଳିଛି, ଶାସନ ବଦଳିଛି, ତା' ସଙ୍ଗରେ ମଧ୍ୟ ବଦଳୁଛି ସାହିତ୍ୟ । ଏବେ ଆଉ ପାଚେରୀ ନାହିଁ, ପରଦା ନାହିଁ । ସେଇ ଅନୁଭୂତିକୁ ନେଇ ଲେଖା ହୋଇଥିବା କାହାଣୀ ସବୁ ଏବେ ପଦାକୁ ଆସୁଛି ।

ବହୁଦିନ ତଳେ ମହାନ୍ ଲେଖକ କାଫ୍‌କା (ଚେକୋସ୍ଲୋଭାକିଆ ଲେଖକ) କହିଥିଲେ –'ତମେ ଅନ୍ୟକୁ ଭଲ ପାଇ ପାରନା । କେବଳ ଭୟ ହିଁ ତମକୁ ଉତ୍ତେଜିତ କରାଏ ।' ଏବର ପୂର୍ବ ୟୁରୋପୀୟ ଦେଶମାନଙ୍କର ନୈତିକ ଜଳବାୟୁ ଏହାଠାରୁ ସେମିତି କିଛି ଅଧିକ ଫରକ ନୁହେଁ । ପୁରୁଣା ଦିନର ସବୁ ଅନୁଭୂତି, ଯନ୍ତ୍ରଣା, ସଂଗ୍ରାମ, ମୃତ୍ୟୁ, ଭୟ, ରକ୍ତପାତ – ଏବେ ବି ପୂର୍ବ ୟୁରୋପୀୟ କଥାସାହିତ୍ୟକୁ ଦୟନୀୟ ଭାବେ ପ୍ରଭାବିତ କରି ରଖିଛି । ଆନା ବ୍ଲାନ୍ଦିଆନା ରୁମାନୀୟ ସାହିତ୍ୟର ଏକ ପରିଚିତ ନାମ । ତମିସୁରାଠାରେ ୧୯୪୨ ମସିହାରେ ତାଙ୍କର ଜନ୍ମ । ରୁମାନିଆ ଏକଛତ୍ରବାଦୀ ଶାସକ ସେସେସ୍କୁଙ୍କ ଗୁପ୍ତ ପୋଲିସ୍ ଦ୍ୱାରା ବିଗତ ଗୋଟିଏ ଦଶନ୍ଧି ଧରି ସେ ନିର୍ଯାତିତା । ତାଙ୍କ କବିତା ହିଁ ତାଙ୍କ ନିର୍ଯାତନାର କାରଣ । ତାଙ୍କର ପ୍ରଥମ ଉପନ୍ୟାସ 'ଡ୍ର ଭର୍ତ୍ତି କରତାଳି' (A Drawful Clappings) ସେସେସ୍କୁଙ୍କ ମୃତ୍ୟୁ ପରେ ହିଁ ପ୍ରକାଶ ପାଇଥିଲା । 'ଓପନ୍ ଉଇଣ୍ଡୋ' ଗଳ୍ପଟି ପ୍ରଥମେ Romania Literaraରେ ୧୯୯୦ ମସିହାରେ ପ୍ରକାଶ ପାଇ ଖୁବ୍ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ଯାହାର ଓଡ଼ିଆ ଅନୁବାଦ - ଖୋଲା ଝର୍କା ।

# ଖୋଲା ଝର୍କା

ସେଇ ପୁରୁଣା ଦିନ କଥା । ଚିତ୍ରକରମାନଙ୍କୁ ବନ୍ଦୀ କରାଯାଉଥିଲା, ସେମାନଙ୍କୁ ସଂଗରେ ନିଜର ତୂଳୀ ଓ ରଙ୍ଗ ଜେଲ୍ ଭିତରକୁ ନେବାକୁ ବହୁ କଷ୍ଟରେ ଅନୁମତି ଦିଆ ଯାଉଥିଲା । ଏଣେ ବନ୍ଦୀଶାଳାର ଉପର ମହଲାରେ ଥିବା ଗୋଟିଏ ଅନ୍ଧାରିଆ କୋଠରୀ ଭିତରେ ପଶୁ ପଶୁ ଏ ଗଳ୍ପର ନାୟକ ମୁଣ୍ଡରେ ପ୍ରଥମେ ଗୋଟିଏ କଥା ଢୁକିଲା । ସେ ଭାବିଲା ଏଇ ବନ୍ଦ କୋଠରୀରେ ଯେ କୌଣସି ଗୋଟିଏ କାନ୍ଥରେ ଝର୍କାର ଛବିଟିଏ ଆଙ୍କିବ । ସେ ସଙ୍ଗେ ସଙ୍ଗେ ଗୋଟିଏ ଖୋଲା ଝର୍କା ଆଙ୍କିବା କାମରେ ଲାଗିଗଲା, ଯାହା ଭିତର ଦେଇ ଚକ୍ ଚକ୍ କରୁଥିବା ନୀଳ ଆକାଶକୁ ଦେଖିହେବ । ତା'ର ସେଇ ଛୋଟ କୋଠରୀଟି ଖୁବ୍ ଅଧିକ ଉଜ୍ଜ୍ୱଳ ଦିଶିଲା ।

ତା'ପର ଦିନ ସକାଳୁ ଜେଲ୍ ଅଧକ୍ଷ ପାଣି ଓ ପାଉଁରୁଟି ନେଇ କୋଠରୀ ଭିତରକୁ ଆସିବାବେଳେ ଚିତ୍ରିତ ଝରକା ଦେଇ ଘର ଭିତରକୁ ପଶି ଆସୁଥିବା ଉଜ୍ଜ୍ୱଳ ଆଲୋକରେ ତାଙ୍କ ଆଖି ବନ୍ଦ ହୋଇଗଲା ।

'କ'ଣ ସେଠି ଚାଲିଛି ?' ସେ ଚିତ୍କାର କରି ଝର୍କା ବନ୍ଦ କରିବାକୁ ଦୌଡ଼ି ଗଲାବେଳକୁ ତାଙ୍କ ଦେହ କାନ୍ଥରେ ପିଟି ହୋଇଗଲା ।

'ମୁଁ ଗୋଟାଏ ଝର୍କା ଖୋଲିଛି ।'ଚିତ୍ରକର ଅବିଚଳିତ ସ୍ୱରରେ ଉତ୍ତର ଦେଲା । 'ଘର ଭିତରଟା ଖୁବ୍ ଅନ୍ଧାରିଆ ଲାଗୁଥିଲା ।'

'ହା, ହା, ହା,' ଜେଲ୍ ଅଧକ୍ଷ ଚିତ୍ର ଦେଖି ନିଜେ ଠକି ଯାଇଥିବାରୁ ଦାରୁଣ ଅପମାନବୋଧରେ ହସୁଥିଲେ । ତା'ପରେ ବିଦ୍ରୂପଭରା କଣ୍ଠରେ ସେ ଚିତ୍ରକରକୁ କହିଲେ, 'ତମେ ସେଠି ଝର୍କା ଖୋଲିଛ... ତମେ ଝର୍କାର ଚିତ୍ରଟିଏ ଆଙ୍କିଛ । ମୂର୍ଖ ! ଏଇଟା ପ୍ରକୃତ ଝର୍କା ନୁହେଁ । ତମେ ହିଁ କେବଳ ଭାବୁଛ ଯେ ସେଇଟା ଗୋଟିଏ ସତ ଝର୍କା ।'

ପୂର୍ବପରି ଅବିଚଳିତ କଣ୍ଠରେ ଚିତ୍ରକର ଉତ୍ତର ଦେଲା, 'ଏ କୋଠରୀକୁ ମୁଁ ଆଲୋକିତ କରିବାକୁ ଚାହୁଁଥିଲି । ତାହାହିଁ ମୁଁ କରିଛି । ମୋ ଝରକା ଦେଇ ବାହାରର ଆକାଶକୁ ଦେଖି ହେବ । ଆପଣ ନିଜେ ଘର ଭିତରକୁ ପଶିବାବେଳେ ଉଜ୍ଜ୍ୱଳ ଆଲୋକ ଯୋଗୁଁ ଆଖି ବନ୍ଦ କରିଦେଲେ ।'

ଏଥର ଜେଲ୍ ଅଧକ୍ଷ ଖୁବ୍ ରାଗିଗଲେ । 'ତମେ କ'ଣ ମୋ ସାଙ୍ଗରେ ଥଟ୍ଟା ତାମସା କରୁଛ ନା କ'ଣ ? ଏ ସାରା ପ୍ରାସାଦରେ ଗୋଟିଏ ହେଲେ ଝରକା ନାହିଁ । ଏ ଘର ଭିତରେ ଯିଏ ଥରେ ପଶେ, ସେ ପୁଣି ଆଉ ଥରେ ଦିନର ଆଲୁଅ ଦେଖିବାକୁ ଜୀବିତ ରହେ ନାହିଁ ।'

'ତଥାପି ଏଇ ଖୋଲା ଝର୍କା ଭିତର ଦେଇ ଦିନର ଆଲୁଅ ତ ମୋ ଛୋଟ କୋଠରୀ ଭିତରେ ଅଜାଡ଼ି ହୋଇ ପଡୁଛି', ଚିତ୍ରକର ଉତ୍ତର ଦେଲା ।

'ଓହୋ, ହଁ' ଜେଲ୍ ଅଧକ୍ଷ ତାକୁ ଉପହାସ ଭଙ୍ଗୀରେ କହିଲେ ।

'ତା'ହେଲେ ତମେ ଖସି ପଳାଇ ଯାଉନା କାହିଁକି ? ପୁଣି ସେମିତି କରିପାରିଲେ ଏଇଟା ପ୍ରକୃତ ଝର୍କାଟିଏ ବୋଲି ତମେ ବି ମୋତେ ବୁଝେଇ ପାରନ୍ତ ।'

ଚିତ୍ରକର ଜଣକ ଜେଲ୍ ଅଧକ୍ଷଙ୍କୁ ଅନୁଧ୍ୟାନ କଲାଭଳି ଆଖିରେ କିଛି ସମୟ ପାଇଁ ଚାହିଁ ରହିଲା । ତା'ପରେ କାନ୍ଥ ଆଡ଼କୁ ଦୁଇ ତିନିପାଦ ଆଗେଇବା ପରେ ଝର୍କା ଭିତର ଦେଇ ବାହାରକୁ ଲମ୍ଫ ଦେଲା ।

'ରୁହ, ରୁହ !' ତାକୁ ଅଟକାଇବା ଉଦ୍ଦେଶ୍ୟରେ ଜେଲ୍ ଅଧକ୍ଷ ତା' ପଛରେ ଜୋର୍‌ରେ ଆଗେଇ ଚାଲିଲେ । ଫଳରେ ପୁଣି ଥରେ ଜେଲ୍ ଅଧକ୍ଷଙ୍କ ମୁଣ୍ଡ କାନ୍ଥ ଦେହରେ ପିଟି ହୋଇଗଲା ।

'ସାବଧାନ ! କୟଦୀ ଖସି ପଳାଇଲା' – ସେ ବିକଳରେ ଚିତ୍କାର କରିବାକୁ ଲାଗିଲେ । ସେତେବେଳକୁ ଚିତ୍ରକରର ଆହତ ଶରୀର ଚଟାଣ ଉପରେ ପଡ଼ିବାର ଶବ୍ଦ ଶୁଭୁଥିଲା ।

■■■

*ଅନୁବାଦ* **ସଂଗ୍ରାମ ଜେନା**

# ଅକ୍ଟାଭିଓ ପାଜ୍

୧୯୯୦ ମସିହାରେ ସାହିତ୍ୟ ପାଇଁ ନୋବେଲ୍ ପୁରସ୍କାର ବିଜେତା, ଭାରତରେ ମେକ୍ସିକୋର ପୂର୍ବତନ ରାଷ୍ଟ୍ରଦୂତ, କବି, ସମାଲୋଚକ ଅକ୍ଟାଭିଓ ପାଜ୍ ଆମ ସମୟର ଜଣେ ମହାନ୍ ସ୍ରଷ୍ଟା । ନେରୁଦା ଓ ବୋରେସ୍‌ଙ୍କ ଭଳି ସେ ଜଣେ ଲାଟିନ୍ ଆମେରିକୀୟ ଲେଖକ ଯାହାଙ୍କ ଲେଖା ନିଜ ଦେଶର ସାହିତ୍ୟ, ସଂସ୍କୃତି ରାଜନୀତିକୁ ପ୍ରଭାବିତ କରିବା ସଙ୍ଗେ ସଙ୍ଗେ ବିଶ୍ୱକୁ ଆନ୍ଦୋଳିତ କରିଛି ।

୧୯୧୪ ମସିହାରେ ମେକ୍ସିକୋ ସହରରେ ତାଙ୍କ ଜନ୍ମ । ୧୯୩୭ ମସିହାରେ ଜଣେ ଫାସିଷ୍ଟ ବିରୋଧୀ ଲେଖକ ଭାବେ ସାହିତ୍ୟିକ ଜୀବନ ଆରମ୍ଭ କରନ୍ତି । ୧୯୩୮ ମସିହାରେ ଫ୍ରାନ୍ସରୁ ମେକ୍ସିକୋ ଫେରି ସେ ସାହିତ୍ୟ, ରାଜନୀତି ଉଭୟରେ ସଂପୃକ୍ତ ହୋଇପଡ଼ନ୍ତି । ସେ ମଧ୍ୟ ଥିଲେ ଫ୍ରାନ୍ସରେ ମେକ୍ସିକୋର ରାଷ୍ଟ୍ରଦୂତ । ୧୯୬୨ରୁ ୧୯୬୮ ପର୍ଯ୍ୟନ୍ତ ସେ ଥିଲେ ଭାରତର ରାଷ୍ଟ୍ରଦୂତ, ମାତ୍ର ମେକ୍ସିକୋ ସିଟିର ଛାତ୍ର ବିକ୍ଷୋଭ ଉପରେ ସରକାରଙ୍କ ଦମନଲୀଳାର ପ୍ରତିବାଦରେ ସେ ଏ ପଦବୀ ତ୍ୟାଗ କରି ଫେରି ଯାଆନ୍ତି ମେକ୍ସିକୋ । କବିତା ଓ ସମାଲୋଚନା ଉଭୟ ଲେଖିବାରେ ସେ ସିଦ୍ଧହସ୍ତ । ତାଙ୍କ କବିତାଗୁଡ଼ିକରେ ଥାଏ ଆଦିରସର ପ୍ରାଧାନ୍ୟ । କାରଣ ତାଙ୍କ ମତରେ, କବିତା ଏକ ସଂଯୋଗ, ମଣିଷର ନିର୍ଜନତା ଭାଙ୍ଗିବାକୁ ଏକ ଉପାୟ । ସ୍ପାନିସ୍ ଭାଷାରେ ଲେଖୁଥିବା ଏହି ଲେଖକଙ୍କର ବହୁ ରଚନା ଇଂରାଜୀରେ ଅନୂଦିତ । ସେଗୁଡ଼ିକ ମଧ୍ୟରୁ 'Selected Poems', 'Congiguration Renga' ଆଦି କବିତା ସଂକଳନ ଓ 'The Labyrinth of Solitude', 'The Bow and the Lyre', 'Double Flame' ଆଦି ଗଦ୍ୟରଚନା ବହୁପଠିତ ।

ଉଭୟ ପାଶ୍ଚାତ୍ୟ ଓ ପ୍ରାଚ୍ୟ ସଂସ୍କୃତିର ଏକ ମିଶ୍ରିତ ଦୃଷ୍ଟିଭଂଗୀ ରହିଛି ତାଙ୍କ ରଚନାରେ । ଭାରତୀୟ ସମାଜ, ସଂସ୍କୃତି, ସମାଜ, ସାହିତ୍ୟ ଉପରେ ତାଙ୍କର ଅନେକ ଲେଖା । ୧୯୫୧ ମସିହାରେ ସେ ପ୍ରଥମେ ଭାରତ ଆସିଥିଲେ । ସେହିଦିନରୁ ହିଁ ସେ ଅଧ୍ୟୟନ କରିଛନ୍ତି ଭାରତର ସାହିତ୍ୟ, ରାଜନୀତି ଓ ସମାଜ ବ୍ୟବସ୍ଥାକୁ । ଏହା ଫଳ ସ୍ୱରୂପ ୧୯୯୭ ମସିହାରେ ପ୍ରକାଶିତ ହୋଇଛି ତାଙ୍କର ସମାଲୋଚନା ସଂକଳନ 'In light of India' । ଫ୍ରାନ୍ସ ରହଣୀ କାଳରେ ସରରିଆଲିଜିମ୍‌ର ପ୍ରମୁଖ ପ୍ରବକ୍ତା ଆନ୍ଦ୍ରେ ବ୍ରେଟନ୍ ଓ ଅନ୍ୟାନ୍ୟ ସରରିଆଲିଷ୍ଟମାନଙ୍କର ତାଙ୍କ ଉପରେ ଯେଉଁ ଗଭୀର ପ୍ରଭାବ ପଡ଼ିଥିଲା– ତା'ର ନିଦର୍ଶନ ଏଇ ଗଳ୍ପ 'The Blue Boquet', ଯାହାର ଓଡ଼ିଆ ଅନୁବାଦ 'ନୀଳ ପୁଷ୍ପଗୁଚ୍ଛ' ।

# ନୀଳ ପୁଷ୍ପଗୁଚ୍ଛ

ନିଦ ଭାଙ୍ଗିଲା ବେଳକୁ ମୁଁ ଝାଳରେ ଭିଜି ଯାଇଥିଲି । ମୋ କୋଠରୀର ଚଟାଣରେ ଖୁବ୍ କମ୍ ସମୟ ପୂର୍ବରୁ ପାଣି ଛିଞ୍ଚା ଯାଇଥିଲା ଓ ଚଟାଣର ନାଲି ଟାଇଲ୍‌ରୁ ଉଷୁମ୍ ବାମ୍ପ ଉଠୁଥିଲା । ଆଲୁଅରେ ଆଖି ଝଲସି ଯାଉଥିବାରୁ ପୋକଟିଏ ଅନାବୃତ ବଲ୍‌ବଟିଏର ଚାରିପଟେ ଘୂରି ବୁଲୁଥିଲା । ଦୋଳିରୁ ଓହ୍ଲେଇ କୋଠରୀର ଏମୁଣ୍ଡରୁ ସେମୁଣ୍ଡ ଖାଲି ପାଦରେ ଚାଲିଲି । ଚଟାଣର ଥଣ୍ଡା ଉପଭୋଗ କରିବାକୁ କାଳେ ବିଛାଟିଏ ବାହାରି ବୁଲୁଥିଲା ଅବସ୍ଥାରେ ତା' ଉପରେ ମୋ ଗୋଡ଼ ପଡ଼ିଯିବ, ଏଇଥିପାଇଁ ଖୁବ୍ ସନ୍ତର୍ପଣରେ ମୁଁ ଠିଆ ହୋଇ ରହିଲି । କ୍ଷେତରୁ ଭାସି ଆସୁଥିବା ପବନରେ ମୁଁ ନିଃଶ୍ୱାସ ନେଉଥିଲି ଓ ଶୁଣୁଥିଲି ରାତି ନିଃଶ୍ୱାସ ନେବାର ନାରୀସୁଲଭ ବିଶାଳ ଶବ୍ଦ । ତା'ପରେ ମୁଁ ହାତଗୋଡ଼ ଧୋଇବା ଜାଗାକୁ ଗଲି, ବେସିନ୍ ଭିତରେ କିଛି ପାଣି ଢ଼ାଳି ଗାମୁଛା ଓଦା କଲି । ଓଦା ଲୁଗାରେ ଛାତି ଓ ଗୋଡ଼ ପୋଛିଲି । ଦେହ ଟିକେ ଶୁଖିଲା ପରେ ଜାମା ପ୍ୟାଣ୍ଟରେ ଯେପରି ଛାରପୋକ ନରହି ଯାଆନ୍ତି ପରୀକ୍ଷା କରି ପିନ୍ଧିଲି । ନୀଳରଙ୍ଗ ହୋଇଥିବା ସିଡ଼ିଘରର ପାହାଚ ଡେଇଁ ଡେଉଁ ଡେଉଁ ମୁଁ ଯାଇ ହୋଟେଲ୍ ଜଗୁଆଳି ବସିଥିବା ଦ୍ୱାରା ପାଖରେ ପହଞ୍ଚିଲି । ତା'ର ଗୋଟିଏ ଆଖି ନଥିଲା । ସେ ବିଷଣ୍ଣ ବଦନ ଓ ଅର୍ଦ୍ଧ ନିମୀଳିତ ନୟନରେ ଚେୟାର୍ ଉପରେ ବସି ଚୁପ୍‌ଚାପ୍ ସିଗାରେଟ୍ ଟାଣୁଥିଲା । ଆଖି ଖୋଲି ମୋତେ ଚାହିଁଲା ଓ କର୍କଶ ସ୍ୱରରେ ପଚାରିଲା – 'ମହାଶୟ, ଆପଣ କେଉଁଆଡ଼େ ଯାଉଛନ୍ତି ?'

'ଟିକେ ବୁଲିବାକୁ । ଏତେ ଗରମରେ ରୁମ୍ ଭିତରେ ରହି ହେବ ନାହିଁ ।'

'କିନ୍ତୁ ବର୍ତ୍ତମାନ ତ ସବୁ ବନ୍ଦ ହୋଇ ଯାଇଥିବ । ଆଉ ଆମର ତ ଏଠି ରାସ୍ତା ଆଲୁଅ ବି ନାହିଁ, ବରଂ ଆପଣ ନଯାଇ ରହି ଯାଆନ୍ତୁ ।

ମୁଁ ସାମାନ୍ୟ କାନ୍ଧ ଟେକି ଉତ୍ତର ଦେଲି – 'ମୁଁ ସଙ୍ଗେ ସଙ୍ଗେ ଫେରି ଆସିବି ।' ଏବଂ ମୁଁ ଅନ୍ଧାର ଭିତରକୁ ଚାଲିଗଲି ।

ପ୍ରଥମେ ମୁଁ କିଛି ଦେଖି ପାରିଲି ନାହିଁ । ସେ ଗୋଡ଼ିବିଛା ରାସ୍ତାରେ ଆସ୍ତେ ଆସ୍ତେ ଆଗକୁ ଚାଲିବାକୁ ଲାଗିଲେ । ମୁଁ ଗୋଟିଏ ସିଗାରେଟ୍ ଲଗାଇଲି । ହଠାତ୍ ଖଣ୍ଡେ କଳାବାଦଲ ଭିତରୁ ଜହ୍ନ ବାହାରି ଆସିଲା । ପାଗର ଛାପ ଧରିଥିବା ଧଳାକାନ୍ଥ ଆହୁରି ଉଜ୍ଜ୍ୱଳ ଦେଖାଗଲା । ସେ ଉଜ୍ଜ୍ୱଳତାରେ ଅନ୍ଧ ହୋଇ ଚଲାପଥରେ ମୁଁ ଠିଆ ହୋଇ ରହିଲି । ଧୀରେ ଧୀରେ ବହୁଥିବା ପବନରେ ତେନ୍ତୁଳି ଗଛର ବାସ୍ନା ମୁଁ ବାରି ପାରୁଥିଲି । ପତ୍ର ଓ ପତଙ୍ଗମାନଙ୍କ ଶବ୍ଦରେ ରାତ୍ରୀଟି ଗୁଞ୍ଜରିତ ହେଉଥିଲା । ମୁଁ ଆଖି ଟେକି ଚାହିଁଲି । ତାରାମାନେ

ମଧ୍ୟ ବାହାରକୁ ଆସିଛନ୍ତି । ମୁଁ ଭାବୁଥିଲି, ଏ ସାରା ବିଶ୍ୱ ସଂକେତର ଏକ ବିଶାଳ ବ୍ୟବସ୍ଥା । ଅସଂଖ୍ୟ ଜୀବମାନଙ୍କ ମଧ୍ୟରେ ଏକ ନିରନ୍ତର ବାର୍ତ୍ତାଳାପ । ମୋ ନିଜ କାର୍ଯ୍ୟ, ଝିଙ୍କାରୀର ଟକ୍‌ଟକ୍ ଶବ୍ଦ, ତାରାର ଆଖିମିଟିକା ଏସବୁ କେବଳ ସେଇ ଆଳାପର ସାମୟିକ ବିରତି ଓ ଶବ୍ଦାଂଶ, ସେଇ ଆଳାପର ଖଣ୍ଡିତ ଅଂଶ ବିଶେଷ । ମୁଁ କେବଳ ସେଇ ସାମାନ୍ୟ ଶବ୍ଦାଂଶଟିଏ । ମାତ୍ର ଏ ବିଶ୍ୱ କ'ଣ ? ଏ ଶବ୍ଦ କିଏ ଉଚ୍ଚାରଣ କରୁଥିଲା ? ପୁଣି କାହା ପାଇଁ ? ମୁଁ ସିଗାରେଟ୍‌ଟିକୁ କଡ଼କୁ ଫିଙ୍ଗିଦେଲି । ସେ ଯାଇ ଗୋଟିଏ ଉଜ୍ଜ୍ୱଳ ଅର୍ଦ୍ଧବୃତ୍ତ ଭିତରେ ପଡ଼ିଲା ଓ ସେଥିରୁ ଛୋଟ ଧୂମକେତୁ ଭଳି ସ୍ଫୁଲିଙ୍ଗ ସବୁ ବାହାରୁଥିଲା ।

ମୁଁ ସେମିତି ଧୀରେ ଧୀରେ ବହୁତ ସମୟ ଯାଏ ଚାଲୁଥିଲି । ମୁଁ ନିଜକୁ ମୁକ୍ତ ଓ ନିରାପଦ ଭାବୁଥିଲି, କାରଣ ସେହି ବିଶାଳ ଓଠଗୁଡ଼ିକ ମୋତେ ଖୁବ୍ ପରିଷ୍କାର ଭାବେ ଓ ଆନନ୍ଦରେ ସମ୍ବୋଧନ କରୁଥିଲେ । ରାତିଟି ଆଖିର ବଗିଚାଟିଏ ହୋଇ ଯାଇଥିଲା ।

ତା'ପରେ ଯେତେବେଳେ ମୁଁ ରାସ୍ତା ପାର ହେଉଥିଲି ମୋତେ ଜଣାଗଲା ଯେ କେହି ଜଣେ ଦ୍ୱାର ବାହାରକୁ ଆସିଲା । ମୁଁ ବୁଲି ଚାହିଁଲି, ମାତ୍ର କିଛି ଦେଖି ପାରିଲି ନାହିଁ । ମୁଁ ଦ୍ରୁତ ଗତିରେ ଚାଲିବାକୁ ଲାଗିଲି । କିଛିକ୍ଷଣ ପରେ ରାସ୍ତାର ଉଷୁମ ପଥର ଉପରେ କାହାର ଗୋଡ଼ ଘୋସାରି ଚାଲିବାର ଶବ୍ଦ ଶୁଣିପାରିଲି । ମୁଁ ପଛକୁ ଫେରି ଅନାଇବାକୁ ଚାହୁଁନଥିଲି, ଯଦିଓ ମୁଁ ଜାଣିଥିଲି ଯେ ଛାୟାଟିଏ ମୋ ପାଖାପାଖି ପହଞ୍ଚିବାକୁ ଚେଷ୍ଟା କରୁଛି । ମୁଁ ନିଜକୁ ରକ୍ଷା କରିବା ପୂର୍ବରୁ ଅନୁଭବ କଲି ଯେ ଗୋଟିଏ ତୀକ୍ଷ୍ଣ ଛୁରୀର ଅଗ୍ରଭାଗ ମୋ ପିଠିପଟେ ଲାଗିଛି । ଗୋଟିଏ କ୍ଷୀଣସ୍ୱର ଶୁଭିଲା – 'ମହାଶୟ, ଆଗକୁ ବଢ଼ନ୍ତୁ ନାହିଁ, ନହେଲେ ମୃତ୍ୟୁ !'

ମୁଣ୍ଡ ନ ବୁଲାଇ ମୁଁ ପ୍ରଶ୍ନ କଲି :

'ତୁମେ କ'ଣ ଚାହଁ ?'

'ମହାଶୟ ! ଆପଣଙ୍କ ଆଖି' । ତା' ସ୍ୱରଟି ଆଶାତୀତ ଭାବେ ନରମ ଥିଲା, ପୁଣି ଥିଲା ଲଜ୍ଜାଶୀଳ ।

'ମୋ ଆଖି ? ମୋ ଆଖି ତମର କି କାମରେ ଲାଗିବ ? ଦେଖ, ମୋ ପାଖରେ ଅଳ୍ପ କିଛି ଟଙ୍କା ଅଛି । ବେଶୀ ନାହିଁ । ତଥାପି କିଛି ଅଛି । ମୁଁ ତମକୁ ମୋ ପାଖରେ ଯାହା ଅଛି ସବୁ ଦେଇ ଦେବି, ଯଦି ତୁମେ ମୋତେ ଛାଡ଼ିଦିଅ । ମୋତେ ମାର ନାହିଁ ।'

'ମହାଶୟ ! ଆପଣ ଭୟଭୀତ ହୁଅନ୍ତୁ ନାହିଁ । ମୁଁ ଆପଣଙ୍କୁ ହତ୍ୟା କରିବାକୁ ଚାହେଁ ନାହିଁ । ମୋର କେବଳ ଆପଣଙ୍କ ଆଖି ଦରକାର ।'

'କିନ୍ତୁ ତମେ କ'ଣ ପାଇଁ ତାହା ଚାହୁଁଛ ?'

'ଏହା ମୋର ପ୍ରେମିକାର ଇଚ୍ଛା । ତା'ର ନୀଳଆଖିର ଗୁଚ୍ଛଟିଏ ଦରକାର । ଏଠି ଏମିତିକା ଆଖିଥିବା ବେଶି ଲୋକ ନାହାନ୍ତି ।'

'ମୋ ଆଖି ତମର ଦରକାରରେ ଆସିବ ନାହିଁ । ତାହା ନୀଳ ନୁହେଁ, ଈଷତ୍ ବାଦାମୀ ରଙ୍ଗର ।'

'ମହାଶୟ, ମୋତେ ବୋକା ବନେଇବାକୁ ଚେଷ୍ଟା କରନ୍ତୁ ନାହିଁ । ମୁଁ ଜାଣେ ତାହା ନୀଳ ରଙ୍ଗର ।'

'ମାତ୍ର ଆମେ ଉଭୟ ଖ୍ରୀଷ୍ଟିଆନ୍ । ତମେ କେବେହେଲେ ମୋ ଆଖି ତାଡ଼ି ପାରିବ ନାହିଁ । ମୋ ପାଖରେ ଥିବା ସବୁ ଜିନିଷ ତମକୁ ଦେଇଦେବି ।'

'ଏତେ ନମ୍ର ହୁଅନ୍ତୁ ନାହିଁ ।' ତା' ସ୍ୱର କର୍କଶ ଶୁଣାଗଲା । 'ଏପଟକୁ ବୁଲ ।'

ମୁଁ ବୁଲି ଠିଆ ହେଲି । ଲୋକଟି ବାଙ୍ଗରା ଓ ପତଳା ଥିଲା । ତାଳପତ୍ରର ଟୋପିଟିଏ ପିନ୍ଧି ତା' ମୁହଁକୁ ଅଧା ଘୋଡ଼ାଇ ରଖିଥିଲା । ତା' ହାତରେ ଥିଲା ଲମ୍ବା ଓଜନିଆ ଛୁରୀଟିଏ । ଜହ୍ନ ଆଲୁଅରେ ଛୁରୀଟି ଚକ୍‌ଚକ୍ କରୁଥିଲା । 'ତମ ମୁହଁ ପାଖରେ ଦିଆସିଲିଟିଏ ଜଳାଇ ରଖ ।'

ମୁଁ ଦିଆସିଲି କାଠିଟିଏ ମୋ ମୁହଁ ଆଗରେ ଜଳାଇ ରଖିଲି । ନିଆଁ ଧାସରେ ମୋ ଆଖି ବୁଜି ହୋଇଗଲା । ଏବଂ ସେ ତା' ଆଙ୍ଗୁଳିରେ ମୋ ଆଖିପତାକୁ ଖୋଲି ଧରିଲା । ସେ ଆଖି ଭିତରକୁ ଭଲ ଭାବରେ ଦେଖି ପାରୁ ନଥିଲା । ତେଣୁ ସେ ଗୋଡ଼ଟିପ ଅଗରେ ଠିଆ ହୋଇ ମୋ ଆଡ଼କୁ ଚାହିଁଲା । ଦିଆସିଲି କାଠିଟି ଜଳି ସରି ଆସିବାରୁ ମୋ ଆଙ୍ଗୁଳିରେ ନିଆଁ ଲାଗିଗଲା । ମୁଁ ତାକୁ ଫୋପାଡ଼ି ଦେଲି । ସେ ମୁହୂର୍ତ୍ତକ ପାଇଁ ନୀରବରେ ଠିଆ ହୋଇ ରହିଲା ।

'ତମର ଏବେ ବିଶ୍ୱାସ ହେଲା ତ ? ସେଗୁଡ଼ିକ ନୀଳ ନୁହେଁ ।'

'ମହାଶୟ ! ଆପଣ ବହୁତ ଚାଲାକ ! ଆଉ ଗୋଟିଏ ଦିଆସିଲି କାଠି ଜଳାନ୍ତୁ ।'

ମୁଁ ଆଉ ଗୋଟିଏ କାଠି ଜଳାଇଲି ଓ ମୋ ଆଖି ସାମ୍ନାରେ ଧରି ରଖିଲି । ସେ ମୋ କାନ୍ଧକୁ ଟାଣି କହିଲା : 'ଆଣ୍ଠେଇ ରୁହ ।'

ମୁଁ ଆଣ୍ଠେଇ ରହିଲି । ସେ ମୋ ଚୁଟି ଧରି ମୋ ମୁଣ୍ଡକୁ ପଛକୁ ନେଲା । ତା'ପରେ ସେ ମୋ ଉପରେ ନଇଁ ପଡ଼ି ଏକାଗ୍ରତା ସହ ଦେଖିବାକୁ ଲାଗିଲା । ଜଳନ୍ତା କାଠିଟିକୁ ମୋ ଆଖିପତା ଛୁଇଁବା ପର୍ଯ୍ୟନ୍ତ ପାଖକୁ ପାଖକୁ ଆଣୁଥିଲା । ମୁଁ ଆଖି ବନ୍ଦ କରିଦେଲି ।

'ଆଖି ଖୋଲ – ଆହୁରି ବେଶୀ ଖୋଲା କର ।' ସେ କହିଲା ।

ମୁଁ ପୁଣିଥରେ ଆଖି ଖୋଲିଲି । ନିଆଁ ଧାସ ମୋତେ ଛାଟ ମାରିବା ଭଳି ଲାଗୁଥାଏ ।

ହଠାତ୍ ସେ ମୋତେ ଛାଡ଼ିଦେଲା ।

'ନା ସେଗୁଡ଼ିକ ନୀଳ ନୁହେଁ । ମୋତେ କ୍ଷମା କର ।'

ଏବଂ ସେ ଅନ୍ତର୍ହିତ ହୋଇଗଲା ।

ମୁଁ ହାତରେ ମୁହଁ ଢାଙ୍କି କାନ୍ଥକୁ ଆଉଜି ବସିଲି । ତା'ପରେ ମୁଁ ଠିଆ ହୋଇ ସେ ନିର୍ଜନ ରାସ୍ତାରେ ପ୍ରାୟ ଘଣ୍ଟାଏ କାଳ ଦୌଡ଼ିଲି । ପରିଶେଷରେ ଯେତେବେଳେ ବଜାର ଭିତରେ ପହଞ୍ଚିଲି, ମୁଁ ଦେଖିଲି ସେ ହୋଟେଲ୍‌ର ଜଗୁଆଳି ସେମିତି ଦ୍ୱାର ମୁହଁରେ ବସିଛି । ମୁଁ ତାକୁ କିଛି ନ କହି ଭିତରକୁ ଚାଲିଗଲି ।

ତା'ପରଦିନ ମୁଁ ସେ ଗାଁ ଛାଡ଼ି ଦେଇଥିଲି ।



*ଅନୁବାଦ :* **ପ୍ରଦୀପ ଦାସ ।**

# ସଲ୍‌ମନ୍ ରୁସ୍‌ଦୀ

ସଲ୍‌ମନ୍ ରୁସ୍‌ଦୀ ଆମ ସମୟର ଜଣେ ପ୍ରଖ୍ୟାତ ଲେଖକ । ବିଂଶ ଶତାବ୍ଦୀର ଶେଷ ଦଶକରେ ବିଶ୍ୱର ଜଣେ ବିଶିଷ୍ଟ ଓ ବିବଦମାନ ସାହିତ୍ୟିକ । ୧୯୪୭ ମସିହାରେ ବମ୍ବେଠାରେ ତାଙ୍କର ଜନ୍ମ । ତାଙ୍କର ପ୍ରଥମ ଉପନ୍ୟାସ ଭାବେ ପ୍ରକାଶ ପାଏ 'ଗ୍ରୀମସ୍' । ଦ୍ୱିତୀୟ ଓ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଉପନ୍ୟାସ 'ମିଡ୍ ନାଇଟ୍‌ସ ଚିଲ୍‌ଡ୍ରେନ୍' ତାଙ୍କୁ ଔପନ୍ୟାସିକ ଭାବେ ଆନ୍ତର୍ଜାତିକ ପ୍ରତିଷ୍ଠା ଆଣିଦେଇଥିଲା । ଏହି ପୁସ୍ତକ ପାଇଁ ସେ ୧୯୮୧ ମସିହାରେ ସମ୍ମାନଜନକ ବୁକର୍ ପୁରସ୍କାର ପାଇଥିଲେ । ପରେ ପରେ ପ୍ରକାଶ ପାଏ ଆଉ ଗୋଟିଏ ଉପନ୍ୟାସ 'ସେମ୍' । ଏହାପରେ ପ୍ରକାଶ ପାଏ ତାଙ୍କର ସବୁଠୁଁ ବିତର୍କିତ ଉପନ୍ୟାସ 'ଦି ସାଟାନିକ୍ ଭର୍ସେସ୍' । ଧର୍ମୀୟ ଭାବନାକୁ ଆଘାତ ଦେଇଥିବାରୁ ସେ ଇସ୍‌ଲାମୀୟ ମୌଳବାଦୀମାନଙ୍କ ବିଷଦୃଷ୍ଟିରେ ପଡ଼ନ୍ତି । ଇରାନ୍‌ରୁ ଘୋଷିତ ହୁଏ ତାଙ୍କର ମୃତ୍ୟୁଦଣ୍ଡ । ସେହିଦିନରୁ ସେ ରହିଛନ୍ତି ଆତ୍ମଗୋପନ କରି ଲଣ୍ଡନରେ, ଏକ ପ୍ରକାର ଆତ୍ମନିର୍ବାସନରେ । ୧୯୯୦ରେ ପ୍ରକାଶ ପାଏ ତାଙ୍କର ଉପନ୍ୟାସ 'ହାରୁନ୍ ଆଣ୍ଡ ଦି ସି ଅଫ୍ ଷ୍ଟୋରିଜ୍' ଓ ୧୯୯୪ ମସିହାରେ ଗଳ୍ପ ସଂକଳନ 'ଇଷ୍ଟ, ୱେଷ୍ଟ' । ଗଳ୍ପ ଉପନ୍ୟାସ ବ୍ୟତୀତ ବହୁ ମୌଳିକ ପ୍ରବନ୍ଧ ସେ ଲେଖିଛନ୍ତି । ତାଙ୍କ ସମାଲୋଚନାର ପରିସୀମା ବହୁ ବିସ୍ତୃତ – ଗାନ୍ଧୀ, ଜିଆ-ଉଲ୍-ହକ୍, ଇନ୍ଦିରା ଗାନ୍ଧୀ ହତ୍ୟାଠାରୁ ଆରମ୍ଭ କରି ମାର୍କ୍ୱେଜ୍, ଲୋସା, ସିଂଗର, ପୁଣି ସଲ୍‌ବେଲୋଙ୍କଠାରୁ ସତ୍ୟଜିତ୍ ରାୟଙ୍କ ପର୍ଯ୍ୟନ୍ତ । ଏସବୁ ସଂକଳିତ ହୋଇଛି ୧୯୯୧ରେ ପ୍ରକାଶିତ 'ଇମାଜିନାରୀ ହୋମ୍‌ଲାଣ୍ଡ' ପୁସ୍ତକରେ । ପୁରୁଣା ବିବାଦ ନ ତୁଟୁଣୁ ପୁଣି ଥରେ ବିବାଦ ବ୍ୟୁହରେ ପଡ଼ିଛନ୍ତି ରୁସ୍‌ଦୀ ।

ସମସାମୟିକ ଭାରତୀୟ ରଚନା (୧୯୪୭-୧୯୯୭) ଉପରେ ତାଙ୍କର ମତାମତ ପାଇଁ। ଏହି ସମୟରେ ଭାରତୀୟ ଲେଖକମାନଙ୍କର ଇଂରାଜୀ ରଚନା ଆଞ୍ଚଳିକ ଭାଷାର ରଚନା ଅପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ ବୋଲି ସେ ମତବ୍ୟକ୍ତ କରିଛନ୍ତି 'ନ୍ୟୁୟର୍କ ରିଭ୍ୟୁ'ରେ ପ୍ରକାଶିତ ପ୍ରବନ୍ଧ ଓ ୧୯୯୭ ମସିହାରେ ପ୍ରକାଶିତ 'ଭିଣ୍ଟେଜ୍ ବୁକ୍ ଅଫ୍ ଇଣ୍ଡିଆନ୍ ରାଇଟିଂ' (୧୯୪୭-୧୯୯୭) ପୁସ୍ତକର ମୁଖବନ୍ଧରେ।

ବିଶ୍ୱର ଏହି ମହାନ୍ ଲେଖକଙ୍କର 'ଇଷ୍ଟ, ୱେଷ୍ଟ' ଗଳ୍ପ ସଂକଳନସ୍ଥ ଗଳ୍ପ 'ଏ ଗୁଡ୍ ଆଡଭାଇସ୍ ଇଜ୍ ରେଆରର୍ ଦେନ୍ ରୁବିଜ୍'ର ଓଡ଼ିଆ ଭାଷାନ୍ତର 'ଉତ୍ତମ ପରାମର୍ଶ ରୁବିଠାରୁ ବିରଳ।'

# ଉତ୍ତମ ପରାମର୍ଶ ରୁବିଠାରୁ ବିରଳ

ମାସର ଶେଷ ମଙ୍ଗଳବାର । ହେଡ୍‌ଲାଇଟ୍ ଲିଭିନଥିବା ସକାଳ ବସ୍ ରେହାନାକୁ ବ୍ରିଟିଶ୍ କନ୍‌ସୁଲେଟ୍‌ର ଫାଟକ ପାଖରେ ଛାଡ଼ିଦେଲା । ବସ୍ ଆସି ପହଞ୍ଚିଲା ବେଳେ ଧୂଳିର ଯେଉଁ ପଟଳ ଉଡ଼ିଲା – ସେଥିରେ ରେହାନାର ସୌନ୍ଦର୍ଯ୍ୟ ଅପରିଚିତ ଲୋକମାନଙ୍କ ଦୃଷ୍ଟିରୁ ଲୁଚିଗଲା । ବସ୍‌ଟି ବହୁ ଉଜ୍ଜ୍ୱଳ ରଙ୍ଗରେ ଚିତ୍ରିତ ହୋଇଥିଲା ଏବଂ ଏହା ସମ୍ମୁଖରେ ସ୍ୱର୍ଣ୍ଣ ସବୁଜ ରଙ୍ଗରେ ଲେଖା ହୋଇଥିଲା, 'ଚରୈବତି, ପ୍ରିୟତମ ।' ବସ୍‌ର ପଶ୍ଚାତ୍ ଦେଶରେ ଲେଖାଥିଲା 'ଟାଟା-ବାଟା' ଏବଂ 'ଓ କେ ଗୁଡ୍ ଲାଇଫ୍' । ରେହାନା ଡ୍ରାଇଭର ସମ୍ମୁଖରେ ବସ୍‌ଟିର ସୌନ୍ଦର୍ଯ୍ୟକୁ ତାରିଫ୍ କଲା ମାତ୍ରକେ ଡ୍ରାଇଭର ତଳକୁ ଡେଇଁପଡ଼ି ଦରଜାକୁ ଖୋଲା ରଖିଲା ଏବଂ ଝିଅଟି ଓହ୍ଲାଇବା ବେଳେ ନାଟକୀୟ ଢ଼ଙ୍ଗରେ ତାକୁ କୁର୍ନୀଶ କଲା ।

ମିସ୍ ରେହାନାର ଘନକୃଷ୍ଣ ଆଖିଗୁଡ଼ିକ ଏତେ ଆୟତ ଓ ଉଜ୍ଜ୍ୱଳ ଥିଲା ଯେ ଅନ୍ୟ କୌଣସି ସୌନ୍ଦର୍ଯ୍ୟ ବର୍ଦ୍ଧକ ପଦାର୍ଥର ଆବଶ୍ୟକତା ନଥିଲା । ପରାମର୍ଶ ବିଶେଷଜ୍ଞ ମହମ୍ମଦ ଅଲ୍ଲୀର ଦୃଷ୍ଟି ଯେତେବେଳେ ସେଇ ଆଖି ଉପରେ ପଡ଼ିଲା, ସେ ପୁଣି ଥରେ ଯେମିତି ଯୁବକ ହୋଇଗଲା । ଦିନର ଆଲୋକ ବଢ଼ିବା ସଙ୍ଗେ ସଙ୍ଗେ ଅଲ୍ଲୀ ଲକ୍ଷ୍ୟ କଲା ଝିଅଟି କନ୍‌ସୁଲେ୍‌ଟ ଫାଟକ ଆଡ଼କୁ ଆସୁଛି ଏବଂ ସୁନା ବୋତାମ ଲଗା ଖାକୀ ପୋଷାକ ଓ ଆଭରଣଯୁକ୍ତ ପଗଡ଼ି ପିନ୍ଧିଥିବା ଦାଢ଼ିବାଲା ଦରଓ୍ୱାନ୍ ଲାଲାକୁ ଫାଟକ କେତେବେଳେ ଖୋଲିବ ପଚାରୁଛି । ସାଧାରଣତଃ ମଙ୍ଗଳବାର ଦିନ କନ୍‌ସୁଲେଟ୍‌କୁ ଆସୁଥିବା ସ୍ତ୍ରୀ ଲୋକମାନଙ୍କ ପ୍ରତି ରୁକ୍ଷ ବ୍ୟବହାର କରୁଥିଲେ ମଧ୍ୟ ଲାଲା ମିସ୍ ରେହାନାର ପ୍ରଶ୍ନର ଉତ୍ତର ଦେବାବେଳେ କିଛିଟା ସୌଜନ୍ୟ ପ୍ରଦର୍ଶନ କରିବା ପରି ମନେହେଲା । ଅଧଘଣ୍ଟା ପରେ, ରୁକ୍ଷ ଭାବରେ ସେ କହିଲା – କିଏ ଜାଣେ ଦୁଇ ଘଣ୍ଟା ବି ହୋଇପାରେ, ସାହେବମାନେ ପ୍ରାତଃଭୋଜନ ସାରି ନାହାନ୍ତି ।

କେତେକ ସ୍ତ୍ରୀ ଲୋକ ବୁର୍ଖା ପିନ୍ଧି ଓ ରେହାନା ପରି ଆଉ କେତେଜଣ ସ୍ତ୍ରୀଲୋକ ବିନା ବୁର୍ଖାରେ, ବସ୍‌ଷ୍ଟପ୍ ଓ କନ୍‌ସୁଲେଟ୍ ମଝିହତାରେ ଜମା ହୋଇ ଯାଇଥିଲେ । ସେମାନେ ସମସ୍ତେ ଆତଙ୍କିତ ଜଣାପଡୁଥିଲେ ଏବଂ ସାଙ୍ଗରେ ଥିବା ସମ୍ପର୍କୀୟମାନଙ୍କ ଉପରେ ଆଉଜି ଛିଡ଼ା ହୋଇଥିଲେ । କିନ୍ତୁ ମିସ୍ ରେହାନା କାହାରି ସାହାଯ୍ୟ ନନେଇ ଆସିଥିଲା ଏବଂ ମୋଟେ ଆତଙ୍କିତ ଜଣାପଡୁନଥିଲା ।

ସବୁଠାରୁ ଦୁର୍ବଳ ଦେଖାଯାଉଥିବା ଏଇ ସାପ୍ତାହିକ ପ୍ରାର୍ଥନାକାରୀମାନଙ୍କୁ ପରାମର୍ଶ ଦେବାରେ ବିଶେଷ ଜ୍ଞାନ ହାସଲ କରିଥିବା ଅହମ୍ମଦ ଅଲ୍ଲୀର ପାଦ ତାକୁ ସେଇ ଅପରିଚିତା, ଆୟତ ନୟନା, ସ୍ୱାଧୀନ ଝିଅଟି ଆଡ଼କୁ କଢ଼ାଇ ନେଲା ।

'ମିସ୍' ସେ ଆରମ୍ଭ କଲା । 'ମୁଁ ଭାବୁଛି ତୁମେ ଲଣ୍ଡନ ଯିବା ପାଇଁ ଅନୁମତି ପତ୍ର ନେବା ପାଇଁ ଆସିଛ ।'

ଝିଅଟି ପାଚେରୀକୁ ଲାଗିଥିବା ଗୋଟିଏ ଜଳଖିଆ ଦୋକାନ ପାଖରେ ଛିଡ଼ା ହୋଇ ପରମ ସନ୍ତୋଷରେ ପକୋଡ଼ି ଖାଉଥିଲା । ଅଲ୍ଲୀକୁ ଦେଖିବା ପାଇଁ ସେ ପଛକୁ ଚାହିଁଲା । ସେ ଚାହାଣିରେ ଅଲ୍ଲୀର ଅନ୍ତନାଡ଼ି ଯେମିତି ଦୁହିଁ ହୋଇଗଲା ।

'ହଁ, ତୁମର ଅନୁମାନ ଠିକ୍ ।'

'ମୁଁ ତମକୁ କିଛି ପରାମର୍ଶ ଦେଇପାରେ ? ବେଶୀ ଖର୍ଚ୍ଚ ହେବ ନାହିଁ ।'

'ଭଲ ପରାମର୍ଶ ରୁବିଠାରୁ ମଧ ବିରଳ', ଈଷତ୍ ହସି ରେହାନା କହିଲା ।

'କିନ୍ତୁ ହାୟ ମୁଁ କିଛି କରିପାରିବି ନାହିଁ । ମୁଁ ଜଣେ ପିତୃମାତୃହୀନ ଅନାଥ ଝିଅ ଏବଂ ଏନ୍ୟ ସ୍ତ୍ରୀଲୋକମାନଙ୍କ ପରି ଧନୀ ନୁହେଁ ।'

'ମୋତେ ବିଶ୍ୱାସ କର', ମହମ୍ମଦ ଅଲ୍ଲୀ କହିଲା । 'ମୋ ପରାମର୍ଶ ଅନୁଭୂତିର କଷଟିରେ ପରୀକ୍ଷିତ । ଏହା ନିଶ୍ଚୟ ତୁମ କାମରେ ଆସିବ ।'

ମୁଣ୍ଡ ହଲାଇ ରେହାନା କହିଲା, 'ମୁଁ ତ କହିଲି ମୁଁ ଭାରି ଗରିବ । ରୋଜଗାରିଆ ପୁରୁଷ ଲୋକମାନଙ୍କ ସହିତ ଆସିଥିବା ସ୍ତ୍ରୀ ଲୋକମାନଙ୍କ ପାଖକୁ ଯାଅ । ଭଲ ପରାମର୍ଶ ପାଇଁ ଭଲ ମୂଲ୍ୟ ମଧ ମିଳିବା ଦରକାର ।'

ମହମ୍ମଦ ଅଲ୍ଲୀ ଭାବିଲା ତା'ର ମୁଣ୍ଡ ଯେମିତି ଗୋଳମାଳ ହୋଇ ଯାଉଛି । ନିଜ ଭିତରୁ କେହି କହୁଥିବାର ସେ ଶୁଣିଲା, 'ମିସ୍, ଭାଗ୍ୟ ମୋତେ ତୁମ ନିକଟକୁ ଟାଣି ଆଣିଛି । ମୁଁ ବି ଜଣେ ଗରିବ ଲୋକ, କିନ୍ତୁ ତୁମକୁ ମାଗଣାରେ ପରାମର୍ଶ ଦେବା ପାଇଁ ମୁଁ ପ୍ରସ୍ତୁତ ।'

ରେହାନା ପୁଣି ହସିଲା । 'ତେବେ ମୁଁ ନିଶ୍ଚୟ ଶୁଣିବି । ବିଧିର ଉପହାରକୁ ସୌଭାଗ୍ୟ ବୋଲି ହିଁ କହିବାକୁ ପଡ଼ିବ ।'

ଅସ୍ଥାୟୀ ଚାଳଘରର ଗୋଟିଏ କୋଣରେ ଯେଉଁଠି ତା'ର ନୁଆଁଣିଆ କାଠ ବେଞ୍ଚ ପଡ଼ିଥିଲା, ଅଲୀ ରେହାନାକୁ ସେହିଠାକୁ ବାଟ କଢ଼ାଇ ନେଲା । କାଗଜ ଠୁଙ୍ଗାରୁ ପକୋଡ଼ି ଖାଉଖାଉ ରେହାନା ତା'ର ଅନୁଗମନ କଲା; କିନ୍ତୁ ପକୋଡ଼ିରୁ କିଛି ଯାଚିଲା ନାହିଁ ।

ଧୂଳିଧୂସରିତ ଚଟାଣରେ ମହମ୍ମଦ ଅଲ୍ଲୀ ଗଦିଟିଏ ପକାଇ ଦେଲା ଓ ରେହାନାକୁ ବସିବାକୁ କହିଲା । ଡେକ୍‌ସର ଅପରପାର୍ଶ୍ୱରେ ସେ ନିଜେ ଚକା ମାଡ଼ି ବସିଲା । ଦୁଇ ତିନି ଡଜନ ଈର୍ଷା ପରାୟଣ ପୁରୁଷ ଆଖି ତାକୁ ଦେଖୁଛନ୍ତି, ଏ କଥା ଅଲ୍ଲୀ ଜାଣିଥିଲା । ବ୍ୟବସ୍ଥିତ ହେବା ପାଇଁ ସେ ଲମ୍ୱା ନିଃଶ୍ୱାସଟିଏ ନେଲା ।

'ଦୟାକରି ତୁମ ନାମ କହିବ ?'

'ମିସ୍ ରେହାନା ବ୍ରାଡ୍‌ଫୋର୍ଡ୍, ଇଂଲଣ୍ଡ' – ଅଲ୍ଲୀ କହିଲା ।

'ଲଣ୍ଡନ' ମୁଲ୍‌ତାନ୍ ବା ମହାବଳପୁର ପରି ସହରଟିଏ ମାତ୍ର । ଅନ୍ୟ ପକ୍ଷରେ ଇଂଲଣ୍ଡ ହେଉଛି ଗୋଟିଏ ମହାନ୍ ଦେଶ ଯେଉଁଠାରେ ପୃଥିବୀର ଶୀତଳତମ ମାଛ ପ୍ରଚୁର ଭାବରେ ମିଳେ ।

'ବୁଝିଲି, ଧନ୍ୟବାଦ ।' ରେହାନା ଏପରି ଗମ୍ଭୀର ଭାବେ କହିଲା ଯେ ସେ ଗୁରୁତ୍ୱର ସହ କହୁଛି ବା ଥଟ୍ଟା କରୁଛି ଅଲ୍ଲୀ ଜାଣି ପାରିଲା ନାହିଁ ।

'ତୁମେ ଯଦି ଦରଖାସ୍ତ ଫର୍ମ ପୂରଣ କରିଛ ଦୟାକରି ମୋତେ ଦେଖାଇବ ?' ଅଲ୍ଲୀ କହିଲା ।

ମାଟିଆ ଲଫାପା ଭିତରେ ଯତ୍ନରେ ଚଉତା ଗୋଟିଏ କାଗଜ ରେହାନା ତା' ହାତକୁ ବଢ଼ାଇ ଦେଲା ।

'ଏହା ଠିକ୍ ଅଛି ତ ?'

ପ୍ରଥମ ଥର ପାଇଁ ରେହାନା ସ୍ୱରରେ ଥିଲା କିଛିଟା ଉତ୍କଣ୍ଠା ।

ତା'ର ହାତ ଡେକ୍‌ସର ଯେଉଁଠାରେ ଥିଲା ସେହି ପାଖରେ ଜୋର୍‌ରେ ଥାପୁଡ଼ାଇ ଅଲ୍ଲୀ କହିଲା, 'ମୋର ସାମାନ୍ୟ ବି ସନ୍ଦେହ ନାହିଁ । ତଥାପି ଟିକେ ଅପେକ୍ଷା କର, ମୁଁ ଦରଖାସ୍ତଟିକୁ ଭଲଭାବରେ ଦେଖିନିଏ ।'

ସେ କାଗଜଟି ଉପରେ ଆଖି ପକାଉ ପକାଉ ରେହାନା ପକୋଡ଼ିକୁ ଶେଷ କଲା ।

'ଟିପ୍ ଟପ୍, ସବୁ ଠିକ୍ ଅଛି ।' ଅଲ୍ଲୀ ତା'ର ନିଷ୍ପତ୍ତି ଶୁଣାଇଲା ।

'ତୁମ ପରାମର୍ଶ ପାଇଁ ଧନ୍ୟବାଦ' ଠିଆ ହେଉ ହେଉ ରେହାନା କହିଲା ।

'ମୁଁ ଏବେ ଯାଏ ଏବଂ ଗେଟ୍ ପାଖରେ ଅପେକ୍ଷା କରେ ।'

'ତୁମେ କ'ଣ ଭାବୁଛ ଏଇଟା କ'ଣ ଏତେ ସହଜ ବ୍ୟାପାର ହୋଇଛି ? ମିସ୍ ରେହାନା, ମୁଁ ତୁମକୁ କହି ରଖୁଛି ତୁମେ ଯେଉଁ ସ୍ଥାନକୁ ଯାଉଛ ତାହା ପୋଲିସ୍ ଥାନାଠାରୁ ମଧ୍ୟ କଦର୍ଯ୍ୟ ।'

ଏବେ ରେହାନା ଥିଲା ଅଲ୍ଲୀର ବାକ୍‌ଚାତୁରୀରେ ମୁଗ୍ଧା ଚଳତ୍‌ଶକ୍ତିହୀନା ଜଣେ ଶ୍ରୋତ୍ରୀ । ଅଲ୍ଲୀର ମଧ୍ୟ ସୌଭାଗ୍ୟ ଯେ ସେ ଅଧିକ କିଛି ମୁହୂର୍ତ୍ତ ପାଇଁ ରେହାନାକୁ ଦେଖି ପାରିବ । ଦୀର୍ଘ ନିଃଶ୍ୱାସ ନେଇ ସେ ତା'ର ଚିରାଚରିତ ଭାଷଣ ଆରମ୍ଭ କଲା । ସାହେବମାନେ ମଙ୍ଗଳବାର ଦିନ କନ୍‌ସୁଲେଟ୍‌କୁ ଆସୁଥିବା ସ୍ତ୍ରୀ ଲୋକମାନଙ୍କ ବିଷୟରେ କ'ଣ ଭାବନ୍ତି, ସେକଥା ସେ ରେହାନାକୁ କହିଲା । ରେହାନା କିନ୍ତୁ ପ୍ରତିବାଦ କଲା । ଦରକାର ପଡ଼ିଲେ ସେ ସେହି ଶ୍ରେଣୀର ନୁହେଁ ବୋଲି ସାହେବମାନଙ୍କୁ ସିଧାସିଧା କହିବ ବୋଲି ପ୍ରସ୍ତୁତ ଥିଲା ।

ରେହାନାର ସରଳତାର ସୁଯୋଗ କାଳେ କିଏ ନେବ ତାହାହିଁ ଅଲ୍ଲୀକୁ ବିଚଳିତ କରୁଥିଲା । ଛଅାଣ ପରି ଧୂର୍ତ୍ତ କନ୍‌ସୁଲେଟ୍‌ର ଲୋକମାନଙ୍କ ସାମନାରେ ରେହାନା

ଥିଲା ଘରଚଟିଆ ପରି ନିରୀହ ପକ୍ଷୀଟିଏ ମାତ୍ର । ସେମାନେ ରେହାନାକୁ ଏପରି ସବୁ ପ୍ରଶ୍ନ ପଚାରିବେ ଯାହା ଭଉଣୀକୁ ପଚାରିବା ପାଇଁ ଭାଇ ମଧ୍ୟ ସଂକୋଚ ବୋଧ କରିବ । ତା'ର ବ୍ୟକ୍ତିଗତ ଜୀବନର ଗୋପନ କଥା ସବୁ ସେମାନେ ଜାଣିବାକୁ ଚାହିଁବେ । ଯଦି ଏପରି କିଛି ଘଟଣା ଘଟେ, ସେ ଯେପରି ବେଶୀ ଧକ୍କା ନ ପାଇବ, ସେଥିପାଇଁ ମହମ୍ମଦ ଅଲ୍ଲୀ ଜାଣିଶୁଣି ଏସବୁ ଅଶାଳୀନ ପ୍ରଶ୍ନର ଉତ୍ତର ଅବତାରଣା କରିଥିଲା । ରେହାନାର ଆଖି ସ୍ଥିର ଥାଏ ସତ, କିନ୍ତୁ ଡେକ୍ସର ଧାରରେ ତା'ର ହାତଗୁଡ଼ିକ ଥରିବାକୁ ଲାଗିଲା ।

ଅଲ୍ଲୀ କହି ଚାଲିଲା :

ତୁମର ପୈତୃକ ଗୃହରେ କେତୋଟି କୋଠରୀ ଅଛି, କାନ୍ଥର ରଙ୍ଗ କ'ଣ, କେତେଦିନରେ ଥରେ ଘରୁ ମଇଳା ସଫା କରାଯାଏ ଇତ୍ୟାଦି ଯାବତୀୟ ପ୍ରଶ୍ନ ସେମାନେ ତୁମକୁ ପଚାରିବେ । ତୁମ ସ୍ୱାମୀଙ୍କ ମା'ଙ୍କ ତୃତୀୟ ଜ୍ଞାତି ଭଉଣୀଙ୍କ ମାଉସୀଙ୍କ ସାବତ ପୁଅର ନାମ ମଧ୍ୟ ସେମାନେ ପଚାରିବେ । ବ୍ରାଡ୍‌ଫୋର୍ଡର ମୁସ୍ତାଫା ଦର୍‌ଙ୍କୁ ଏସବୁ ପ୍ରଶ୍ନ ସେମାନେ ପଚାରି ସାରିଛନ୍ତି ବୋଲି ତୁମେ ଧରିନିଅ । ତୁମେ ଯଦି ଗୋଟିଏ ବି ଭୁଲ୍ କର ତେବେ କଥା ସରିଲା ।

ରେହାନାର ଗମ୍ଭୀର 'ହଁ'ରୁ ସେ ତା ସ୍ୱରକୁ ସଂଯତ କରୁଥିବା କଥା ଅଲ୍ଲୀ ଜାଣିପାରିଲା । ଠିକ୍ ସେତିକିବେଳେ ମହମ୍ମଦ ଅଲ୍ଲୀର ଫୁସ୍ ଫୁସ୍ କଥା ଆହୁରି ରହସ୍ୟମୟ ଓ ଓଜନିଆ ହୋଇଗଲା । ସେ କହୁଥିଲା କନ୍‌ସୁଲେଟ୍‌ରେ କାମ କରୁଥିବା ଜଣେ ଲୋକ କିପରି କିଛି କମିଶନ୍ ବିନିମୟରେ ଆବଶ୍ୟକ ସବୁ ଦଲିଲ୍‌ରେ ମୋହର ଲଗାଇ ଦିଏ । ଏହିପରି ଭାବରେ ଅଲ୍ଲୀର ବ୍ୟବସାୟ ଲମ୍ଫି ଚାଲିଥିଲା ଏବଂ କନ୍‌ସୁଲେଟ୍‌କୁ ଆସୁଥିବା ମହିଳାମାନଙ୍କଠାରୁ ବେଶ୍ କିଛି ପାରିଶ୍ରମିକ ସେ ପାଉଥିଲା । ଶହଶହ ମାଇଲ୍ ଦୂରରୁ ଆସିଥିବା ଏହି ସ୍ତ୍ରୀ ଲୋକମାନଙ୍କୁ ଠକିବା ସହଜ ଥିଲା ବେଳେ ସେମାନେ ଠକାମିରେ ପଡ଼ିଥିବା ବିଷୟ ବିଳମ୍ବରେ ଜାଣୁଥିଲେ, କିନ୍ତୁ ସେତେବେଳକୁ ଆଉ କିଛି କରିବାର ସୁଯୋଗ ନଥିଲା । କଠିନ ଜୀବନକୁ ବୁଦ୍ଧି ବଳରେ ହିଁ ବଂଚୁଥିବା ବୃଦ୍ଧ ଅଲ୍ଲୀର ଏହି ସ୍ତ୍ରୀ ଲୋକମାନଙ୍କ ପ୍ରତି ସାମାନ୍ୟ ଅନୁକମ୍ପା ମଧ୍ୟ ନଥିଲା ।

କିନ୍ତୁ ପୁଣି ଥରେ ତା' ସ୍ୱର ତାକୁ ଠକିଦେଲା ଏବଂ ସେ ତା'ର ପାରମ୍ପରିକ ଭାଷଣ ପରିବର୍ତ୍ତେ ସବୁଠାରୁ ଗୋପନୀୟ କଥାଟି କହିବାକୁ ଆରମ୍ଭ କଲା 'ମିସେସ୍ ରେହାନା, ତୁମେ ଜଣେ ଅନନ୍ୟ ସାଧାରଣ ବ୍ୟକ୍ତି । ତୁମ ପାଇଁ ମୁଁ ଯାହା କରିପାରିବି ମୋ ଝିଅ ପାଇଁ ମଧ୍ୟ ତାହା କରି ପାରନ୍ତି । ମୋ ପାଖରେ ଏପରି ଗୋଟିଏ ଦଲିଲ୍ ଅଛି, ଯାହା ଏକାଥରକେ ତୁମର ସମସ୍ତ ସମସ୍ୟାର ସମାଧାନ କରିଦେବ ।'

ଏହି ମ୍ୟାଜିକ୍ ଦଲିଲ୍ କ'ଣ ହୋଇପାରେ ରେହାନା ଆଶ୍ଚର୍ଯ୍ୟ ହୋଇ ପଚାରିଲା । ଅଲ୍ଲୀ କହିଲା – ଏହା ଗୋଟିଏ ଅସଲି ବ୍ରିଟିଶ୍ ପାସ୍‌ପୋର୍ଟ । ରେହାନାର ଫଟୋ ଓ

ନାମ ଲେଖିଦେବା ପରେ ଏହି ପାଶ୍‌ପୋର୍ଟଟି ତାହାର ହୋଇଯିବ ଏବଂ ତା'ପରେ ତା'ର ଇଂଲଣ୍ଡ ଯିବାକୁ କିଏବା ଅଟକାଇ ପାରିବ ?

ସତ କଥାଟିକୁ ତ ଅଲ୍ଲୀ କହିଦେଇଥିଲା । ସେ ଏହା ମଧ୍ୟ ଜାଣିଥିଲା ଯେ ପାସ୍‌ପୋର୍ଟଟିକୁ ମାଗଣାରେ ରେହାନାକୁ ଦେବା ପରେ ସେ ବର୍ଷେକାଳ ଅନୁତାପ କରିବ । ନିଜକୁ ନିଜେ ସେ କହିଲା, 'ସର୍ବାପେକ୍ଷା ବୃଦ୍ଧ ମୂର୍ଖମାନେ ସବୁଠାରୁ କମ୍ ବୟସର ଝିଅମାନଙ୍କ ଦ୍ୱାରା ବିମୋହିତ ହୋଇଥାଆନ୍ତି ।'

'ମୁଁ କ'ଣ ଜଣେ ଅପରାଧୀ ହୁଏ ବୋଲି ତୁମେ ପ୍ରସ୍ତାବ ଦେଉଛ ?' ରେହାନା ପଚାରିଲା ।

'ଜଟିଳ ଜିନିଷଟିକୁ ସହଜ କରିଦେବା ଅପରାଧ ବୋଲି ମୁଁ ଭାବେ ନାହିଁ', ଅଲ୍ଲୀ କହିଲା ।

ବ୍ରାଡ୍‌ଫୋର୍ଡ ଲଣ୍ଡନକୁ ବେଆଇନ୍ ଭାବେ ଯାଇ କନ୍‌ସୁଲେଟର୍ ସାହେବମାନଙ୍କର ଆମ ସମ୍ପର୍କରେ ଯେଉଁ ନ୍ୟୁନମତ ରହିଛି ତାହାକୁ ପ୍ରମାଣ କରିବା ଯଦି ଉତ୍ତମ ପରାମର୍ଶ ବୋଲି ତୁମେ କୁହ, ତାହାକୁ ମୁଁ ଗ୍ରହଣ କରି ପାରୁ ନାହିଁ, ରେହାନା କହିଲା ।

ଖୁବ୍ ଦୁଃଖରେ ଅଲ୍ଲୀ ପୁଣି ତାକୁ ଠିକ୍ କରିଦେଇ କହିଲା, 'ବ୍ରାଡ୍‌ଫୋର୍ଡ୍, ଲଣ୍ଡନ ନୁହେଁ, ବ୍ରାଡ୍‌ଫୋର୍ଡ ଇଂଲଣ୍ଡ ।' ସେ କହି ଚାଲିଲା, 'ବିବି, ମୁଁ ଜଣେ ଗରିବ ଲୋକ । ତୁମର ଅସାଧାରଣ ସୌନ୍ଦର୍ଯ୍ୟ ପାଇଁ ମୁଁ ଏହି ସ୍ୱତନ୍ତ୍ର ଉପହାର ତୁମକୁ ଦେଉଛି । ତୁମେ ଯଦି ଏହାକୁ ନ ନେବ ତା'ହେଲେ ଇଂଲଣ୍ଡ କଥା ଭୁଲିଯାଇ ଘରକୁ ଫେରିଯାଇ ପାର, କିନ୍ତୁ ମୋ ଉପହାରକୁ ପାଦରେ ଠେଲିଦିଅ ନାହିଁ ।'

ରେହାନା କିନ୍ତୁ ଉଠିପଡ଼ି ଫାଟକ ଆଡ଼କୁ ଚାଲିବା ଆରମ୍ଭ କରିଦେଲା । ଫାଟକ ପାଖରେ ସେତେବେଳକୁ ସ୍ତ୍ରୀ ଲୋକମାନେ ଜମା ହେବାକୁ ଆରମ୍ଭ କରିଥିଲେ । 'ଏଥର ଫଳ ପାଉଥା । ହେଲେ ମୋ ବୋପାର କ'ଣ ଯାଉଛି ?' ଅଲ୍ଲୀ ବଡ଼ ପାଟିରେ କହିଲା । ରେହାନା କିନ୍ତୁ ପଛକୁ ଫେରି ଚାହିଁଲା ନାହିଁ । ପାନଦୋକାନୀ ସ୍ତ୍ରୀ ଲୋକଟି ଅଲ୍ଲୀର ଅବସ୍ଥା ଦେଖି ତାକୁ ଥଟ୍ଟା କରିବାକୁ ଛାଡ଼ିଲା ନାହିଁ ।

ସେଦିନ ମହମ୍ମଦ ଅଲ୍ଲୀ କନ୍‌ସୁଲେଟ୍ ଫାଟକ ପାଖରେ ଟହଲ ମାରିବା ଛଡ଼ା ଆଉ କିଛି କହିଲା ନାହିଁ । ଫାଟକ ବାହାରେ ରେହାନା ତା' ପାଇଁ ଅପେକ୍ଷା କରିଥିବାର ସେ ଦେଖିଲା । ତା'ର ଶାନ୍ତ ଓ ସନ୍ତୁଷ୍ଟ ଚେହେରାରୁ ଅଲ୍ଲୀ ଅନୁମାନ କଲା ବୋଧହୁଏ ସେ ତା'ର ନାମ ହାସଲ କରିନେଇଛି । ଗୋରା ସାହେବମାନେ ବୋଧହୁଏ ତା' ଆଖିର ମାୟାଜାଲରେ ବନ୍ଦୀ ହୋଇ ଯାଇଛନ୍ତି ଓ ସେ ଇଂଲଣ୍ଡ ଯିବା ପାଇଁ ଅନୁମତି ପାଇଯାଇଛି । ଆଶାନ୍ୱିତ ହୋଇ ଏବଂ ଈଷତ୍ ହସି ସେ ରେହାନା ଆଡ଼କୁ ଚାହିଁଲା । ରେହାନା ମୁହଁରେ ମଧ୍ୟ ଥିଲା ସ୍ୱାଭାବିକ ହସ ।

'ମିସ୍ ରେହାନା ବେଗମ୍, ତୁମର ବିଜୟ ଲଗ୍ନରେ ମୁଁ ତୁମକୁ ଅଭିନନ୍ଦନ ଜଣାଉଛି,' ଅଲ୍ଲୀ କହିଲା ।

ରେହାନାର ହାତ ନିଜ ଅଜାଣତରେ ଲମ୍ବି ଯାଇଥିଲା ଅଲ୍ଲୀର ହାତ ଆଡ଼କୁ । ପରାମର୍ଶ ପାଇଁ ସେ ଅଲ୍ଲୀକୁ କୃତଜ୍ଞତା ଜଣେଇବାକୁ ଚାହୁଁଥିଲା ଏବଂ ନିଜ ରୁକ୍ଷ ବ୍ୟବହାର ପାଇଁ କ୍ଷମା ମଧ୍ୟ ଚାହୁଁଥିଲା ।

କ୍ରମେ ଅପରାହ୍ନ ନଇଁ ଆସିଲା । ସେମାନେ ଫାଟକ ନିକଟ ଧୂଳି ପଡ଼ିଆରେ ଛିଡ଼ା ହୋଇ ବସ୍ ଛାଡ଼ିବାକୁ ଅପେକ୍ଷା କରୁଥିଲେ । କୁଲିମାନେ ବସ୍ ଛାତ ଉପରେ ଜିନିଷପତ୍ର ରଖୁଥାନ୍ତି । ଜଣେ ବୁଲାବିକାଳି ସବୁ ଦୁଃଖ ଦୂର କରୁଥିବା ପ୍ରେମ କାହାଣୀ ଓ ଚେରମୂଳ ଔଷଧ ବଡ଼ ପାଟିକରି ବିକ୍ରି କରୁଥାଏ । ମିସ୍ ରେହାନା ଓ ଉତ୍‌ଫୁଲ୍ଲିତ ମହମ୍ମଦ ଅଲ୍ଲୀ ବସ୍‌ର ସାମନା ମଡ଼ଗାର୍ଡ଼ ଉପରେ ବସି ପକୋଡ଼ି ଖାଉଥାନ୍ତି । ଦିନର ଉତ୍ତାପ କମି ଯାଇଥାଏ । ବୃଦ୍ଧ ପରାମର୍ଶ ବିଶେଷଜ୍ଞ ଗୁଣୁଗୁଣୁ ହୋଇ ଗୋଟିଏ ସିନେମା ଗୀତ ଗାଇବାକୁ ଆରମ୍ଭ କଲା ।

ହଠାତ୍ ମିସ୍ ରେହାନା କହିବାକୁ ଆରମ୍ଭ କଲା; 'ମୋ ବାପା ମା ମୋ ବିବାହ ସ୍ଥିର କଲାବେଳେ ମୋତେ ମାତ୍ର ନଅ ବର୍ଷ ହୋଇଥିଲା । ସେତେବେଳେ ମୁସ୍ତଫା ଦରଙ୍କୁ ତିରିଶ ବର୍ଷ, କିନ୍ତୁ ମୋ ବାପା ଏମିତି ଜଣେ ଲୋକ ଚାହୁଁଥିଲେ ଯେ ମୋର ଦାୟିତ୍ୱ ନେଇ ପାରିବ । ମୁସ୍ତାଫା ଜଣେ ମାତବର ଲୋକ ବୋଲି ମୋ ବାପାଙ୍କୁ ଜଣା ଥିଲା । କିଛିଦିନ ପରେ ମୋ ବାପା ମା'ଙ୍କ ଦେହାନ୍ତ ହୋଇଗଲା ଏବଂ ମୁସ୍ତାଫା ଦର ମଧ୍ୟ ଇଂଲଣ୍ଡକୁ ଚାଲିଗଲେ । ମୋତେ ସେଠାକୁ ନେଇଯିବେ ବୋଲି ସେ କଥା ଦେଇ ଯାଇଥିଲେ । ଏହା ଅନେକ ବର୍ଷ ତଳର କଥା ହେଲାଣି । ତାଙ୍କ ଫଟୋ ମୋ ନିକଟରେ ଅଛି । କିନ୍ତୁ ସେ ମୋ ପାଇଁ ସମ୍ପୂର୍ଣ୍ଣ ଅପରିଚିତ । ଫୋନ୍‌ରେ ତାଙ୍କର ସ୍ୱର ମଧ୍ୟ ମୁଁ ଚିହ୍ନିପାରେ ନାହିଁ ।'

ରେହାନାର ଏହି ସ୍ୱୀକାରୋକ୍ତି ଶୁଣି ମହମ୍ମଦ ଅଲ୍ଲୀ ଆଶ୍ଚର୍ଯ୍ୟ ହେଲା, 'କିନ୍ତୁ ଜଣେ ଜ୍ଞାନୀ ଲୋକ ହିଁ ବାଛିଥିଲେ ଯେ ତାଙ୍କ କଥା ରଖି ତୁମର ଇଂଲଣ୍ଡ ଯିବା ପାଇଁ ବ୍ୟବସ୍ଥା କରିଛନ୍ତି । ତାଙ୍କୁ ଜାଣିବା ଓ ଭଲ ପାଇବା ପାଇଁ ତୁମର ସାରା ଜୀବନ ରହିଛି,' ଅଲ୍ଲୀ କହିଲା ।

ଏହା ମଧ୍ୟରେ ଏକ ତିକ୍ତତା ରେହାନାର ହସକୁ ସଂକ୍ରମିତ କରିଥିଲା ଏବଂ ଏହା ଦେଖି ଅଲ୍ଲୀ ବିସ୍ମିତ ହେଲା ।

'କିନ୍ତୁ ତୁମେ ମୋ ଜିନିଷ ବନ୍ଧାବନ୍ଧି କରି ମୋତେ ଇଂଲଣ୍ଡକୁ ପଠାଇ ଦେବାର କାରଣ କ'ଣ ମୁଁ ଜାଣି ପାରୁନି,' ରେହାନା କହିଲା ।

ଅଲ୍ଲୀ ଚମକି ପଡ଼ିଲା । 'ତୁମେ ଏତେ ଖୁସି ଦେଖା ଯାଉଥିଲ — ତେଣୁ ମୁଁ ଭାବିନେଲି... ସେମାନେ କ'ଣ ତୁମ ଦରଖାସ୍ତ ନାମଂଜୁର କରିଦେଲେ ?'

'ମୁଁ ସେମାନଙ୍କର ପ୍ରଶ୍ନର ସବୁ ଭୁଲ୍ ଉତ୍ତର ଦେଲି । ସେମାନେ ଯାହା ପଚାରିଲେ ମୁଁ ସବୁ ଭୁଲ୍ ଓଲଟପାଲଟ କରି କହିଲି,' ରେହାନା କହିଲା ।

'କିନ୍ତୁ ବର୍ତ୍ତମାନ ତୁମେ କରିବ କ'ଣ ? ଯିବ କିପରି ?' ଅଲ୍ଲୀ ପଚାରିଲା ।

'ମୁଁ ବର୍ତ୍ତମାନ ଲାହୋର୍ ଓ ମୋ ଚାକିରିକୁ ଫେରିଯିବି । ଗୋଟିଏ ଖାନ୍‌ଦାନ୍ ଘରେ ତିନୋଟି ପିଲାଙ୍କ ଆୟା ଭାବରେ ମୁଁ କାମ କରେ । ମୁଁ ଚାଲି ଯାଇଥିଲେ ସେମାନେ ଭାରି ଦୁଃଖ କରିଥାନ୍ତେ ।'

'ଏହାଠାରୁ ବଳି ଦୁଃଖାନ୍ତକ ଆଉ କ'ଣ ହୋଇପାରେ ?' ମହମ୍ମଦ ଅଲ୍ଲୀ କହିଲା, 'ତୁମେ ମୋ ଉପଦେଶ ମାନିଥିଲେ ଏପରି କେବେ ହୋଇନଥାନ୍ତା । କିନ୍ତୁ ଏବେ ଆଉ କିଛି ଉପାୟ ନାହିଁ । ସବୁ ଗୋଳମାଳ ହୋଇଗଲା ।'

'ମୁଁ କିନ୍ତୁ ସେପରି ଭାବୁ ନାହିଁ । ତୁମେ ଦୁଃଖ କରିବ, ଏହା ମଧ୍ୟ ମୁଁ କଳ୍ପନା କରିପାରୁ ନାହିଁ,' ରେହାନା କହିଲା ।

ଫେରନ୍ତା ବସ୍‌ର ଧୂଳି ପଟଳ ମଧ୍ୟରେ ଅପସୃୟମାନ ରେହାନାର ଶେଷ ହସ ମହମ୍ମଦ ଅଲ୍ଲୀର ଦୀର୍ଘ, କଠିନ ଓ ସ୍ନେହଶୂନ୍ୟ ଜୀବନରେ ସେ ଦେଖିଥିବା ସବୁଠାରୁ ସୁଖକର ଜିନିଷ ଥିଲା ।

■■■

*ଅନୁବାଦ : **ଅରବିନ୍ଦ ବେହେରା***

# ଇନ୍ତିଜାର୍ ହୁସେନ୍

ଇନ୍ତିଜାର୍ ହୁସେନ୍ ସମ୍ମାନଜନକ ପ୍ରଥମ 'ଯାତ୍ରା' ପୁରସ୍କାର ଲାଭ କରିଥିବା ପାକିସ୍ତାନୀ ଲେଖକ । ଭାରତର ବୁଲନ୍ଦ ସହର ନିକଟସ୍ଥ ଦିବାଇଠାରେ ଜନ୍ମଲାଭ କରିଥିବା ଓ ମିରଟ୍‌ରେ ବିଦ୍ୟାଶିକ୍ଷା କରିଥିବା ଏହି ମହାନ୍ ଉର୍ଦ୍ଦୁ କଥାକାର ଧର୍ମନିରପେକ୍ଷତା ଓ ଧର୍ମୀୟ ସହନଶୀଳତାର ଏକ ଜୀବନ୍ତ ଉଦାହରଣ । ଥରେ ସାକ୍ଷାତକାରରେ ସେ କହିଥିଲେ – 'ମୁଁ ଜଣେ ମୁସଲ୍‌ମାନ୍, କିନ୍ତୁ ସବୁବେଳେ ମୁଁ ଅନୁଭବ କରେ ଯେ ମୋ ଭିତରେ ଜଣେ ହିନ୍ଦୁ ଆସ୍ଥାନ ମାଡ଼ି ବସିଛି ।' ତାଙ୍କ ମତରେ, ସେ ଜଣେ ନିର୍ବାସିତ ବ୍ୟକ୍ତି, ଯେ କି କାର୍ବାଲାଠାରୁ ଅଯୋଧ୍ୟା ଯାଏ ଘୂରି ବୁଲୁଛନ୍ତି ।

ହିନ୍ଦୁ ପୁରାଣ, ଜାତକ ଗଳ୍ପ, ସୁଫି ପ୍ରବାଦ, ଏସବୁ ହିଁ ତାଙ୍କ ଗଳ୍ପର ଭିତ୍ତିଭୂମି । ତାଙ୍କ ଗପରେ ମଣିଷ ଭଳି କଥା କହୁଥିବା ପଶୁପକ୍ଷୀ, ଅପ୍‌ସରା, ଯାଦୁକର ସମସ୍ତେ ଥାଆନ୍ତି । ତାଙ୍କ ଗଳ୍ପର ଭାରତୀୟ ଉତ୍ସ ଓ ପ୍ରଭାବ ସମ୍ପର୍କରେ ସେ କହନ୍ତି, 'ଆମେ ସମସ୍ତେ, ଭାରତୀୟ ଓ ପାକିସ୍ତାନୀ, ଗୋଟିଏ ସଂସ୍କୃତିରୁ ହିଁ ଜନ୍ମ ।' ବୌଦ୍ଧ ଧର୍ମ, ମହେଞ୍ଜୋଦାରୋ, ତାଜ୍‌ମହଲ, ଅମିରଖୁସ୍ରୁ, ଦାରାସିକୋ, ନିଜାମୁଦ୍ଦିନ୍, ଆବୁଲ୍ ଫାଜଲ୍– ଏସବୁ ଆମ ଉପମହାଦେଶର ବହୁ ବାର୍ଣ୍ଣିକ ସଂସ୍କୃତି । ଭାରତ ବିଭାଜନ ଓ ସେ ସମୟରେ ସାମ୍ପ୍ରଦାୟିକ ବିଦ୍ୱେଷ ଇତିହାସର ସବୁଠୁଁ ଦୁଃଖଦ ଘଟଣା ବୋଲି ସେ ଭାବନ୍ତି । ଏହି ପୃଷ୍ଠଭୂମିରେ ଲିଖିତ ତାଙ୍କର ପ୍ରସିଦ୍ଧ ଉପନ୍ୟାସ 'ବସ୍ତି' ମଣିଷର ଦୁର୍ଭାଗ୍ୟ ଓ ବିଡ଼ମ୍ବନାର ଏକ କରୁଣ ଚିତ୍ର । ନିଜ ମାଟିରୁ ନିର୍ବାସିତ ହୋଇଥିବା ଜଣେ ମଣିଷର ଯାଯାବର ଜୀବନର ଦୁଃଖଦ ଅଶ୍ରୁଳ ଅନୁଭୂତି ହିଁ ହୁସେନ୍‌ଙ୍କ ଗାଳ୍ପିକ ଚେତନାର ଏକ ମୁଖ୍ୟ

ଆବେଗ । ମଣିଷ ପାଇଁ ଏକ ଲୋଭନୀୟ କାଳ୍ପନିକ ବିଶ୍ୱଟିଏ ଖୋଜିବାର ଶେଷହୀନ ପ୍ରଚେଷ୍ଟା ହିଁ ହୁସେନ୍‌ଙ୍କ ସାହିତ୍ୟର ମୂଳକଥା ।

ଏଯାବତ୍ ତାଙ୍କର ଅଳ୍ପ କିଛି ଭ୍ରମଣ କାହାଣୀ, ଗୋଟିଏ ପ୍ରବନ୍ଧ ସଂକଳନ ଓ ଆଠଟି ଗଳ୍ପ ସଂକଳନ ପ୍ରକାଶିତ ହୋଇଛି । ପତ୍ର ଓ ଅନ୍ୟାନ୍ୟ ଗଳ୍ପ ତାଙ୍କର ଏକ ବହୁ ଆଦୃତ ଗଳ୍ପ ସଂକଳନ । ଏହି ସଂକଳନରେ ଥିବା 'ମ୍ୟାନ୍ ଏଣ୍ଡ ଓମ୍ୟାନ୍' ଗଳ୍ପର ଓଡ଼ିଆ ରୂପାୟନ – 'ପୁରୁଷ ଓ ନାରୀ' ।

# ପୁରୁଷ ଓ ନାରୀ

ଠାକୁରାଣୀ ତା'ର ପ୍ରାର୍ଥନା ଶୁଣିଲେ ବୋଲି ମଦନସୁନ୍ଦରୀ ଖୁସି ଥିଲା । ଅନ୍ୟଥା ସେ ତା'ର ଭାଇ ଓ ସ୍ୱାମୀକୁ ହରାଇ ଥାଆନ୍ତା । ଭାଇ ତା'ର ଗଲାବେଳେ ମଦନସୁନ୍ଦରୀ ତା' ପାଇଁ ଅଜସ୍ର କଲ୍ୟାଣ କାମନା କରିଥିଲା । ସେ ମଧ ଆସ୍ତେ ତା' ମଥାରେ ହାତ ରଖିଲା ଏବଂ ବିଦାୟ ନେବା ଆଗରୁ ଆଶୀର୍ବାଦ କରିଗଲା ।

ଗୋପୀ ଗଲା ପରେ ମଦନସୁନ୍ଦରୀ ଠାକୁରାଣୀର ପ୍ରଶଂସା ଗାଉଥିଲା । ଧୱ୍ୱଳ ଥିଲା ତା' ସାଥିରେ । ଉଭୟେ ଭାବୁଥିଲା – 'ମାଆ'ର ଅନୁଗ୍ରହ ଓ ଗାରିମା ଏତେ ଯେ ବ୍ରହ୍ମା, ବିଷ୍ଣୁ ଓ ଇନ୍ଦ୍ର ଭକ୍ତିରେ ପଦସେବା କରିବାକୁ ପଛେଇବେ ନାହିଁ । ଭକ୍ତର ବିପତ୍ତି ବେଳେ ପ୍ରତିବଦଳରେ ଅନୁଗତ ଭକ୍ତକୁ ସାହା ହେବାରେ ଠାକୁରାଣୀ କେବେ ପଛେଇ ନାହିଁ ।

ଗପି ଗପି ଦିନ କାଟି ଦେଲେ ମଦନସୁନ୍ଦରୀ ଓ ଧୱ୍ୱଳ୍ । ରାତି ଆସିଲା । ଦିନର ସେଇ ଆଶ୍ଚର୍ଯ୍ୟ ଅନୁଭୂତିରେ କ୍ଲାନ୍ତ ହୋଇ ମଦନସୁନ୍ଦରୀ ଧୱ୍ୱାଲ୍ ଶେଯରେ ଲୋଟିଗଲା । ପ୍ରାୟତଃ ହରାଇ ଦେଇଥିବା ପୁରୁଷକୁ ଆଉଥରେ ଫେରି ପାଇ ସେ ଇଛା କରୁଥିଲା ତା'ର ନିବିଡ଼ ସାନ୍ନିଧ । ସେଦିନର ସେ ବାହୁବେଷ୍ଟନୀ କିନ୍ତୁ ସୁଖକର ନଥିଲା । ତା'ର ଏକ ଅଦ୍ଭୁତ ଅନୁଭବ ହେଲା ଯେ ତା' ଦେହକୁ ଲାଗି ରହିଥିବା ଦେହଟି ତା'ର ଅତିପରିଚିତ । ସେ ବିସ୍ମିତ ହେଲା । ଆଶ୍ଚର୍ଯ୍ୟ ହେଉଥିଲା ।

କ'ଣ ଏମିତି ଭିନ୍ନତା ଥିଲା ସେ ଦେହରେ ସେଦିନ ? ଭାବି ଦେଖିଲା, ସେ ଦେହକୁ ସେ ଅତି ନିବିଡ଼ ଭାବେ ଜାଣେ । ଆଗରୁ ପରସ୍ପରର ଯେତେବେଳେ ମିଳନ ହେଉଥିଲା, ଦେହରେ ଦେହ ଲୀନ ହୋଇ ଯାଉଥିଲା । ପରଜନ୍ମରେ ଜଣେ ଜଣକୁ ଜାଣିଥିଲା ବୋଲି ସେମାନେ ଭାବୁଥିଲେ । କେଡ଼େ ସ୍ୱଚ୍ଛନ୍ଦରେ ସେଇ ହାତ ଦୁଇଟି ତା'ର କେଶ ଓ ଉଷୁମ ଦେହକୁ ସ୍ପର୍ଶ କରୁଥିଲା, ସତେ ଯେମିତି ତାହା ଅନେକ କାଳରୁ ତା' ଦେହର ଗୋପନୀୟତାକୁ ଭେଦ କରି ସାରିଥିଲା । ସେ ହାତର ସ୍ପର୍ଶ କାମନାର ତରଙ୍ଗ ଖେଳାଉଥିଲା ଏବଂ ବାସନା ଜୀବନ୍ତ ହୋଇ ଆସୁଥିଲା; କିନ୍ତୁ ସେଦିନ ମନେ ହେଲା ଯେମିତି ସେ ଦୁଇଟି ଦେହ କେହି କାହାକୁ ଜାଣେ ନାହିଁ ଓ ସେଇ ଦୁଇଟି ହାତ ପ୍ରଥମ ଥର ପାଇଁ ତା' ଦେହକୁ ନିରାଭରଣ କରୁଛି ।

ମଦନସୁନ୍ଦରୀ ବିବ୍ରତ ହେଲା । ସବୁଦିନ ରାତିରେ ଯାହା ଦେହକୁ ଲାଗି ସେ ଶୋଇ ଯାଉଥିଲା, ଏ କ'ଣ ସେଇ ଦେହ ନୁହେଁ ? କାହିଁକି ସେ ଭାବୁଛି ଯେ ସେ ଏକ ଅପରିଚିତ ଦେହ ? ସନ୍ଦେହର ଅବସାନ ପାଇଁ ସେ ଚେଷ୍ଟା କରୁଥିଲା । ଭାବନାକୁ ନିୟନ୍ତ୍ରିତ କରିବାକୁ ଅନେକବେଳୁ ସେ ଚେଷ୍ଟା କରୁଥିଲା । ଆତ୍ମସ୍ଥ ହୋଇ ନପାରି ସେ ନିଜକୁ ମୁକ୍ତ କରିନେଲା ।

ହତବାକ୍ ହେଲା ଧୱଲ୍ । ସେ ବୁଝି ପାରିଲା ନାହିଁ ମଦନସୁନ୍ଦରୀକୁ କେଉଁ ଭାବନା ଗ୍ରାସ କରିଛି ।

'କ'ଣ ତୁ କହୁଛୁ ? ତୁ କ'ଣ କହିବାକୁ ଚାହୁଁ ଯେ ଏ ଦେହ ମୋର ନୁହେଁ ?'

'ନା, ଏ ଦେହ ତୁମର ନୁହଁ ।' ସେ ଥରେ କହିବା ଆରମ୍ଭ କଲେ ଚୁପ୍ ହୋଇ ରହିପାରେ ନାହିଁ ।

'ସଂଯତ ହୁଅ ସୁନ୍ଦରୀ ! ଏ ଦେହ ଯଦି ମୋର ନୁହେଁ ତେବେ କାହାର ?' ଉଠିପଡ଼ି ଧୱଲ୍ କହିଲା । ସେ ବତୀଟିକୁ ତେଜିଲା ଓ ଟେକିଧରି ସୁନ୍ଦରୀ ସାମ୍ନାରେ କହିଲା, 'ଦେଖ୍ । କହ, ଏ ଦେହ କ'ଣ ମୋର ନୁହଁ ?'

ବତୀର ଆଲୋକରେ ମଦନସୁନ୍ଦରୀ ଯେତେବେଳେ ତା'ର ସ୍ୱାମୀକୁ ଦେଖିଲା, ସେ ଲାଜେଇ ଗଲା ଏବଂ କହିଲା, 'ଇଏ ତ ତୁମ ଦେହ ।'

'ନିବିଡ଼ ଭାବେ ଦେଖ୍, ଆଉଥରେ ଯେମିତି ସନ୍ଦେହ ନ ଆସେ ! ଭଲ କରି ଦେଖ ।' ମଦନସୁନ୍ଦରୀ ସେ ଭୁଲ୍ କରିଛି ଏକଥା ତା'ରି ମୁହଁରୁ ଶୁଣିବା ପାଇଁ ଧୱାଲ୍ ଦୃଢ଼ପ୍ରତିଜ୍ଞ ଥିଲା ।

ମଦନସୁନ୍ଦରୀ ଦୋଷ ସ୍ୱୀକାର କରି କହିଲା, 'ହଁ, ଏ ତୁମ ଦେହ ।'

ଏକଥା କହୁ କହୁ ଧୱଲ୍‌ର ହାତ ଦୁଇଟି ଉପରେ ନିଘା ପଡ଼ିଲା । ପୁଣି ବିବ୍ରତ ହୋଇ ସେ ପଚାରିଲା, 'ହେଲେ ସେ ହାତ ଦି'ଟା ?'

'କାଇଁ ମୋ ହାତରେ କ'ଣ ଅଛି ?'

ମଦନସୁନ୍ଦରୀ ଧୱଲ୍ କଥାକୁ କାନ ନଦେଇ ଚାହିଁ ରହିଥିଲା ସେ ହାତ ଦୁଇଟି ଆଡ଼େ – 'ଧୱଲ୍ ! ସେ ହାତ ଦୁଇଟି ତମର ନୁହଁ ।'

ବିରକ୍ତ ହୋଇ ଧୱଲ୍ ପଚାରିଲା, 'ତେବେ କାହାର ଏ ହାତ ?'

'କାହାର ସେ ହାତ ?' ସେ କଥା ଜାଣିବାକୁ ସେ ବି ଚାହୁଁଥିଲା । ସେ ହାତ ଦୁଇଟା ତା'ର ଚିହ୍ନା ଚିହ୍ନା । ମାତ୍ର ତାହା ଧୱଲର ନୁହଁ । କାହାର ତେବେ ସେ ହାତ ?... ଠିକ୍ ଏତିକିବେଳେ ଗୋପୀର ପ୍ରତିଛବି ତା'ଆଗରେ ନାଚି ଉଠିଲା ।

'ସେ ହାତ ଦି'ଟା ଗୋପୀର !' ନିଜକୁ ସମ୍ଭାଳି ନ ପାରି ସେ ଏ କଥା କହିଲା । ବଡ଼ ବିବ୍ରତ ଓ ବିଚଳିତ ହୋଇପଡ଼ିଲା ସେ । ମୁହଁ ଝାଉଁଳି ପଡ଼ିଲା । ମନେ ହେଲା, ତା ଦେହରେ ଟୋପାଏ ହେଲେ ବି ରକ୍ତ ନାହିଁ । କିଛି ଗୋଟାଏ ଚରମ ତ୍ରୁଟି କରିଛି ବୋଲି ଭାବି ସେ କହିଲା, 'ସ୍ୱାମୀ ! ମୁଁ ଭୁଲ୍ କରିଛି ।'

'ଭୁଲ୍ ! କେଉଁ ଭୁଲ୍ ?'

'ମସ୍ତବଡ଼ ଭୁଲ୍ !'

'କେଉଁ ଭୁଲ୍ ?'

'ଦେହ ଓ ମୁଣ୍ଡକୁ ଭୁଲ୍‌ରେ ଯୋଡ଼ି ଦେଇଛି ।'

'ଦେହ ମୁଣ୍ଡକୁ ଯୋଡ଼ି ଦେଇଛୁ !' ଧୱଲ୍ ବିସ୍ମିତ ହୋଇ ପଚାରିଲା । 'ଆରେ ! ହତଭାଗିନୀ ! ଆଜି ଏମିତି ଅପକଥା କହୁଛୁ କାହିଁକି ?'

ମଦନସୁନ୍ଦରୀର ଆଖି ଲୁହରେ ଛଳଛଳ ହୋଇ ଉଠିଲା । 'ସ୍ୱାମୀ ! ମୋତେ ଅଭାଗିନୀ କହୁଚ ? ସତରେ ମୋ ଭଳି ହତଭାଗିନୀ ଆଉ କେହି ନାହିଁ । ଗୋଟିଏ ସଙ୍କଟରୁ ସିନା ପାରିହୋଇ ଯାଇଥିଲି, ଆଉ ଏକ ସଙ୍କଟରେ ପଡ଼ିଛି । ଯେଉଁ ଆଖି ମୋର ଦେଖିଥିଲା, ମୋ ସ୍ୱାମୀ ଓ ମୋ ଭାଇର ମୁଣ୍ଡ କିପରି ଗଣ୍ଡିରୁ ଅଲଗା ହୋଇ ପଡ଼ିବାର; ଏମିତି ଓଲଟପାଲଟ ମୁଣ୍ଡ ଗଣ୍ଡି ଦେଖିବା ଆଗରୁ ସେ ଆଖି ଫୁଟିଗଲା ନାହିଁ କାହିଁକି ? ଏମିତି ଓଲଟପାଲଟ କରିଥିବା ମୋର ଏ ମୁଣ୍ଡ ଫାଟିଯାଉ ନାହିଁ କାହିଁକି ?'

ଧୱାଲ୍ ହତଚକିତ ହୋଇଗଲା । ସେ ମନେକଲା, 'ମଦନସୁନ୍ଦରୀ ଆଉ ପାଗଳୀ ହୋଇଯାଇ ନାହିଁ ତ !' ମଦନସୁନ୍ଦରୀକି ସେ କହିଲା, 'ଦେଖ୍ ଏଇଟା ମୋ ମୁଣ୍ଡ । କଟି ଯାଇଥିଲା ନା ? ମନେ ହେଉଛି ତୋର ଯେମିତି ମୁଣ୍ଡ ନାହିଁ । ଏଥର ମୋତେ କହ, ପରିଷ୍କାର କରି କହ, କ'ଣ ଘଟିଛି । ନହେଲେ ମୁଁ ଭାବିବି ତୁ ପାଗଳୀ ହୋଇ ଗଲୁଣି ।'

'ନା, ମୁଁ ପାଗଳୀ ହୋଇ ନାହିଁ । କ'ଣ ହେଲାକି...' ଏତକ ସେ କହିଲା ବେଳେ ସାରା ଘଣଣାଟା ତା' ଆଖି ଆଗରେ ଝଲଝଲ ଦିଶିଗଲା –

ରକ୍ତ ଜର୍ଜରିତ ଗୋପୀ ଓ ଧୱାଲ୍‌ର ଗଣ୍ଡି ଦୁଇଟା ପଡ଼ି ରହିଛି... ଗାଁ ମନ୍ଦିର ଠାକୁରାଣୀ ମୂର୍ତ୍ତି ଆଗରେ... । ମୁଣ୍ଡ କଟି ଅଲଗା ପଡ଼ିଛି । ମଦନସୁନ୍ଦରୀ ସ୍ତମ୍ଭୀଭୂତ ହୋଇପଡ଼ିଲା... ଉଦ୍‌ବିଗ୍ନ ହୋଇ ପଡ଼ିଲା । ବୁଝି ପାରିଲା ନାହିଁ କ'ଣ ଘଟି ଯାଇଛି । ଛାତି ବାଡ଼େଇ ମୁହଁ ରାମ୍ପୁଡ଼ି ପ୍ରଳାପ କଲା । ଆଖିରୁ ବହିଗଲା ଧାର ଧାର ଲୁହ । ରକ୍ତ ରଂଜିତ ଖଣ୍ଡାଟି ଉପରେ ହଠାତ୍ ତା'ର ଆଖି ପଡ଼ିଲା । ତାକୁ ଦେଖି, ନିଜକୁ ନିଜେ କହିଲା, 'ମୁଁ ଟା ହୀନୀକପାଳୀ' । ସ୍ୱାମୀ ହରେଇଛି... ପ୍ରିୟ ଭାଇକୁ ହରେଇଛି । ଅଲକ୍ଷଣୀ ଜୀବନ ନେଇ ଜୀଇଁବି କାହିଁକି ? ସେଇ ଖଣ୍ଡାଟାରେ ମୋ ମୁଣ୍ଡକୁ କାଟି ଦେଇ ଠାକୁରାଣୀ ପାଖରେ ବଳି ଚଢ଼େଇ ଦେବି ।' ଖଣ୍ଡାଟାକୁ ଉଠେଇ ଆଣି ବେକକୁ ଚୋଟ ଦେବାକୁ ଯାଉ ଯାଉ, ଠାକୁରାଣୀ ମୂର୍ତ୍ତି ଭିତରୁ କିଏ ଯେମିତି କହିଲା, 'ଆଲୋ ! ସେ ଖଣ୍ଡାଟାକୁ ଫୋପାଡ଼ି ଦେଏ । ତୁ ଆଜି ପ୍ରମାଣ କରିଦେଲୁ ଯେ ତୁ ପତି ସୋହାଗିନୀ ଓ ସୁନାନାକୀ ଭଉଣୀଟିଏ । ମୁଁ ତୋ ଉପରେ ଖୁବ୍ ଖୁସି । ତୋ ସ୍ୱାମୀ ଓ ଭାଇକୁ ଆଉ ଥରେ ଜୀବନ ଦାନ କରିବି । ସେମାନଙ୍କ ମୁଣ୍ଡ ଓ ଗଣ୍ଡିକୁ ଯୋଡ଼ି ଦେଏ । ସେମାନେ ଜୀଇଁ ଉଠିବେ ।'

ଏ କଥା ଶୁଣି ମଦନସୁନ୍ଦରୀ ଉଲ୍ଲସିତ ହୋଇ ଉଠିଲା । ବିହ୍ୱଳତାରେ ଆତ୍ମହରା ହୋଇ ପଡ଼ିଲା । କିଛିକ୍ଷଣ ଆଗରୁ ତା' ମନରେ କିଛି ଦୁଃଖ ଥିଲା, ଏବେ ସେ ଆନନ୍ଦରେ ଅଧୀର ।

'ସ୍ୱାମୀ ! ସତରେ ମୁଁ ମୋର ଚେତନା ହରେଇ ବସିଥିଲି । ମୁଁ ଏତେ ବିହ୍ୱଳିତ ହୋଇ ଯାଇଥିଲି ଯେ ମୁଁ ତୁମ ମୁଣ୍ଡଟିକୁ ମୋ ଭାଇର ଗଣ୍ଡିରେ ଏବଂ ଭାଇର ମୁଣ୍ଡକୁ ତୁମ ଗଣ୍ଡିରେ ଯୋଡ଼ି ଦେଇଥିଲି । ମୁଁ କ'ଣ କରିଛି ବୋଲି ଯେତେବେଳେ ଜାଣିପାରିଲି, ମଥା କୋଡ଼ି କାନ୍ଦିଲି – 'ଏ ମୁଁ କ'ଣ କଲି ! କରିଥିବା ଭୁଲ୍‌କୁ ସଂଶୋଧନ କରିବାକୁ ଯାଉ ଯାଉ ବିଧିର ବିଧାନ ଯାହା ହିଁ ଥିଲା ତାହାହିଁ ଘଟିଲା । ଠିକ୍ ମୁଣ୍ଡ ସାଙ୍ଗେ ଠିକ୍ ଗଣ୍ଡି ଯୋଡ଼ିବା ଆଗରୁ ତୁମେ ଦୁହେଁ ଜୀବନ ପାଇ ସାରିଥିଲ । ଯେତେବେଳେ ଦୁହିଁଙ୍କୁ ଜୀବିତ ଦେଖିଲି, ଏତେ ଆନନ୍ଦାଭିଭୂତ ହୋଇଗଲି ଯେ କରିଥିବା ଭୁଲ୍‌କୁ ସମ୍ପୂର୍ଣ୍ଣ ପାଶୋରି ଗଲି । ଏବେ ସବୁ ମନେ ପଡ଼ିଯାଉଛି... ବୁଦ୍ଧି ଦିଶୁନାହିଁ । ଜାଣି ପାରୁ ନାହିଁ କେମିତି ମୋ ଭାଇକୁ ମୋ ସ୍ୱାମୀଠାରୁ ଅଲଗା ଦେଖିବି ।'

କଥାଟାକୁ ଟିକେ ହାଲ୍‌କା କରିଦେବା ପାଇଁ ଧୱଳ୍ କହିଲା, 'ବାଃ ! ଏବେ ତୁ ତୋ ସ୍ୱାମୀ ଓ ଭାଇ ଭିତରେ ବ୍ୟବଧାନ ଆଉ ଦେଖିବୁ ନାହିଁ ।'

ଉତ୍କଣ୍ଠା ଓ ଦ୍ୱିଧାର ଦାରୁଣ ବ୍ୟଥା ନେଇ ମଦନସୁନ୍ଦରୀ କହିଲା, 'ମୁଁ ଜାଣେ ନାହିଁ ମୁଁ ତମର ସ୍ତ୍ରୀ ନା ଭଉଣୀ ।'

ଏକଥା ଶୁଣି ଧୱଳ୍ ମନରେ ଦ୍ୱନ୍ଦ୍ୱ ଦେଖାଦେଲା । ସମସ୍ୟାଟିକୁ ସେ ବୁଝିଗଲା । ସମାଧାନର ସୂତ୍ରଟିଏ ପାଇଯାଇ ସେ କହିଲା, 'ଏ କଥାର ସମାଧାନ ଏତେ କଷ୍ଟ ନୁହଁ । ନଦୀ ଭିତରେ ଶ୍ରେଷ୍ଠ ଗଙ୍ଗା; ପର୍ବତ ମଧ୍ୟରେ ମହତ୍ ପର୍ବତ ସୁମେରୁ । ଠିକ୍ ସେମିତି ଶରୀରର ଶ୍ରେଷ୍ଠ ଅଙ୍ଗ ମସ୍ତକ । ଆଉ ସବୁ ଅଙ୍ଗପ୍ରତ୍ୟଙ୍ଗ ପରିବର୍ତ୍ତନଶୀଳ । ମସ୍ତକ ମଣିଷକୁ ଚିହ୍ନେଇ ଦିଏ । ମୋର ଏ ଦେହ ପାଇଁ ବିବ୍ରତ ହେବାର କାରଣ କିଛି ନାହିଁ । ମୋ ମସ୍ତକକୁ ଦେଖ୍ । ଏଇଟା ମୋର ତ !'

ମଦନସୁନ୍ଦରୀ ଧୱଳ୍‌ର ଯୁକ୍ତିରେ ଆଶ୍ୱସ୍ତ ହେଲା । ଭାବିଲା, ଧୱଳ୍ ଠିକ୍ କହୁଛି । ଦେହର ଆଖି ନାହିଁ, ନାମ ନାହିଁ କି ପାଟି ନାହିଁ । ଦେହର କିଛି ନାହିଁ । ଦେହ କେବଳ ଦେହ । ସେ ଧୱଳ୍‌ର ମସ୍ତକକୁ ଚାହିଁ ଆଉ ସବୁ ପାଶୋରିଗଲା ।

ଉଭୟେ ମନେକଲେ ଯେ ଅଳ୍ପକ୍ଷଣର ଅପ୍ରୀତିକର ମୁହୂର୍ତ୍ତଟି ପରେ ସେମାନେ ଏବେ ପରସ୍ପରର ନିକଟତର ହୋଇପାରିଛନ୍ତି । ଉଭୟେ ପରସ୍ପରକୁ ଏତେ ନିବିଡ଼ଭାବେ କୋଳାଗ୍ରତ କଲେ ଯେ ସତେ ଯେମିତି ଦୁଇଟି ଦେହ ଏକାକାର ହୋଇଯିବ । ଧୱଳ୍‌ର ହାତ ମନଦସୁନ୍ଦରୀ ଦେହକୁ ଛୁଇଁବାକ୍ଷଣି ଆଉଥରେ ସୁନ୍ଦରୀର ମନ ଆନ୍ଦୋଳିତ ହେଲା । ତା' ଦେହ କମ୍ପିତ ହେଲା ଓ ଧୱଳର ବାହୁବେଷ୍ଟନୀରୁ ସେ ଆପଣାକୁ ଖସେଇ ନେଲା ।

'ସୁନ୍ଦରୀ, ଏବେ ପୁଣି କ'ଣ ହେଲା ?'

'ଲାଜ ଲାଗୁଛି ।'

'ନା, ସ୍ୱାମୀ ପାଖରେ ନୁହେଁ ।'

'ତେବେ କାହା ପାଖରେ ?'

ଇତଃସ୍ତତଃ ହୋଇ ସେ କହିଲା – 'ସେଇ ଦେହଟା ପାଖରେ...'

ଅତି ବିରକ୍ତ ହୋଇ ଧଓ୍ୱଲ୍ କହିଲା, 'ଆରେ ପ୍ରିୟତମା ! ତୁ କ'ଣ ଚାହୁଁ ମୋ ମୁଣ୍ଡଟା ଆଉ ଥରେ ଶରୀରରୁ ଛିନ୍ନ ହୋଇଯାଉ ? ଭାବିବାକୁ ଚେଷ୍ଟା କର – ଶରୀର ମସ୍ତକର... ଏ ମୁଣ୍ଡ ଯେତେବେଳେ ମୋର, ଏ ଦେହ ବି ମୋର ।

ଧଓ୍ୱଲର ମୁଣ୍ଡ ଯେ ତା' ଦେହରୁ ଅଲଗା ହୋଇଯିବ, ଏ କଥା ମଦନସୁନ୍ଦରୀକୁ ବିବ୍ରତ କଲା । ସେଇ ଭୟାର୍ତ୍ତ ଦୃଶ୍ୟଟି ଆଉଥରେ ତା' ଆଖି ଆଗରେ ନାଚି ଉଠିଲା । ସେ ଦେଖିଲା ମୁଣ୍ଡ ଦୁଇଟା ପରସ୍ପର ଦେହରୁ ଅଲଗା ହୋଇଯାଉଛି ।

'ନା ନା ସେକଥା ଆଉ କୁହନା', ସେ ବିଚଳିତ ହେଲା । ମାତ୍ର ଦ୍ୱନ୍ଦ୍ୱ ଅପସାରଣ ପାଇଁ ଦେହ ଓ ମୁଣ୍ଡକୁ ଏକ ବୋଲି ଗ୍ରହଣ କରିନେଲା ।

'ଦେହ ଓ ମୁଣ୍ଡ ଅଭିନ୍ନ' – ମଦନସୁନ୍ଦରୀ ଏଇ ସିଦ୍ଧାନ୍ତ ନେଉଥିବା ମୁହୂର୍ତ୍ତରେ ଧଓ୍ୱଲ୍ ମନକୁ ଦ୍ୱନ୍ଦ୍ୱ ଆସିଲା । ସେ ତନ୍ନ ତନ୍ନ କରି ଆପଣାର ଦେହକୁ ପରଖିଲା ଓ କହିଲା, 'ହେ ରାମ, ଏ ଦେହଟା କ'ଣ ସତରେ ମୋର ? ମୁଁ କ'ଣ ସତରେ ମୋର ? ଆଉ କିଏ କ'ଣ ମୋ ସାଥିରେ ଯୋଡ଼ି ହୋଇ ଯାଇଛି ? ମୁଁ ତେବେ କ'ଣ ଅନ୍ୟ କାହାର ଭଗ୍ନାଂଶ ? ମୁଁ ପରିପୂର୍ଣ୍ଣ ନୁହଁ । କେବଳ ଅର୍ଦ୍ଧେକ ଅଂଶ ମୋର । ଅପରାର୍ଦ୍ଧଟି ଆଉ କାହାର !'

ସନ୍ଦେହ ଆବର୍ତ୍ତ ଭିତରେ ହଜି ଯାଉଥିବା ବେଳେ ସେ ନିଜକୁ ବୋଧ ଦେଉଥିଲା । 'ନା, ନା ! ଏକଥା କ'ଣ ସମ୍ଭବ ? ବିଶ୍ୱାସ କରି ହେଉନି ଏ କଥା । ମଦନସୁନ୍ଦରୀକୁ ମୁଁ ବିଶ୍ୱାସ କରିବି କିପରି ? ତା'ର ତ ଚିନ୍ତା ବିଭ୍ରାଟ ଘଟିଛି । ଦୁଇଟି ଆପଣା ମଣିଷର ଛିନ୍ନ ମସ୍ତକର ଦୃଶ୍ୟ ଏବେ ବି ତାକୁ ବିବ୍ରତ କରୁଛି । ମୁଁ ବା କାହିଁକି ସେଇ ନିର୍ବୋଧ ଭାବନାରେ ନିଜକୁ ହଜେଇ ଦେବି ? କାହିଁକି ବା ବିଶ୍ୱାସ କରିବି ତା'ର ସେଇ ଅଦ୍ଭୁତ କାହାଣୀକୁ ?' ସେ ନିଜକୁ ଶାନ୍ତ ରଖି ଆତ୍ମସ୍ଥ ହେଲା । ଅଳ୍ପକ୍ଷଣ ପରେ ସନ୍ଦେହର ଆଉଥରେ ସୂତ୍ରପାତ ହେଲା – 'ଯେଉଁ ମଣିଷର ମୁଣ୍ଡ ଗଣ୍ଡିରୁ ଛିନ୍ନ ହୋଇ ଯାଇଥିଲା – ଆଉ ଥରେ ତା'ର ଜୀବନ୍ନ୍ୟାସ – ଏକଥା ଭାବିବା ଅବାସ୍ତବ ନୁହଁ କି ? ମୁଣ୍ଡ ଓ ଗଣ୍ଡିକୁ ଆଉଥରେ ଯୋଡ଼ି ଦେବା ଜଣକ ପକ୍ଷରେ ସମ୍ପୂର୍ଣ୍ଣ ଅସମ୍ଭବ ନିଶ୍ଚୟ ।'

ପୁନର୍ଜୀବନ ପାଇଲା ପରେ ସେଭଳି ଏକ ପରିସ୍ଥିତିର ସମ୍ଭାବନାକୁ ଅସ୍ୱୀକାର କରିବାରେ ଏହା ଥିଲା ପ୍ରଥମ ମୁହୂର୍ତ୍ତ । ସେଯାଏ ସେ ତାକୁ ସେମିତି ଗଭୀର ଭାବେ ଚିନ୍ତା କରି ନଥିଲା । ସେ ମନ୍ଦିର ଛାଡ଼ିଥିଲା, ସତେ ଯେମିତି କିଛି ଘଟି ନଥିଲା । ଏବେ ସେ ବିବ୍ରତ । ସେ ଭାବୁଥିଲା – ମୋର ମନେ ଅଛି ଗୋଟିଏ ଖଣ୍ଡାରେ ମୁଁ

ମୋର ମୁଣ୍ଡକୁ କାଟି ଦେଇଥିଲି । ବୃନ୍ତଚ୍ୟୁତ ଶସ୍ୟ ଭଳି ମାଟି ଉପରେ ତାହା ଲୋଟି ଯାଇଥିଲା । କିଏ ତାକୁ ମୋ କାନ୍ଧ ଉପରେ ଥୋଇଲା ? ମୁଁ କେମିତି ଆଉଥରେ ଜୀବନ ପାଇଲି ? ମୁଁ ଉଠି ଠିଆ ହେଲି, ଝାଡ଼ିଝୁଡ଼ି ହୋଇ ପଦାକୁ ଆସିଲି... କିଛି ଯେମିତି ଘଟି ନଥିଲା । ଆଶ୍ଚର୍ଯ୍ୟ ହୋଇଗଲି ।'

ବାଷ୍ପରୁଦ୍ଧ ହୋଇ ସେ ଅନେକ ସମୟ ଠିଆ ହୋଇ ରହିଲା । ମୁହୂର୍ତ୍ତକ ପରେ ତା'ର ମନେ ପଡ଼ିଲା ଯେ ମଦନସୁନ୍ଦରୀ ଠାକୁରାଣୀକୁ ନେହୁରା ହେଉଥିଲା ସାହା ହେବାକୁ ଏବଂ ଠାକୁରାଣୀ ସମର୍ଥ ବି ଥିଲା ଅଲୌକିକ ଘଟଣା ଘଟାଇବା ପାଇଁ । ସେ ଭାବିଲା, ଠାକୁରାଣୀ ଯଦି ଗୋଟିଏ ଅଲୌକିକ ଘଟଣା ଘଟାଇ ପାରିଛି, ସେ ଆଉ ଗୋଟିଏ ଅଲୌକିକ ଘଟଣା ଘଟାଇ ପାରିବ । ଏଇ ଭାବନା ତାକୁ ପ୍ରଥମେ ଆହ୍ଲାଦିତ କଲା ଏବଂ ପରେ ପରେ ସଂଶୟର କୁହେଳିକା ଆଉ ଥରେ ଆଚ୍ଛନ୍ନ କରିଦେଲା । ସେ ନିଜକୁ ବୁଝେଇଲା – 'ସତରେ କ'ଣ ମୋ ମୁଣ୍ଡଟି ଆଉ କାହା ଦେହରେ ଯୋଡ଼ି ହୋଇ ଯାଇଛି ? ଏ କଥା ସମ୍ଭବ କେମିତି ?' ଦ୍ୱିଧା ଭିତରେ ସେ ନିଜକୁ ନିଜେ ବୁଝେଇଲା, 'ମୁଁ ଏକଥା ମାନିନେବି ନାହିଁ । କେମିତି ଏ କଥା ଘଟିଲା ?... ମଦନସୁନ୍ଦରୀ ତ କହୁଛି ଏକଥା ଘଟିଛି... ସେ ନିଜେ ହିଁ ପ୍ରତ୍ୟକ୍ଷ କରିଛି । ନିଜ ହାତରେ ମୁଣ୍ଡକୁ ଦେହ ସାଥିରେ ସେ ଯୋଡ଼ିଛି । ଠାକୁରାଣୀର କୃପାରୁ ଜୀବନ ମିଳିଲା... ମଦନସୁନ୍ଦରୀର ତ୍ରୁଟି ଯୋଗୁଁ ଦେହ ମୁଣ୍ଡ ବଦଳିଗଲା । ଠାକୁରାଣୀର ଅଲୌକିକତାକୁ କିଏ ବା ବୁଝିବ ? ଅଦ୍ଭୁତ ହେଲେ ବି ବିଧିର ବିଧାନ ଯାହା, ତାହା ହିଁ ଘଟେ । କେଡ଼େ ଆଶ୍ଚର୍ଯ୍ୟର କଥା ଯେ ମୋ ଦେହ ମୋର ନୁହେଁ ? ମୁଣ୍ଡଟା କେବଳ ମୋର, ଦେହଟା ଆଉ କାହାର ? ସବୁ କଥା କେଡ଼େ ଆଚମ୍ବିତ ଲାଗୁଛି ?' ଆଉଥରେ ସେ ଆପଣା ଶରୀରକୁ ପରଖିଲା । ପ୍ରତିଟି ଅଙ୍ଗକୁ ଦେଖି ସେ କହୁଥିଲା, 'ଏ ଦେହ ଆଉ କାହାର । ମୋ ସାଥିରେ ଯୋଡ଼ି ହୋଇ ଯାଇଛି ।'

ଏକ ଅସ୍ୱାଭାବିକ ପରିସ୍ଥିତିର ସମ୍ମୁଖୀନ ହୋଇ ଧଓ୍ୱଲ୍ ଦୀର୍ଘ ସମୟ ଯାଏ ଚିନ୍ତିତ ରହିଲା । ସମୟ ଅତିବାହିତ ହେବା ସଙ୍ଗେ ସଙ୍ଗେ ଚିନ୍ତା ପରିବର୍ତ୍ତିତ ହେଲା ବୈକଲ୍ୟରେ । ତା'ର ନିଜତ୍ୱ ବୋଲି କିଛି ନାହିଁ – ଏଇ ଭାବନା ଦୁଃଖ ଦେଲା ଅନେକ । ନିଜ ସମ୍ପର୍କରେ ସେ ଭାବିଲା । ନିଜ ଶରୀରକୁ ତନ୍ନ ତନ୍ନ କରି ଦେଖିଲା... । କିଛି ସମୟ ଅନ୍ତେ ପୁଣି ତା'ର ମନେ ହେଲା ଯେ ତା' ଠିକ୍ ବେକ ତଳକୁ ବର୍ଣ୍ଣିଳ ବ୍ରହ୍ମାଣ୍ଡଟିଏ ଅଛି; ମାତ୍ର ତା'ର ଅଦ୍ୱିତୀୟ ପୃଥିବୀଟିଏ ସେ ହଜେଇ ସାରିଛି । ଦୀର୍ଘଶ୍ୱାସ ପକେଇ ସେ ନିଜକୁ ନିଜେ କହିଲା, 'ଶାଖା ଅଗଠୁ ବି ମୁଁ ତୁଚ୍ଛ । ମୋର ଅବଶିଷ୍ଟ ନିଜତ୍ୱ ଅନ୍ୟର ଅଧୀନରେ । ଏଇ ମସ୍ତକଟି କେବଳ ମୋର... ଆଉ ସବୁ ଶରୀରାଂଶ ମୋର ନୁହଁ । ମୋର ଶରୀର ଦୀର୍ଘ ଓ ପ୍ରଶସ୍ତ ଥିଲା, କିନ୍ତୁ ତା'ର ଏଡ଼େ କ୍ଷୁଦ୍ର ଅଂଶଟି ମୋର ଅଧୀନ ଯେ ମନେ ହେଉଛି ମୋର ଯେମିତି ସ୍ଥିତି ନାହିଁ ।' ସେ ଦୁଃଖିତ ଓ ବିହ୍ୱଳିତ

ହୋଇ ପଡ଼ିଲା – 'ମୋର ଯଦି ସ୍ଥିତି ନାହିଁ, ତେବେ ମୋ ଭିତରେ କିଏ ବଞ୍ଚିଛି ?'

ମଦନସୁନ୍ଦରୀ ଯେତେବେଳେ ରାତିରେ ଆସିଲା ଏବଂ ତାକୁ ଆଲିଙ୍ଗନ କଲା, ସେ କହିଲା, 'ମୋତେ ଛୁଅଁ ନାହିଁ ସୁନ୍ଦରୀ, ଏ ଦେହ ମୋର ନୁହେଁ ।'

ମଦନସୁନ୍ଦରୀ ଚକିତ ହେଲା, ଅପମାନିତ ବି ହେଲା । ସେ ମନେକଲା, ଧୱଳ୍ ତାକୁ ପରିହାସ କରୁଛି । ନିଜକୁ ସଂଯତ ରଖି ସେ କହିଲା, 'ସ୍ୱାମୀ ! ଏ ଦେହ ତମ ଦେହ ନୁହେଁ... ଏକଥା ଆଉ କହିବାର ମାନେ କ'ଣ ?'

ଦୁଃଖରେ ଧୱଳ ଉତ୍ତର ଦେଲା, 'ସୁନ୍ଦରୀ, ଅନ୍ୟର ଦେହଟାରେ ମୋ ମୁଣ୍ଡ ଯେଉଁ ଦିନଠୁ ଯୋଡ଼ି ହୋଇଗଲା, ସେଇଦିନଠୁ ମୋ ନିଜର ବୋଲି କିଛି ନାହିଁ । ମନେ ହେଉଛି ମୁଁ ସ୍ଥିତିହୀନ ।'

'ନା ସ୍ୱାମୀ, ତମେ ଅଛ, ତମର ସ୍ଥିତି ଅଛି ।'

'ହେ ଭଗବାନ ! ମୁଁ କିଏ ? ଏ ମସ୍ତକ ମୋର... ମାତ୍ର ଆଉ ସବୁତକ... ।'

ଧୱଳ ବାକ୍ୟ ଶେଷ କରିବା ପୂର୍ବରୁ ମଦନସୁନ୍ଦରୀର ହାତ ବିଜୁଳି ଭଳି ତା' ମୁହଁକୁ ଆବୋରି ଧରିଲା । ସେ ଏତେ ଜୋର୍‌ରେ ତା' ପାଟିଟାକୁ ଚାପି ଧରିଲା ଯେ ଧୱଳ୍ ଅଣନିଃଶ୍ୱାସୀ ହୋଇପଡ଼ିଲା ।

ଅନେକବେଳଯାଏ କେହି କାହାକୁ କଥା କହିଲେ ନାହିଁ । ମନେ ହେଉଥିଲା, ଉଭୟେ ବାକ୍‌ଶକ୍ତି ହରାଇଛନ୍ତି ।

ପରେ ମଦନସୁନ୍ଦରୀ ପାଟି ଖୋଲି କହିଲା, 'ସ୍ୱାମୀ, ତୁମେ କହିଥିଲ, ନଦୀ ମଧ୍ୟରେ ପବିତ୍ରତମ ନଦୀ ହେଉଛି ଗଙ୍ଗା, ପର୍ବତ ମଧ୍ୟରେ ବିଶାଳ ପର୍ବତ ସୁମେରୁ । ତମେ କହିଥିଲ, ମସ୍ତକ ଶରୀରର ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ଏବଂ ଅବଶିଷ୍ଟ ଅଙ୍ଗର ପରିବର୍ତ୍ତନ କରାଯାଇପାରେ । ମଣିଷର ପରିଚୟ ହୁଏ ତା' ମସ୍ତକରୁ । ଦେହ ମସ୍ତକର ଅଧୀନ । ମୁଁ ଯେତେବେଳେ ତମ ମସ୍ତକକୁ ଦେଖେ, ମୁଁ ଜାଣେ ଅବଶିଷ୍ଟ ଶରୀର ତୁମର ଏବଂ ତୁମେ ହିଁ ମୋର ସ୍ୱାମୀ । ଏବେ ତୁମେ ତୁମ ନିଜ ତତ୍ତ୍ୱକୁ ଭୁଲି ଯାଉଛ ବୋଲି ଭାବୁଛି ।'

ଧୱଳ୍ ବିଚଳିତ ହୋଇପଡ଼ିଲା । ତା' ପାଖରେ ଆଉ କିଛି ଉତ୍ତର ନଥିଲା । ସେ ନିଜକୁ ହିଁ କହିଲା, 'ମଦନସୁନ୍ଦରୀ ହିଁ ଠିକ୍ କହୁଛି, ମୁଁ ତାକୁ କହିଥିଲି ବୋଲି ଭୁଲି ଯାଇଛି । ଯାହାହେଉ, ସେ ମୋତେ ମନେ ପକେଇ ଦେଇଛି । ମସ୍ତକ ଶରୀରର ଗୁରୁତ୍ୱପୂର୍ଣ୍ଣ ଅଂଶ – ଏ କଥାକୁ ମୋତେ ମାନିବାକୁ ହେବ । ଏ ମସ୍ତକ ଯେତେବେଳେ ମୋର, ତା' ତଳକୁ ଯାହା ଅଛି, ସେସବୁ ବି ମୋର... । ତାଳୁରୁ ତଳିପା ଯାଏ ହିଁ ମୋ ନିଜର ଅଂଶବିଶେଷ ।'

ଧୱଳ୍ ଏଇ ସିଦ୍ଧାନ୍ତକୁ ଦୀର୍ଘ ସମୟ ଯାଏ ମାନିନେଇ ପାରିଲା ନାହିଁ । ନିଜର ହୃଦ୍‌ବୋଧ ପାଇଁ ସେ ନିଜକୁ ଅନେକ ବୁଝେଇଲା; କିନ୍ତୁ ପୁନର୍ବାର ସନ୍ଦେହ କଲା ଯେ

ସେ ନିଜକୁ ହିଁ ଠକୁଛି । ସତେ ଯେମିତି ଗୋଟାଏ ସୂକ୍ଷ୍ମ ପରଦା ତା' ଆତ୍ମା ଭିତରେ ରହିଯାଇ ତାକୁ ଶାନ୍ତି ଦେଉ ନାହିଁ । 'ଏଇ ଦେହ ମୋ ଅଧୀନ ନୁହେଁ । ଏ ମସ୍ତକ ମୋର । ଏହି ଦେହ କେଉଁ ଅପରିଚିତର ।' ଘଟଣାଟି ଅବାସ୍ତବ ଓ ବ୍ୟର୍ଥକାରକ । ସେ ଅନୁଭବ କରୁଥିଲା, ସତରେ ତା'ର ସ୍ଥିତି ଅବାସ୍ତବ ଓ ଅସ୍ୱସ୍ତିକର ।

ରାତିରେ ମଦନସୁନ୍ଦରୀ ଯେତେବେଳେ ପ୍ରେମ ନିବେଦନ କରୁଥିଲା ସେ ଅତ୍ୟନ୍ତ ବିଚଳିତ ହୋଇ ପଡୁଥିଲା । ସେ ଆଶ୍ଚର୍ଯ୍ୟ ହେଉଥିଲା ଯେ ମଦନସୁନ୍ଦରୀ କାହା ଦେହକୁ କାମାଗ୍ରତ କରୁଛି ? ଅନେକ ଥର ପ୍ରବଳ ଇଚ୍ଛା ହେଉଥିଲା ଯେ ସେ ତା' ମସ୍ତକଟିକୁ ଦେହରୁ ବିଚ୍ଛିନ୍ନ କରି ଗୋପୀକୁ ତା' ଦେହଟି ଫେରେଇ ଦେଇ କହିବ, 'ନେ ତୋ' ଦେହକୁ ତୁ ନେଇ ମୋ ଦେହକୁ ମୋତେ ଫେରେଇ ଦେ ।' କିନ୍ତୁ ଯେଉଁ ଦେହଟି ଏବେ ତା' ପାଖରେ ଅଛି, କ୍ରମେ ତାହା ତା'ର ନିଜର ହୋଇଗଲାଣି । ସେ ଚିନ୍ତା କରି ପାରୁ ନାହିଁ ଯେ ସେ କେମିତି ନିଜକୁ ତହିଁରୁ ମୁକ୍ତ କରିବ । ତଥାପି ସେ ଭାବେ ଯେ ତା' ଦେହଟି ତା'ଠୁ ବିଚ୍ଛିନ୍ନ ହୋଇ ଯାଇଛି । ମନକୁ ଆସେ ସେଇ କାହାଣୀଟି । ଯହିଁରେ ନୃଶଂସ ରାକ୍ଷସଟିଏ ରାଜକୁମାରୀକୁ ବନ୍ଦୀ କରି ରଖିଥିଲା । ପାରିଧିକି ଯିବା ଆଗରୁ ସବୁଦିନ ସକାଳେ ରାଜକୁମାରୀ ମସ୍ତକ ଓ ପାଦ ତଳେ ଥିବା କାଠି ଦୁଇଟିକୁ ଓଲଟପାଲଟ କରିଯାଏ । ରାଜକୁମାରୀର ମସ୍ତକଟିକୁ ଛିନ୍ନ କରି ପେଟିରେ ସେ ଲୁଚେଇ ରଖେ । ଶେଯ ଉପରେ ଦିନସାରା ରାଜକୁମାରୀର ଦେହ ପଡ଼ି ରହିଥାଏ । ପେଟିରେ କଟାମସ୍ତକରୁ ଟୋପା ଟୋପା ରକ୍ତ ଝରୁଥାଏ । କୁହାଟ ମାରି ଫେରେ ରାକ୍ଷସ । ମସ୍ତକ ଓ ପାଦ ତଳେ ଥିବା କାଠି ଦୁଇଟିକୁ ପୁଣି ଉପରତଳ କରେ । ପେଟିରୁ କଟାମୁଣ୍ଡ କାଢ଼ି ଗଣ୍ଡିରେ ଯୋଡ଼ିଦିଏ । ରାଜକୁମାରୀ ଜୀବନ ପାଏ । ସବୁ ସକାଳେ ମୁଣ୍ଡ ଗଣ୍ଡି କଟି ଅଲଗା ହୁଏ, ସବୁ ସଂଜରେ ଏକାଠି ହୁଏ; କଷ୍ଟ ପାଏ ରାଜକୁମାରୀ । ଧୱଲ ମନେ କରେ ଯେ ତା' ଅପେକ୍ଷା ରାଜକୁମାରୀ ଅନ୍ତତଃ ଭଲରେ ଥାଏ, କାରଣ ଦେହ ଓ ମୁଣ୍ଡ ସବୁତକ ରାଜକୁମାରୀର... ।

ସମୟ ଅତିବାହିତ ହେଲା । ଧୱଲର ଦୁଃଖ ଘନୀଭୂତ ହେଲା ।

ମଦନସୁନ୍ଦରୀ ଭାବିଲା ସମୟ ସାଥିରେ ଧୱଲ୍ ଭୁଲିଯିବ ଘଟଣାବଳୀକୁ । ଦୁର୍ଭାଗ୍ୟକୁ ସମୟ ବିତିବା ସାଙ୍ଗକୁ ଧୱଲ୍‌ର ବ୍ୟଥା ବଢୁଥିଲା । ମଦନସୁନ୍ଦରୀକୁ ଦେଖିବା କ୍ଷଣି ବ୍ୟଗ୍ରତା ତା'ର ବଢ଼ି ଯାଉଥିଲା । ଦେଖୁ ଦେଖୁ ସେ ନିଜେ ନିଜକୁ କହୁଥିଲା, 'ମଦନସୁନ୍ଦରୀର ଦେହ ତା' ନିଜର, ସେ ମୋ ଭଳି ଅସମ୍ପୂର୍ଣ୍ଣ ନୁହେଁ । ମୋ ଶରୀରର ଗୋଟିଏ ଅଂଶ ମୋର ନୁହେଁ; ଅନ୍ୟର ।'

ସେ ଯେ ଆଉ ଜଣକର ଦେହରେ କଇମୀ ହୋଇଛି, ଏ କଥା ଭାବି ସେ ବାରମ୍ବାର ନିଜକୁ ପଚାରେ, 'ସେ କିଏ ? ମୁଁ କିଏ ? ଏ ଦେହ କାହାର ? ମଦନସୁନ୍ଦରୀ ସହ ମୋର ସମ୍ପର୍କ କ'ଣ ?'

ନିଜ ଦେହ ଓ ମସ୍ତକର ସମ୍ପର୍କ ବିଷୟରେ ସେ ଏତେ ସଂଶୟାଚ୍ଛନ୍ନ ରହୁଥିଲା ଯେ ମଦନସୁନ୍ଦରୀକୁ କିଭଳି ଆଦର କରିବ, ତା'ର ସିଦ୍ଧାନ୍ତ ନେଇ ପାରୁ ନଥିଲା। ପରିସ୍ଥିତି ଜଟିଳ ଓ ଦୁଃସାଧ୍ୟ ଥିଲା।

ସମୟ ବିତିଗଲା।

ଧଓ୍ୱଲ୍ ଦ୍ୱିଧାମୁକ୍ତ ହୋଇ ପାରିଲା ନାହିଁ। ଶେଷକୁ ମଦନସୁନ୍ଦରୀକୁ ନେଇ ସେ ସହର ଛାଡ଼ିଦେଲା। ଲକ୍ଷ୍ୟହୀନ ଭାବେ ଅରଣ୍ୟକୁ ଭ୍ରମଣ କଲା। ଦିନେ ସେ ଗୋଟିଏ ଜଙ୍ଗଲରେ ଋଷି ଦେବାନନ୍ଦଙ୍କୁ ଦେଖିଲା। ପାଦ ଛୁଇଁ, ଗୁହାରି କରି କହିଲା, 'ମହାରାଜ, ଆପଣ ମହାଜ୍ଞାନୀ। ପ୍ରକୃତିକୁ ଆପଣ ଜୟ କରିଛନ୍ତି। ଜୀବନର ବହୁ ସମସ୍ୟା ସମାଧାନ କରିଛନ୍ତି। ଅନୁଗ୍ରହ କରି ମୋର ସଂଶୟ ଦୂର କରନ୍ତୁ।'

ଋଷି ଦେବାନନ୍ଦ ସତର୍କତାର ସହ ଉଭୟଙ୍କୁ ଲକ୍ଷ୍ୟ କଲେ ଓ କହିଲେ, 'ଶିଷ୍ୟ! କ'ଣ ତମର ସମସ୍ୟା?'

'ହେ ଜ୍ଞାନୀ, ମୁଁ କିଏ? ଏହା ହିଁ ମୋର ସମସ୍ୟା। ମଦନସୁନ୍ଦରୀ କିଏ?' ଧଓ୍ୱଲ ଆମୂଳଚୂଳ ସବୁ ଘଟଣା ବର୍ଣ୍ଣନା କଲା।

ଋଷି ଦେବାନନ୍ଦ ଧଓ୍ୱଲ୍‌କୁ ଚାହିଁ କହିଲେ, 'ନିର୍ବୋଧ, କେଉଁଥି ପାଇଁ ତୋର ଏ ସଂଶୟ? ତୁ ଯାହା କହିଲୁ ସେଥିରେ ସବୁଠୁ ଗୁରୁତ୍ୱପୂର୍ଣ୍ଣ କଥା ହେଲା ଯେ ତୁ ଜଣେ ପୁରୁଷ ଓ ମଦନସୁନ୍ଦରୀ ଜଣେ ନାରୀ। ଯାଅ, ନିଜର କର୍ତ୍ତବ୍ୟ କର।'

ଧଓ୍ୱଲର ମନେହେଲା ଯେ ତା'ର ଦୃଷ୍ଟିକୁ ଆଚ୍ଛନ୍ନ କରି ରଖିଥିବା ପରଦାଟି ଅସ୍ତମିତ ହୋଇ ଯାଇଛି। ଋଷିଙ୍କର ପଦସ୍ପର୍ଶ କରି ଧଓ୍ୱଲ୍ ମଦନସୁନ୍ଦରୀର କଟୀରେ ହାତ ରଖି ପ୍ରସ୍ଥାନ କଲା।

ସଂଶୟାଚ୍ଛନ୍ନ ପରଦାଟି ଦୃଷ୍ଟପଥରୁ ହଟି ଯାଇଥିଲା। ଅରଣ୍ୟ ପଥରେ ଗଲାବେଳେ ଧଓ୍ୱଲ ମଦନସୁନ୍ଦରୀକୁ ବାରମ୍ବାର ଚାହୁଁଥିଲା; ଅନେକ ଯୁଗ ତଳେ ପ୍ରଜାପତି ଯେମିତି ଚାହୁଁଥିଲେ ଉଷାଙ୍କୁ। ଧଓ୍ୱଲ ଆଖିରେ କାମନାର ଅଧୀର ତରଙ୍ଗ ଦେଖି ମଦନସୁନ୍ଦରୀ ଉତ୍ତେଜିତ ହେଲା; ଠିକ୍ ଉଷା ଯେମିତି ଉତ୍ତେଜିତ ହୋଇଥିଲେ ପ୍ରଜାପତିଙ୍କ ଆଖିରେ କାମନାର ଉନ୍ମତ୍ତ ଉଚ୍ଛଳତାକୁ ଦେଖି। ଅଙ୍କୁରିତ କାମନାରେ ଦଗ୍‌ଧା ମଦନସୁନ୍ଦରୀ ଧାଇଁଲା, ଖୁବ୍ ଧାଇଁଲା ଏବଂ ପରିଶେଷରେ ନିଜକୁ ସମର୍ପିତ କଲା ଧଓ୍ୱଲ୍‌ର ନିବିଡ଼ ବାହୁବେଷ୍ଟନୀ ମଧ୍ୟରେ...।

■■■

*ଅନୁବାଦ* **ରବି ମାଝୀ**

# ଇସାବେଲ୍ ଆଲେଣ୍ଡେ

ଇସାବେଲ୍ ଆଲେଣ୍ଡେ ଲାଟିନ୍ ଆମେରିକୀୟ ସାହିତ୍ୟର ଜଣେ ସମ୍ମାନିତ ସ୍ରଷ୍ଟା । ଅଗଷ୍ଟ ୨, ୧୯୪୨ ମସିହାରେ ପେରୁର ଲିମାଠାରେ ତାଙ୍କର ଜନ୍ମ । ପିତା ଟମାସ୍ ଆଲେଣ୍ଡେ ଜଣେ କୂଟନୀତିଜ୍ଞ ଭାବେ ରହିଥିଲେ ପେରୁର ଚିଲ୍ଲି ଦୂତାବାସରେ । ତାଙ୍କୁ ମାତ୍ର ତିନିବର୍ଷ ବୟସ ବେଳେ ପିତାମାତାଙ୍କ ବିବାହ ବିଚ୍ଛେଦ ଘଟେ । ଏହାପରେ ଇସାବେଲ୍ ରହିଥିଲେ ମା'ଙ୍କ ପାଖରେ, ମାମୁ ଘରେ । ସେହିଠାରେ ପାଠପଢ଼ା ଆରମ୍ଭ । ମାମୁଘରେ ଥିଲାବେଳେ ମଧ୍ୟ ବଡ଼ବାପା ଓ ଧର୍ମପିତା ମାଲ୍‌ଭାଡୋର୍ ଆଲେଣ୍ଡଙ୍କ ସହ ତାଙ୍କ ସମ୍ପର୍କ ଥିଲା ଖୁବ୍ ସ୍ନେହପୂର୍ଣ୍ଣ । ମାତାଙ୍କ ଦ୍ୱିତୀୟ ବିବାହ ପରେ ୟୁରୋପ ଓ ମଧ୍ୟପ୍ରାଚ୍ୟର ବହୁ ଦେଶରେ ତାଙ୍କ ସମୟ କଟିଥିଲା । ପାଠପଢ଼ା ପରେ ଚିଲ୍ଲୀରେ ଥିବା ମିଳିତ ଜାତିସଂଘର ଏକ ସଂସ୍ଥାରେ ଚାକିରି କରିଥିଲେ । ତା'ପରେ ୧୯୬୪ରୁ ୧୯୭୩ ଭିତରେ ସେ ଥିଲେ ସାମ୍ବାଦିକ, ଟେଲିଭିଜନ୍ ରିପୋର୍ଟର, ନାରୀ ସ୍ୱାଧୀନତା ଓ ସୁରକ୍ଷା ଆନ୍ଦୋଳନର ଜଣେ ସକ୍ରିୟ କର୍ମୀ ଓ ଜଣେ ରାଜନୈତିକ ବ୍ୟାଖ୍ୟାକାର । ୧୯୭୦ ମସିହାରେ ବଡ଼ବାପା ସାଲାଭାଡୋର ଆଲେଣ୍ଡେ ଚିଲ୍ଲୀରେ ଗଠିତ ସମାଜବାଦୀ ସରକାରର ରାଷ୍ଟ୍ରପତି ହେବା ପରେ ୧୯୭୩ ମସିହାରେ ଏକ ସାମରିକ ବିଦ୍ରୋହରେ ରାଜ୍ୟଚ୍ୟୁତ ହୁଅନ୍ତି । ଚିଲ୍ଲୀରେ ସାମରିକ ଏକଛତ୍ରବାଦୀ ଶାସନ ପ୍ରତିଷ୍ଠା ପରେ ବହୁ ଲେଖକ, ବୁଦ୍ଧିଜୀବୀ, ବିପ୍ଳବୀ ଦେଶ ଛାଡ଼ି ବାହାରକୁ ଚାଲି ଯାଇଥିଲେ । ଏ ମଧ୍ୟରେ ୧୯୬୩ରେ ଇସାବେଲ୍‌ଙ୍କ ବିବାହ ସରିଥାଏ ଓ ସେ ଦୁଇଟି ସନ୍ତାନର ମା ହୋଇ ସାରିଥାନ୍ତି । ତାଙ୍କ ପରିବାର ସହ ସେ ଚିଲ୍ଲୀ ଛାଡ଼ି ରହିଲେ ଭେନେଜୁଆଲାର କାରାକାସ୍‌ଠାରେ ।

ଏଇଠି ଆରମ୍ଭ ହୁଏ ତାଙ୍କ ଲେଖକ ଜୀବନ । ପ୍ରଥମ ଉପନ୍ୟାସ 'ଦି ହାଉସ୍ ଅଫ୍ ସ୍ପିରିଟ୍ସ' ପ୍ରକାଶ ପାଏ ୧୯୮୨ରେ । ଏହି ଉପନ୍ୟାସଟି ଚିଲ୍ଲୀରେ ଗୁପ୍ତ ଭାବେ ଓ ସାରା ବିଶ୍ୱରେ ବିପୁଳ ବିକ୍ରି ହୋଇ ତାଙ୍କୁ ଜଣେ ଲେଖକର ଆନ୍ତର୍ଜାତିକ ମର୍ଯ୍ୟାଦା ଆଣି ଦେଇଥିଲା । ଏହା ମୂଳତଃ ଏକ ଆତ୍ମଜୀବନୀମୂଳକ ଉପନ୍ୟାସ । ରାଜନୀତିକ ବାସ୍ତବତା ଓ ଅତିବାସ୍ତବ କଳ୍ପନା ଉଭୟର ସମ୍ମିଶ୍ରଣ ଯାହାକି ସାହିତ୍ୟରେ କୁହୁକ ବାସ୍ତବବାଦ ବୋଲି ପରିଚିତ, ତାହାରି ପ୍ରୟୋଗରେ ହିଁ ଉପନ୍ୟାସଟି ରଚିତ । ଚିଲ୍ଲୀର ରାଜନୈତିକ ଇତିହାସ, ଏକଛତ୍ରବାଦ, ମାନବିକ ସ୍ୱାଧୀନତା– ଏହାହିଁ ଉପନ୍ୟାସର ପୃଷ୍ଠଭୂମି । ଏହି ପୃଷ୍ଠଭୂମି ଉପରେ ତାଙ୍କର ବ୍ୟକ୍ତିଗତ ଜୀବନ ଓ ଅନୁଭୂତି ରହିଛି ଉପନ୍ୟାସଟିରେ । ମାମୁ ଘରଟି ଥିଲା ତାଙ୍କ ପାଇଁ ମଣିଷ ଓ ଭୂତମାନଙ୍କର କୋଠୀ । 'ମୁଁ ଏମିତି ଏକ ଅଦ୍ଭୁତ ଘରେ ବଢ଼ିଥିଲି ଯାହା ଉଦାର ପ୍ରେତାତ୍ମାମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ରହିଥିଲା ... ଯାହା ସବୁ ଜୀବନରେ ମୁଁ ହରେଇଛି – ମୋ ଗାଁ, ପରିବାର, ମୋର ସବୁ ପ୍ରିୟବସ୍ତୁ, ମୋ ସ୍ମୃତି ଓ ସେ ସମସ୍ତେ ଯେଉଁମାନେ ଆଉ ମୋ ପାଖରେ ନାହାନ୍ତି – ଏସବୁକୁ ମୁଁ ପୁଣିଥରେ ଫେରାଇ ଆଣିବାକୁ ଚେଷ୍ଟା କରିଛି ।'

୧୯୮୪ରେ ପ୍ରକାଶ ପାଏ ଦ୍ୱିତୀୟ ଉପନ୍ୟାସ 'ଲଭ୍ ଆଣ୍ଡ ସାଡୋଜ୍' । ସାମରିକ ଏକଛତ୍ରବାଦ ଶାସନରେ ସଂଗଠିତ ହତ୍ୟା, କାରାବାସ ପୁଣି ଏହି ସମୟରେ ନିଖୋଜ ହୋଇଥିବା ଅଗଣିତ ମଣିଷଙ୍କର ଜୀବନଯନ୍ତ୍ରଣାକୁ ପୁଞ୍ଜି କରି ଲେଖା ହୋଇଛି ଏହି ଉପନ୍ୟାସଟି । ତୃତୀୟ ଉପନ୍ୟାସ 'ଇଭାଲୁନା' ପ୍ରକାଶ ପାଏ ୧୯୮୮ରେ । ଏଥିରେ ନାରୀଟିଏ (ଇଭା) କହିଥିବା ଅନେକ କାହାଣୀରେ ନିଜକୁ ହିଁ ଆବିଷ୍କାର କରିଛି । ୧୯୯୧ ମସିହାରେ ପ୍ରକାଶ ପାଥିବା ତାଙ୍କର 'ଦି ଷ୍ଟୋରିଜ୍ ଅଫ୍ ଇଭାଲୁନା' ଗଳ୍ପଗ୍ରନ୍ଥ ଅନ୍ତର୍ଗତ ଗୋଟିଏ ଗଳ୍ପର ଓଡ଼ିଆ ଭାଷାନ୍ତର – 'ପ୍ରତିଶୋଧ' ।

# ପ୍ରତିଶୋଧ

ଯେଉଁ ଉଜ୍ଜ୍ୱଳ ଦିବସରେ କାର୍ନିଭାଲ୍‌ର ରାଣୀ ଶୂନ୍ୟ ଡଲ୍‌ସେ ରୋଜା ଓରେଲ୍ଲାନୋ ମଲ୍ଲୀ ଫୁଲର ମୁକୁଟ ପିନ୍ଧିଲେ, ସେ ଦିନ ଅନ୍ୟ ପ୍ରତିଯୋଗୀମାନଙ୍କର ମା'ମାନେ ଆପତ୍ତି କଲେ ଯେ ପ୍ରତିଯୋଗିତାରେ କାରସାଦି ହୋଇଛି, ତାଙ୍କୁ ଉପାଧି ଦିଆଯାଇଛି କାରଣ ସେ ଥିଲେ ସାରା ଭୂଖଣ୍ଡଟିର ସର୍ବକ୍ଷମତାଶାଳୀ ବ୍ୟକ୍ତି ସିନେଟର୍ ଆନ୍‌ସେଲ୍ ମୋ ଓରେଲ୍ଲାନୋଙ୍କର କନ୍ୟା । ସେମାନେ ସ୍ୱୀକାର କରୁଥିଲେ ଝିଅଟିର ଲାଳିତ୍ୟ ଅଛି, ସୁନ୍ଦର ପିଆନୋ ବଜାଇପାରେ, ଅନ୍ୟମାନଙ୍କଠାରୁ ଭଲ ନାଚିପାରେ; କିନ୍ତୁ ପୁରସ୍କାର ଆଶାୟୀ ଅନ୍ୟ ଝିଅମାନେ ତା'ଠାରୁ ଆହୁରି ସୁନ୍ଦରୀ ଥିଲେ । ଅର୍ଗାଞ୍ଜା ପୋଷାକ ପିନ୍ଧି ମଞ୍ଚ ଉପରେ ଛିଡ଼ା ହୋଇ ହାତ ହଲାଇ ସମବେତ ଜନତାଙ୍କୁ ଅଭିବାଦନ ଜଣାଉଥିବା ବେଳେ ସେମାନେ ତାଙ୍କୁ ଦେଖୁଥିଲେ ଏବଂ ନିଃଶ୍ୱାସର ତାଳେ ତାଳେ ତାଙ୍କ ପ୍ରତି ଛାଡୁଥିଲେ ଅଭିଶାପର ନିଆଁ । କିଛି ମାସ ପରେ ଯେତେବେଳେ ଓରେଲ୍ଲାନୋଙ୍କ ପରିବାର ଉପରେ ଏକ ଦୁର୍ଯୋଗ ମାଡ଼ି ଆସି ମୃତ୍ୟୁ ଓ ଦୁର୍ବିପାକର ଏତେ ମଂଜି ବୁଣିଦେଲା ଯେ ପଚିଶି ବର୍ଷ କଟିଗଲା ସେ ସବୁର ଫଳମୂଳ ନିଃଶେଷ ହେବାକୁ, ସେତେବେଳେ କେତେକ ଘଟଣାଟି ପାଇଁ କେତେଜଣ ବିଶେଷ ଦୁଃଖ କରିନଥିଲେ ।

ଣାଣୀ ନିର୍ବାଚନରେ ସେହି ରାତ୍ରିରେ ସାନ୍ତା ଟେରେସାର ମେୟର୍ ନିବାସରେ ନୃତ୍ୟର ଆସର ଜମିଥିଲା, ମାଇଲ୍ ମାଇଲ୍ ଦୂରରୁ କେତେ କେତେ ଯୁବକ ଆସି ପହଞ୍ଚିଥିଲେ ସେଠି ଦେଖିବାକୁ ଡଲସେ ରୋଜାଙ୍କୁ । ସେ ଏତେ ପ୍ରଫୁଲ୍ଲିତା ଥିଲେ ଏବଂ ଏପରି ଲାସ୍ୟମୟୀ ନୃତ୍ୟ ପ୍ରଦର୍ଶନ କଲେ ଯେ ଦେଖଣାହାରୀଙ୍କ ମଧ୍ୟରୁ ଅନେକ ଜାଣିପାରିଲେ ନାହିଁ ଯେ ସତରେ ସେ ସୁନ୍ଦରୀ ଶ୍ରେଷ୍ଠ ନୁହଁନ୍ତି, ବରଂ ଘରକୁ ଫେରିଯାଇ କହି ବୁଲିଲେ ଯେ ତାଙ୍କ ମୁହଁ ପରି ମୁହଁ ସେମାନେ ଆଉ କେଉଁଠି ହେଲେ ଦେଖି ନାହାନ୍ତି । ଏମନ୍ତ ପ୍ରକାର ହକ୍‌ଦାର ନଥାଇ ମଧ୍ୟ ସେ ପାଇଗଲେ ସୁନ୍ଦରୀ ଶ୍ରେଷ୍ଠର ଖ୍ୟାତି, ଏପରିକି ପରବର୍ତ୍ତୀ କାଳର ଯୁକ୍ତି ଓ ମତାମତ ଏହାକୁ ଅପ୍ରମାଣିତ କରି ପାରିଲା ନାହିଁ । ତାଙ୍କର ଚିକ୍‌କଣ ନରମ ତ୍ୱକ୍, ତାଙ୍କର ସ୍ଫଟିକ୍-ସ୍ୱଚ୍ଛ ଚକ୍ଷୁର ଅତିରଞ୍ଜିତ ବର୍ଣ୍ଣନା ତୁଣ୍ଡରୁ ତୁଣ୍ଡ ବ୍ୟାପି ଚାଲିଲା ଓ ପ୍ରତ୍ୟେକ ବର୍ଣ୍ଣନାକାରୀ ନିଜ ନିଜ କଳ୍ପନାରୁ କିଛି କିଛି ରଙ୍ଗ ଏଥିରେ ଦେଉଥିଲେ । ଦୂର ଦୂରାନ୍ତ ସହରର କବିମାନେ ଡଲସେ ରୋଜା ନାମକ

ଏକ କାଳ୍ପନିକ ଲାବଣ୍ୟମୟୀ ତରୁଣୀ ପ୍ରତି ସମ୍ବୋଧନ କରି ସିନେଟ୍‌ମାନ ରଚନା କରିଗଲେ ।

ସୌନ୍ଦର୍ଯ୍ୟର ଜନଶ୍ରୁତି ସିନେଟ୍‌ର ଓସେଲ୍ଲାନୋଙ୍କ ଗୃହରେ ପ୍ରସ୍ଫୁଟିତ ବିକଶିତ ହୋଇ ଶେଷରେ ସ୍ପର୍ଶ କଲା ଟାଡ଼ିଓ ସେସ୍‌ପେଡ଼େଙ୍କ ଶ୍ରବେଣନ୍ଦ୍ରିକୁ । ଟାଡ଼ିଓ ସେସ୍‌ପେଡ଼େ ସ୍ୱପ୍ନରେ ବି ଭାବି ନଥିଲେ ଯେ ଦିନେ ସେ ତାଙ୍କୁ ଭେଟିବେ, କାରଣ ତାଙ୍କ ଜୀବନରେ ଆଦୌ ସମୟ ନଥିଲା କବିତା ଶିଖିବାକୁ କି କୌଣସି ନାରୀକୁ ମୁଗ୍ଧ ନୟନରେ ଅନାଇ ରହିବାକୁ । ତାଙ୍କର ଏକମାତ୍ର ଚିନ୍ତା ଓ କର୍ମ ଥିଲା ଗୃହଯୁଦ୍ଧ । ତାଙ୍କ ପ୍ରଥମ ନିଶ କ୍ଷିଅର ହେବାପରଠାରୁ ସେ ହାତରେ ଧରିଥିଲେ ଅସ୍ତ୍ର ଏବଂ ସେହିଦିନଠାରୁ ବର୍ଷ ବର୍ଷ ସେ ଜୀବନ କାଟୁଥିଲେ ବନ୍ଧୁକ ତୋପର ଗର୍ଜନ ଭିତରେ । ଭୁଲି ଯାଇଥିଲେ ମା'ର ଚୁମା, ଚର୍ଚ୍ଚର ପ୍ରାର୍ଥନା, ସଭାର ସଙ୍ଗୀତ । ସବୁବେଳେ ଯୁଦ୍ଧର କାରଣ ଅବଶ୍ୟ ତାଙ୍କ ପାଇଁ ନଥିଲା । ସନ୍ଧି ସମୟରେ ତାଙ୍କ ସୈନ୍ୟବାହିନୀ ସହିତ ଯୁଦ୍ଧ କରିବାକୁ କୌଣସି ପ୍ରତିଯୋଦ୍ଧା ନଥା'ନ୍ତି । ବାଧତାମୂଳକ ଶାନ୍ତିର ସେହି ବିରତିକୁ ସେ ବିନିଯୋଗ କରୁଥିଲେ ଜଳଦସ୍ୟୁ ରୂପେ । ହିଂସା, ରକ୍ତପାତ ଥିଲା ତାଙ୍କର ନିଶା । ରାଷ୍ଟ୍ରସାରା ସେ ଖେଦି ବୁଲୁଥିଲେ, ଯେତେବେଳେ ଶତ୍ରୁମାନେ ତାଙ୍କ ହାବୁଡ଼ରେ ପଡୁଥିଲେ ସେମାନଙ୍କ ସହିତ ପ୍ରତ୍ୟକ୍ଷ ଲଢ଼େଇ କରୁଥିଲେ, କିନ୍ତୁ ଯେତେବେଳେ ଶତ୍ରୁ ମିଳୁ ନଥିଲେ ତାଙ୍କୁ ଶତ୍ରୁ ଉଦ୍ଭାବନ କରିବାକୁ ପଡୁଥିଲା । ସେତେବେଳେ ସେ ଶତ୍ରୁର ଛାୟା ସହିତ ଲଢୁଥିଲେ । ଏହିପରି ଚିରକାଳ ସେ ହତ୍ୟା ଲୁଣ୍ଠନ କରି ଚାଲିଥାନ୍ତେ, ଯଦି ତାଙ୍କର ଦଳ ରାଷ୍ଟ୍ରପତି ନିର୍ବାଚନରେ ଜିତି ନ'ଥାନ୍ତା । ରାତା ରାତି ତାଙ୍କର ଅଜ୍ଞାତ ସ୍ଥିତିରୁ ବାହାରି ଆସି ସେ ସାମାଜିକ ପ୍ରତିଷ୍ଠା ଲାଭ କଲେ । ଫଳରେ ଗାଁ ମଫସଲରେ ଗୋଳା ବୃଷ୍ଟି କରିବାର ସକଳ କାରଣ ଓ ସୁଯୋଗ ସେ ହରାଇ ବସିଲେ ।

ଟାଡ଼ିଓ ସେସ୍‌ପେଡ଼େଙ୍କର ଶେଷ ସମର ଅଭିଯାନ ଥିଲା ସାନ୍ଦା ଟେରେସା ଉପରେ ଶାସ୍ତିମୂଳକ ଚଢ଼ାଉ । ଏକଶହ କୋଡ଼ିଏ ସୈନ୍ୟ ଧରି ସହର ଭିତରକୁ ରାତିରେ ଘୋଡ଼ା ଝପଟାଇ ଦେଲେ ସେ । ଶତ୍ରୁପକ୍ଷର ନେତାମାନଙ୍କୁ ନିପାତ କରି ସେ ଜଣାଇବାକୁ ଚାହୁଁଥିଲେ ସହରଟି ତାଙ୍କ ଦୁର୍ଦ୍ଧର୍ଷ ଅଭିଯାନ ନମୁନା ଅଟେ । ତାଙ୍କର ସୈନ୍ୟମାନେ ସର୍ବସାଧାରଣ କୋଠାଗୁଡ଼ିକର ଝରକାଗୁଡ଼ିକ ଉପରେ ପ୍ରବଳ ଗୋଳାମାଡ଼ କଲେ, ଚର୍ଚ୍ଚର ଦ୍ୱାରକୁ ଭାଙ୍ଗି ପକାଇଲେ, ଚର୍ଚ୍ଚର ଉଚ୍ଚ ମଣ୍ଡପ ଉପରକୁ ଘୋଡ଼ାରେ ଚଢ଼ିଯାଇ ସେମାନଙ୍କ ବାଟରେ ଛିଡ଼ା ହୋଇଥିବା ପାଦ୍ରେ କେମେଣ୍ଟଙ୍କୁ ଦଳି ଚକଟି ପକାଇଲେ ଏବଂ ତା'ପରେ ପାହାଡ଼ର ଶିଖର ଦେଶରେ ଦର୍ପର ସହିତ ବିରାଜମାନ ସିନେଟ୍‌ର ଓରେଲ୍ଲାନୋଙ୍କ ଭିଲା ଆଡ଼କୁ ଘୋଡ଼ା ଛୁଟାଇ ଦେଲେ ।

କୁକୁରମାନଙ୍କୁ ଖୋଲିଦେଇ, ଭିଲ୍ଲାର ଦୂରତମ ଅଙ୍ଗନର ଦୂରତମ କୋଠରୀରେ ଝିଅକୁ ତାଲା ପକାଇ ଦେଇ ଏକ ଡଜନ୍ ବିଶ୍ୱସ୍ତ ଭୃତ୍ୟଙ୍କ ସମର୍ଥନରେ ସିନେଟ୍‌ର

ଆନ୍‌ସେଲ୍‌ମୋ ଓରି ଲ୍ଲାନୋ ପ୍ରସ୍ତୁତ ହୋଇଗଲେ ଟାଡ଼ିଓ ସେସ୍‌ପେଡଙ୍କର ଅବରୋଧ କରିବାକୁ । ଜୀବନର ଅନ୍ୟ ଅନେକ ମୁହୂର୍ତ୍ତ ପରି ସେହି ମୁହୂର୍ତ୍ତରେ ସେ ଅନୁଶୋଚନା କଲେ ଯେ ତାଙ୍କ କାନ୍ଧରେ କାନ୍ଧ ମିଳାଇ ଅସ୍ତ୍ର ଧରିବାକୁ ତାଙ୍କ ପରିବାରର ମର୍ଯ୍ୟାଦା ରକ୍ଷା କରିବାକୁ ତାଙ୍କର କେହି ପୁରୁଷ ଦାୟାଦ ନାହାନ୍ତି । ତାଙ୍କୁ ଲାଗିଲା ସେ ଖୁବ୍ ବୁଢ଼ା ହୋଇଗଲେଣି । କିନ୍ତୁ ଏ ପ୍ରକାର ଚିନ୍ତାକୁ ନେଇ ବ୍ୟସ୍ତ ହେବାକୁ ତାଙ୍କ ପାଖରେ ସମୟ ନଥିଲା – ସେ ଦେଖି ପାରୁଥିଲେ ପାହାଡ଼ର ଗଡ଼ାଣିରେ ରାତ୍ରିର ଅନ୍ଧକାରକୁ ଥରାଇ ଥରାଇ ଆତଙ୍କ ସଂଚାର କରୁଥିଲା ଏକଶହ କୋଡ଼ିଏଟି ମଶାଲର ଭୟାନକ ଦପ୍‌ଦପ୍ ଆଲୋକ । ତାଙ୍କର ସଂଚିତ ଶେଷ ଗୋଳାବାରୁଦ ତକ ନୀରବରେ ତାଙ୍କର ସାଥୀମାନଙ୍କୁ ଧରାଇଦେି ସେମାନଙ୍କୁ ସବୁକଥା ଜଣାଇ ଦେଲେ । ପ୍ରତ୍ୟେକ ଜାଣିଥିଲେ ନିଜର ନିଜର ଚୌକରେ ଦୃଢ଼ ରହି କର୍ତ୍ତବ୍ୟନିଷ୍ଠ ସୈନିକ ପରି ପ୍ରଭାବ ରବିରୁ ଅବଶ୍ୟ ସେମାନଙ୍କୁ ମରିବାକୁ ପଡ଼ିବ ।

'ଶେଷ ଲୋକଟି ମୋ ଝିଅ ରହିଥିବା କୋଠରୀକୁ ଚାବିକାଠି ନେଇ ଯିବ ଏବଂ ଯାହା ଅନିର୍ବାର୍ଯ୍ୟ ତାହା ହିଁ ସେ କରିବ' ସିନେଟ୍‌ର ଶୁଣାଇଦେଲେ ପ୍ରଥମ ଗୁଳିର ଆବାଜ୍ ଭିତରେ ।

ଡଲ୍‌ସ୍ ରୋଜା ଜନ୍ମ ହେବା ବେଳାରେ ଏହି ଲୋକମାନେ ତାଙ୍କ ସହିତ ଥିଲେ । ସେ ଯେତେବେଳେ ଠୁକୁଠୁକୁ ଚାଲୁଥିଲେ, ତାଙ୍କୁ ଆଣ୍ଠୁରେ ଧରି ନଚାଇଛନ୍ତି, ଶିଶିର ଅପରାହ୍ନରେ ଭୂତ ପ୍ରେତ ଗପ ଶୁଣାଇଛନ୍ତି । ତାଙ୍କର ପିଆନୋ ବଜାଇବାର ସେ ଆବାଜକୁ ସେମାନେ ଶୁଣିଛନ୍ତି ଏବଂ ଯେଉଁଦିନ କାର୍ନିଭାଲ୍ ରାଣୀର ମୁକୁଟରେ ଭୂଷିତା ହେଲେ ସେମାନେ ଘନ ଘନ କରତାଳିରେ ତାଙ୍କର ଉଚ୍ଛ୍ୱସିତ ସମ୍ବର୍ଦ୍ଧନା କରିଛନ୍ତି । ତାଙ୍କ ପିତା ଶାନ୍ତିରେ ଶେଷ ନିଃଶ୍ୱାସ ତ୍ୟାଗ କରିପାରିବେ, କାରଣ ଟାଡ଼ିଓ ସେସ୍‌ପେଡ଼େ ତାଙ୍କ ଝିଅକୁ ଜୀବିତ ଅବସ୍ଥାରେ କେବେ ହେଲେ ନେଇ ପାରିବେ ନାହିଁ । କେବଳ ଗୋଟିଏ ସମ୍ଭାବନା ସିନେଟ୍‌ର ଓରେଲ୍ଲାନୋ ବିଚାର କରି ନଥିଲେ – ତାହା ହେଉଛି ତାଙ୍କର ଭୀଷଣ ଭୟଙ୍କର ଯୁଦ୍ଧ ପରିଚାଳନା ସତ୍ତ୍ୱେ ସେ ହିଁ ରହିଯିବେ ସବାଶେଷକୁ ମରିବାକୁ । ସେ ଦେଖିଲେ ତାଙ୍କର ବନ୍ଧୁମାନେ ଜଣକ ପରେ ଜଣେ ଭୂଲୁଣ୍ଠିତ ହେଲେଣି ଏବଂ ଉପଲବ୍ଧି କଲେ ଯେ ଶତ୍ରୁର ବିରୋଧ କରିବା ଏବେ ବୃଥା । ପେଟରେ ତାଙ୍କର ଗୁଳି ବାଜିଛି, ଚକ୍ଷୁରେ କଳାବାଦଲର ଛାଇ, ତାଙ୍କର ଇଲାକାର ଉଚ୍ଚ ପ୍ରାଚୀରକୁ ଚଢୁଥିବା ଛାୟାମୂର୍ତ୍ତିଗୁଡ଼ିକୁ ସେ ପ୍ରାୟ ଜାଣି ପାରୁନଥିଲେ । କିନ୍ତୁ ତାଙ୍କର ବେଶ୍ ଚେତା ଥିଲା ନିଜକୁ ଘୋଷାଡ଼ି ଘୋଷାଡ଼ି ନେଇ ଯିବାକୁ ତାଙ୍କ ଭିଲ୍ଲାର ସେହି ତୃତୀୟ ଅଙ୍ଗନକୁ । ଝାଳ, ରକ୍ତ ଓ ଯନ୍ତ୍ରଣାରେ ପରସ୍ତ ପରସ୍ତ ସ୍ତର ଭେଦି ତାଙ୍କର କୁକୁରମାନେ ତାଙ୍କ ଗନ୍ଧକୁ ବାରି ପାରିଲେ ଏବଂ ତାଙ୍କ ପାଇଁ ପଥ ପରିଷ୍କାର କରିଦେଲେ । ତାଲାରେ ଚାବି କାଠି ପୂରାଇ ଓଜନିଆ କବାଟକୁ ଠେଲି ଖୋଲି ଦେଲେ ସେ, କୁହେଳିକାଚ୍ଛନ୍ନ

ଢାଲୁଢାଲୁଆ ଆଖିରେ ଦେଖିଲେ ଡଲସ୍ ରୋଜା ତାଙ୍କରି ପାଇଁ ଅପେକ୍ଷା କରି ବସିଛନ୍ତି । ପିନ୍ଧିଥିଲେ କାର୍ନିଭାଲ୍ ସମୟରେ ପିନ୍ଧିଥିବା ଅର୍ଗାଞ୍ଜା ପୋଷାକ ଏବଂ ତାଙ୍କ କେଶ ସୁଶୋଭିତ ଥିଲା ମୁକୁଟରଂ ପୁଷ୍ପରାଜିରେ ।

'ସମୟ ଏବେ ଉପଗତ' ପିସ୍ତଲକୁ ଝଟକାଇ ତାଙ୍କ ଆଡ଼କୁ ଦେଖାଇ କହିଲେ ସିନେଟର୍ । ତାଙ୍କର ପାଦକୁ ଲାଗି ମନ୍ଦାଏ ରକ୍ତ ଜମି ଆସୁଥିଲା ସେତେବେଳେ ।

'ମୋତେ ମାର ନାହିଁ ବାପା !' ଡଲ୍‌ସ ରୋଜାଙ୍କ ଦୃଢ଼ ଉତ୍ତର । 'ମୋତେ ବଂଚି ରହିବାକୁ ଦିଅ, ମୁଁ ନେବି ତମର ଓ ମୋର ପ୍ରତିଶୋଧ ।'

ସିନେଟର୍ ଆନ୍‌ସେଲ ଯେ ତାଙ୍କ ପନ୍ଦରବର୍ଷର ମୁହଁକୁ ଅନାଇ ରହିଲେ ଏବଂ ଭାବିନେଲେ ଏ ଝିଅଟିକୁ ନେଇ ଟାଡ଼ିଓ ସେସ୍‌ପେଡ଼େ ଯାହା ନାହିଁ ତାହା କରିପାରେ । କିନ୍ତୁ ଡଲ୍‌ସ୍ ରୋଜାର ସ୍ୱଚ୍ଛ ଚକ୍ଷୁରେ ଥିଲା ସ୍ଥିର ଅବିଚଳ ଆତ୍ମପ୍ରତ୍ୟୟ, ସେଥିରୁ ସେ ଜାଣିପାରିଲେ ଏ ରକ୍ଷା ପାଇଯାଇ ତାଙ୍କ ହତ୍ୟାକାରୀକୁ ନିଶ୍ଚୟ ଶାସ୍ତି ଦେବ । ବାଳିକା ଜଣକ ଶଯ୍ୟାରେ ବସି ପଡ଼ିଲେ ଓ ତା' ପାଖରେ ବସି ରହିଲେ ସିନେଟର୍, ତାଙ୍କର ବନ୍ଧୁକର ମୁହଁ ଥିଲା ଦ୍ୱାର ଆଡ଼କୁ ।

ମୁମୂର୍ଷୁ କୁକୁରଙ୍କ ଶେଷ ବାହାନୁ ସହିତ ଦ୍ୱାରର କାଠ ଛିଟିକାଣି ଭାଙ୍ଗି ପଡ଼ିଲା, ଦ୍ୱାରରୁ କିଳିଣି ଛିଟିକି ପଡ଼ିଲା ଏବଂ ପ୍ରଥମ କେତେଜଣ ଆକ୍ରମଣକାରୀ କୋଠରୀ ଭିତରକୁ ଧସେଇ ପଶିଲେ । ନିଜର ଚେତା ହରାଇବା ପୂର୍ବରୁ ସିନେଟର୍ ଛ' ଜଣଙ୍କୁ ଗୁଳି କରି ମାରିଦେଲେ । ଯେତେବେଳେ ଟାଡ଼ିଓ ପ୍ରଥମେ ଦେଖିଲେ ମଲ୍ଲୀ ମୁକୁଟ ବିମଣ୍ଡିତା ଜଣେ ପରୀ ନିଜ ବାହୁରେ ଧରିଛନ୍ତି ଜଣେ ମୁମୂର୍ଷୁ ମଣିଷକୁ ଓ ତାଙ୍କ ଧଳା ପୋଷାକ କ୍ରମଶଃ ଲାଲ୍ ହୋଇ ଯାଉଛି, ତାଙ୍କୁ ଲାଗିଲା ସେ ଏକ ସ୍ୱପ୍ନ ଦେଖୁଛନ୍ତି । କିନ୍ତୁ ତାଙ୍କର ଦ୍ୱିତୀୟ ଚାହାଣୀରେ ତାଙ୍କ ମନ ଦୟାରେ ଆର୍ଦ୍ର ହୋଇ ନଥିଲା; ହତ୍ୟା ରକ୍ତପାତରେ ସେ ଥିଲେ ମତୁଆଲା । ଘଣ୍ଟା ଘଣ୍ଟା ଅବିଶ୍ରାମ ଯୁଦ୍ଧ ଫଳରେ ସେ ଥିଲେ କ୍ଲାନ୍ତ ଶ୍ରାନ୍ତ । ଡଲ୍‌ସ ରୋଜାଙ୍କ ଦେହରେ ତାଙ୍କ ଲୋକମାନେ ହାତ ଦେବା ପୂର୍ବରୁ ସେ ଚିତ୍କାର କରି ଉଠିଲେ, 'ଏ ତରୁଣୀଟି ମୋର ।'

ଶୁକ୍ରବାରର ଉଦୟ ହେଲା ଅଗ୍ନିର ଝଲକରେ ବିଦୀର୍ଣ୍ଣ ସଂସାର ଆକାଶରେ । ଗିରି ଶିଖରରେ ଜମାଟ ବାନ୍ଧିଥିଲା ଗୁରୁଗମ୍ଭୀର ନୀରବତା । ଶେଷ ବିଳାପର କରୁଣଧ୍ୱନି ପବନରେ କାହିଁ ମିଳେଇ ଯାଉଥିଲା, ଯେତେବେଳେ ଡ଼ଲ୍‌ସ୍ ରୋଜା କଷ୍ଟେମଷ୍ଟେ ପାଦ ଉପରେ ଠିଆ ହେଲେ ଓ ଆସ୍ତେ ଆସ୍ତେ ବଗିଚାର ଜଳ ଫୁଆରା ନିକଟକୁ ଆସିଲେ । ଆଗ ଦିଗରେ ଏହି ଜଳ ଫୁଆରାର ଚାରିପଟେ ଚାଲିଥିଲା ମାଗ୍ନୋଲିଆ ଫୁଲର ରୋଷଣି; କିନ୍ତୁ ଏବେ ଭଙ୍ଗାରୁଜାର ବିଭୀଷିକା ଭିତରେ ଏ ଥିଲା ମନ୍ଦାଏ ଜଳର ବୁଦ୍‌ବୁଦ୍ । ପୋଷାକ ତାଙ୍କର ଚିରି ଛିଣ୍ଡି ଝୁଲୁଥିଲା ତାଙ୍କ ଦିହରୁ । ତାକୁ ସେ ଧୀରେ କାଢ଼ି ଦେଇ ଉଲଗ୍ନ ହୋଇ ପଡ଼ିଲେ, ଶୀତଳ ଜଳ ଭିତରେ ବୁଡ଼ ଦେଲେ । ସେତେବେଳେ ବାଟ

ଗଛଗୁଡ଼ିକ ଦେଇ ଦେଖାଦେଲେ ସୂର୍ଯ୍ୟ । ଯେତେବେଳେ ଡଲ୍‌ସ୍ ରୋଜା ନିଜ ଦୁଇ ଗୋଡ଼ର ସନ୍ଧିରୁ ରକ୍ତକୁ ଧୋଇ ସଫା କଲେ, ତାଙ୍କର ଦୀର୍ଘ କେଶରେ ଲାଖିଥିବା ତାଙ୍କ ବାପାଙ୍କର ଗାଢ଼ ରକ୍ତକୁ ଧୋଇଲେ, ସେତେବେଳେ ସେ ଲକ୍ଷ୍ୟ କଲେ ଜଳ ଗୋଲାପି ରଙ୍ଗ ହୋଇ ଯାଉଛି । ଶାନ୍ତ ପରିଷ୍କାର ହୋଇଯିବା ପରେ, ନିଜର ଲୁହକୁ ଶୁଖାଇ ଦେବା ପରେ ସେ ଫେରିଲେ ତାଙ୍କର ବିଧ୍ୱସ୍ତ ଅଟ୍ଟାଳିକାକୁ । ଖୋଜିଲେ କିଛି ନିଜର ନଗ୍ନତାକୁ ଘୋଡ଼ାଇବାକୁ । ଆଲଣାରୁ କପଡ଼ାଟିଏ କାଢ଼ି ଆଣି ବାହାରକୁ ବାହାରିଗଲେ ଖୋଜିବାକୁ ତାଙ୍କ ବାପାଙ୍କ ଦେହର ଅବଶେଷାଂଶ । ଦସ୍ୟୁମାନେ ତାଙ୍କ ପାଦକୁ ବାନ୍ଧି ଘୋଡ଼ାରେ ଲଟକାଇ ଦେଇ ପାହାଡ଼ର ତଳ ଉପର ତାଙ୍କୁ ଘୋଷାଡ଼ି ଥିଲେ ବଡ଼ କରୁଣ ଅବସ୍ଥାରେ; ଦେହରେ ମାଂସ ଖଣ୍ଡ ଖଣ୍ଡ ବିନା କିଛି ନରହିବା ପର୍ଯ୍ୟନ୍ତ । ପିତାଙ୍କ ପ୍ରତି ଥିବା ତାଙ୍କର ମମତା ତାଙ୍କୁ ସାହାଯ୍ୟ କଲା ପିତାଙ୍କର ଦେହାବଶେଷକୁ ନିର୍ଭୁଲ ଭାବେ ଚିହ୍ନି ପାରିବାରେ । ସେହି କପଡ଼ାରେ ତାକୁ ଘୋଡ଼ାଇ ପକାଇ ତା'ରି ପାଖରେ ସେ ବସି ରହିଲେ କେତେବେଳେ ସିନ୍ଦୁରା ଫିଟିବ, ଦିନର ଆଲୋକ ବିଛୁଡ଼ି ପଡ଼ିବ । ଯେତେବେଳେ ସାନ୍ତୀ ଟେରେସାର ପଡ଼ୋଶୀମାନେ ସାହସ ସଞ୍ଚୟ କରି ପାହାଡ଼ ଚଢ଼ିଲେ ଦେଖିବାକୁ ଓରେଲ୍ଲାନୋଙ୍କ ଭିଲାକୁ, ସେତେବେଳେ ସେମାନେ ଡଲ୍‌ସ ରୋଜାଙ୍କୁ ଦେଖି ପାରିଲେ । ସେମାନେ ତାଙ୍କୁ ସାହାଯ୍ୟ କଲେ ଶବ ସମାଧି ଦେବାରେ ଏବଂ ଅଗ୍ନି ଦଗ୍‌ଧ କୋଇଲାର ଶେଷ ସ୍ଫୁଲିଙ୍ଗକୁ ଲିଭାଇବାରେ । ସେମାନେ ତା'ପରେ ତାଙ୍କୁ ଅନୁରୋଧ କଲେ ତାଙ୍କର ଧରମ ମା' ସହିତ ରହିବାକୁ ଅନ୍ୟ ଏକ ସହରରେ, ଯେଉଁଠାରେ କେହି ତାଙ୍କର କାହାଣୀ ଜାଣିବେ ନାହିଁ । ସେ ଯେତେବେଳେ ଏଥିରେ ରାଜି ହେଲେ ନାହିଁ, ସହରବାସୀ ଦଳବଦ୍ଧ ହୋଇ ଭଗ୍ନ ଗୃହଟିର ପୁନର୍ନିର୍ମାଣରେ ଲାଗିଗଲେ ଓ ତାଙ୍କୁ ଆତ୍ମରକ୍ଷା ପାଇଁ ଦେଲେ ଛ'ଟି ଭୟାନକ କୁକୁର ।

ଯେଉଁ ମୁହୂର୍ତ୍ତରେ ସେମାନେ ତାଙ୍କର ମୁମୂର୍ଷୁ ପିତାଙ୍କୁ ଘୋଷାଡ଼ି ଘୋଷାଡ଼ି ତାଙ୍କର ଜୀବନକୁ ନିଗାଡ଼ି ଦେଲେ, ଯେଉଁ ମୁହୂର୍ତ୍ତରେ ସେସ୍‌ପେଡ କୋଠରୀର ଦ୍ୱାର ବନ୍ଦ କରି ନିଜର ଚମଡ଼ା ବେଲ୍‌ଟ ଖୋଲିଲା, ସେହି ମୁହୂର୍ତ୍ତରୁ ଡଲ୍‌ସ ରୋଜା ବଂଚି ରହିଲେ କେବଳ ପ୍ରତିଶୋଧର ଜିଂଘାସା ନେଇ । ସେ ସ୍ମୃତି ତାଙ୍କୁ ଦେଲା ଅନେକ ବିନିଦ୍ର ରଜନୀ, ତାଙ୍କର ଦିବସଗୁଡ଼ିକୁ ନିଃଶେଷ କରି ଦେଉଥିଲା ନିଷ୍ଠୁର ଭାବରେ । କିନ୍ତୁ ଏସବୁ ତାଙ୍କ ହସକୁ ପୂରାପୂରି ବନ୍ଦ କରି ଦେଇ ନଥିଲା, ତାଙ୍କର ସ୍ଥିର ଚିତ୍ତକୁ ଅସ୍ଥିର କରିନଥିଲା । ସୁନ୍ଦରୀ ଭାବରେ ତାଙ୍କର ଖ୍ୟାତି ବଢ଼ିଗଲା । ସଙ୍ଗୀତଜ୍ଞମାନେ ଗଳି ଉପଗଳିରେ ବୁଲି ବୁଲି ତାଙ୍କର ଲାଳିତ୍ୟକୁ ଆହୁରି ବଢ଼ାଇ ଦେଲେ । ସେ ହୋଇଗଲେ ଜୀବନ୍ତ ଏକ କିମ୍ବଦନ୍ତୀ ।

ପ୍ରତ୍ୟେକ ଦିନ ସେ ଭୋର୍ ଚାରିଟା ବେଳେ ଉଠି କ୍ଷେତ, ଘର ବାଡ଼ିରେ କାମ ତଦାରଖ କରି ନିଜର ଇଲାକାରେ ଘୋଡ଼ା ଚଢ଼ି ବୁଲୁଥାନ୍ତି । କଣ୍ଟା ସଫା କରନ୍ତି । ସିରିଆବାସୀଙ୍କ ପରି ବେଶ୍ ମୂଲ କଷାକଷି କରି ବଗିଚାରେ ମାଗ୍ନୋଲିଆ ଓ ମଲ୍ଲୀ ଗଛର ଚାରା ରୋପଣ କରୁଥାନ୍ତି ଓ ଫୁଲ ଗଛ ଲଗାନ୍ତି । ଯେତେବେଳେ ସନ୍ଧ୍ୟା ନଇଁ ଆସେ ସେ ଅଶ୍ୱାରୋହୀର ପାଇଜାମା, ଯୋତା ପିସ୍ତଲ୍ ଦେହରୁ କାଢ଼ି ଦିଅନ୍ତି, ରାଜଧାନୀରୁ ଜାହାଜରେ ଅଣା ଯାଇଥିବା ଓ ଟ୍ରଙ୍କ୍‌ରେ ସୁବାସିତ ଚେରମୂଳି ସହିତ ରଖା ଯାଇଥିବା ସୁବାସିତ ମନଲୋଭା ଗାଉନ୍ ପିନ୍ଧନ୍ତି । ରାତ୍ରି ହେବା ମାତ୍ରେ ତାଙ୍କର ଅତିଥିମାନେ ପହଞ୍ଚି ଯାଆନ୍ତି, ଦେଖନ୍ତି ସେ ପିଆନୋ ବଜାଉଛନ୍ତି । ଭୃତ୍ୟମାନେ ପାଷ୍ଟ୍ରିର ଟ୍ରେ ଓ ଶୀତଳ ପାନୀୟର ଗ୍ଲାସ୍ ସବୁ ସଜାଉଛନ୍ତି ।

ପ୍ରଥମେ ପ୍ରଥମେ ଲୋକମାନେ ବିସ୍ମିତ ହେଲେ କାହିଁକି ସେ ସ୍ୱାସ୍ଥ୍ୟ ନିବାସର ପରିସର ଭିତରେ ଆବଦ୍ଧ ହୋଇ ରହୁ ନାହାନ୍ତି, ବିସ୍ କାମୋଲାଇଟ୍‌ର ନନ୍‌ଙ୍କ ସହିତ ନବୀଶ ଜୀବନ ଯାପନ କରୁନାହାନ୍ତି । କିନ୍ତୁ ଓରେଲ୍ଲୀନୋ ଭିଲାରେ ବାରମ୍ବାର ଅନୁଷ୍ଠିତ ହେଉଥିବା ଭୋଜି ସମୟକ୍ରମେ ଜନମାନସରୁ ସେହି କରୁଣ ଘଟଣାକୁ ଏବଂ ନିହତ ସିନେଟର୍‌ଙ୍କ ସ୍ମୃତିକୁ ପୋଛି ଦେଲା । କେତେଜଣ ସମ୍ପତ୍ତିଶାଳୀ ସୁଖ୍ୟାତ ସମ୍ଭ୍ରାନ୍ତ ଧର୍ଷଣଜନିତ କଳଙ୍କକୁ ଭୁଲି ଯାଇ ପାରିଲେ ଓ ଡଲ୍‌ସ୍ ରୋଜାଙ୍କର ସମ୍ବେଦନଶୀଳତା ଓ ଅପରୂପ ଲାବଣ୍ୟର ଖ୍ୟାତି ଦ୍ୱାରା ଆକର୍ଷିତ ହୋଇ ବିବାହ ପ୍ରସ୍ତାବ ମଧ୍ୟ ଦେଲେ । ସେସବୁକୁ ସେ ପ୍ରତ୍ୟାଖ୍ୟାନ କଲେ, କାରଣ ପୃଥିବୀରେ ତାଙ୍କର ଗୋଟିଏ ମାତ୍ର ଲକ୍ଷ୍ୟ ଥିଲା – ପ୍ରତିଶୋଧ !

ଟାଡ଼ିଓ ସେସ୍‌ପେଡେ ମଧ୍ୟ ସେ ଭୟାନକ ରାତ୍ରିର ସ୍ମୃତିର କବଳରୁ ନିଜକୁ ମୁକ୍ତ କରିପାରିଲେ ନାହିଁ । ଗଣସଂହାରର ପ୍ରଳୟଙ୍କରୀ କାଣ୍ଡ, ଉତ୍ତେଜନା ଓ ଧର୍ଷଣର ମାଦକତା କ୍ରମଶଃ ମଉଳି ଯାଇଥିଲା, ସେ ସେତେବେଳେ ରାଜଧାନୀକୁ ଫେରୁଥିଲେ ତାଙ୍କ ଆକ୍ରମଣର ବିଭୀଷିକାମୟୀ ବିବରଣୀ ପ୍ରଦାନ କରିବାକୁ । ସେ ଭାବୁଥିଲେ ବଲ୍-ଗାଉନ୍ ପରିହିତା ସୁବାସିତ ମଲ୍ଲୀ ଫୁଲ ମୁକୁଟଧାରିଣୀ ସେହି ବାଳିକାଟି ଗୋଳା ବାରୁଦର ଫରକୁଟିଆ ଗନ୍ଧର କୋଠରୀରେ କିପରି ତାଙ୍କର ପାଶବିକତାକୁ ନୀରବରେ ସହି ଯାଇଥିଲା । ସେଠାରେ ତାକୁ ଛାଡ଼ିଦେଇ ଯିବା ପରେ ମଧ୍ୟ ପୁଣି ସେ ଦେଖିଲେ ସେହି ଦୃଶ୍ୟ – ଚଟାଣ ଉପରେ ଚିତ୍ ହେଇ, ରକ୍ତ ଜୁଡୁବୁଡୁ ଲୁଗା ବେଢ଼େଇ ହୋଇ କରୁଣାମୟୀ ନିଦ୍ରାର ଅଚେତନରେ କେଉଁ ଗହ୍ୱରରେ ବୁଡ଼ି ଯାଇଥିବା ଅଧଲଙ୍ଗଳା ବାଳିକାଟିଏ । ଜୀବନର ଅବଶିଷ୍ଟ ଦିନଗୁଡ଼ିକରେ ଶୟନ ସମୟରେ ସେହି ଅବସ୍ଥାରେ ସେ ଦେଖିଛନ୍ତି ସେହି ଝିଅଟିକୁ । ଶାନ୍ତି, ପ୍ରଶାସନ କାର୍ଯ୍ୟ ଏବଂ କ୍ଷମତା ସେସ୍‌ପେଡ଼େଙ୍କୁ କ୍ରମଶଃ ଭଦ୍ର, ଶିଷ୍ଟ, କଠିନ ପରିଶ୍ରମୀ ମଣିଷରେ ପରିଣତ କଲା ।

ସେ ସମୀକ୍ଷା କରିଚାଲିଲେ ତାଙ୍କର ପ୍ରତିଶୋଧର ସମ୍ପୂର୍ଣ୍ଣ ଯୋଜନାଟିକୁ; ସେ କିନ୍ତୁ ପାଇଲେ ନାହିଁ ତାଙ୍କର ପ୍ରତ୍ୟାଶିତ ଆନନ୍ଦ ଟିକକ । ବରଂ ଗଭୀର ବିଷାଦରେ ସେ ବୁଡ଼ିଗଲେ ।

ଟାଡ଼ିଓ ସେସ୍‌ପେଡ଼େ ତାଙ୍କର ହାତକୁ ଟୋଳି ନେଲେ, ନରମ ପାପୁଲିକୁ ଚୁମା ଦେଲେ, ନିଜର ଲୋତକରେ ତାଙ୍କୁ ଓଦା କରି ଦେଲେ । ସେତେବେଳେ ଡଲ୍‌ସ୍ ରୋଜା ନିଜ ଭିତରେ ଅନୁଭବ କଲେ, ଭୟ ଓ ଆତଙ୍କର ସହିତ ଅନୁଭବ କଲେ ଯେ ସେସ୍‌ପେଡ଼େଙ୍କୁ କେନ୍ଦ୍ର କରି ତାଙ୍କର କାହିଁ କେତେ ଦୀର୍ଘ କାଳର ଭାବନା, ଦଣ୍ଡ ବିଧାନର ପରିକଳ୍ପନାର ଆସ୍ୱାଦନଠାରୁ ଆରମ୍ଭ କରି ତାଙ୍କର ଆବେଗ, ଗତି କରି ଗୋଟିଏ ପୂର୍ଣ୍ଣ ବୃତ୍ତିଟିଏ ଆଙ୍କି ସାରିଛି ଓ ସେ ଏବେ ତାଙ୍କୁ ଭଲ ପାଇ ବସିଛନ୍ତି !

ପରବର୍ତ୍ତୀ ଦିନଗୁଡ଼ିକରେ ସେମାନଙ୍କ ଅବରୁଦ୍ଧ ଭଲ ପାଇବାର ସ୍ରୋତର ଫାଟକମାନ ସେମାନେ ଖୋଲି ଦେଲେ । ପ୍ରଥମ ଥର ପାଇଁ ସେମାନଙ୍କର ବିକ୍ଷଣ୍ଣ ଭାଗ୍ୟରେ ଆପଣା ଆପଣାର ଘନିଷ୍ଠ ମଣିଷକୁ ଆଦରି ନେଲେ, ଆପଣେଇ ନେଲେ । ବଗିଚାଗୁଡ଼ିକ ଦେଇ ସେମାନଙ୍କର ସଧୀର ଚଲାବୁଲା, ନିଜ ନିଜ ବିଷୟରେ ଗପସପ ସେମାନଙ୍କ ଭଲ ପାଇବାକୁ ମଧୁର କଲା । ସେମାନଙ୍କ ଜୀବନ ପଥକୁ ବଦଳାଇ ଦେଇଥିବା ସେ ମର୍ମାନ୍ତିକ ରାତ୍ରିର କଥାକୁ ସେମାନେ ଏଡ଼ାଇ ରଖିଥିଲେ । ସନ୍ଧ୍ୟାର ଈଷତ୍ ଅନ୍ଧକାରରେ ଡଲ୍‌ସ୍ ରୋଜା ପିଆନୋ ବଜାନ୍ତି, ପାଖରେ ବସି ଟାଡ଼ିଓ ସେସ୍‌ପେଡ଼େ ଟବାକୋ ଟାଣନ୍ତି । ପିଆନୋ ମୂର୍ଚ୍ଛନା ଶୁଣିବାବେଳେ ତାଙ୍କୁ ଲାଗେ ତାଙ୍କର ହାଡ଼ସବୁ ଦୁର୍ବଳ ହୋଇ ଯାଉଛି, ସୁଖର ଉଷ୍ମ କମ୍ବଳ ତାଙ୍କୁ ଘୋଡ଼ାଇ ପକାଉଛି । ରାତ୍ରି ଭୋଜନ ପରେ ପରେ ସେ ଗାଡ଼ି ଚଳାଇ ଯାଆନ୍ତି ସାନ୍ତା ଟେରେସାକୁ, ଯେଉଁଠାରେ କେହି ମନେ ରଖି ନାହାନ୍ତି ଅତୀତର ସେହି ଜଘନ୍ୟ ଘଟଣାକୁ ।

ସବୁଠାରୁ ଭଲ ଏକ ହୋଟେଲ୍‌ର କୋଠରୀସବୁ ଭଡ଼ା ନେଇ ବିବାହର ଆୟୋଜନ କଲେ । ସେ ଚାହୁଁଥିଲେ ହର୍ଷ ଆନନ୍ଦ, ମଉଜ୍ ମଜଲିସ୍, ଉତ୍ସାହ ଉତ୍ତେଜନାର ମହୋତ୍ସବ, ସାରା ସହର ସେଥିରେ ଅଂଶ ଗ୍ରହଣ କରିବ । ଯେଉଁ ବୟସରେ ମଣିଷ ତା'ର ଆଶା ହରାଇଥାଏ, ସେହି ବୟସରେ ସେ ଭଲପାଇବାର ସନ୍ଧାନ ପାଇଥିଲେ । ସେହି ସନ୍ଧାନ ଯୌବନର ଉଦ୍ଦାମତା ତାଙ୍କର ଫେରାଇ ଆଣିଲା । ସେ ଚାହୁଁଥିଲେ ଡଲ୍‌ସ୍ ରୋଜାଙ୍କୁ ପ୍ରେମ ଓ ମାଧୁର୍ଯ୍ୟରେ ବୁଡ଼ାଇ ଦେବେ, ଧନସମ୍ପତ୍ତି ଦେଇ ଯେତେ ସୁଖ ଐଶ୍ୱର୍ଯ୍ୟ କିଣା ଯାଇପାରିବ ସେସବୁ ତାଙ୍କ ଉପରେ ଅଜାଡ଼ି ଦେବେ । ସେ ଚାହୁଁଥିଲେ ଦେଖିବାକୁ, ବାଳିକା ଅବସ୍ଥାରେ ତାଙ୍କର ଯେଉଁ କ୍ଷତି ସେ କରିଥିଲେ, ସେ କ୍ଷତିର ଭରଣା କରି ପାରିଛନ୍ତି କି ନାହିଁ । ସମୟେ ସମୟେ ଅଜଣା ଭୟ ତାଙ୍କୁ ମାଡ଼ି ବସୁଥିଲା । ସେ ଚାହାନ୍ତି ଡଲ୍‌ସ୍ ରୋଜାଙ୍କ ମୁହଁକୁ ଦେଖିବାକୁ – ସେଠି ବିଦ୍ୱେଷର ଚିହ୍ନ – କିନ୍ତୁ ଯେତେବେଳେ ସେଠି ସେ ଦେଖନ୍ତି ଭଲ ପାଇବାର ସମାବେଶ, ସେ ଆଶ୍ୱସ୍ତ ହୁଅନ୍ତି । ସୁଖର ମାସଟିଏ ଏଇମିତି ଗଡ଼ିଗଲା ।

ବିବାହର ଦୁଇଦିନ ପୂର୍ବରୁ ଯେତେବେଳେ ବଗିଚାରେ ବିବାହ ପାର୍ଟି ପାଇଁ ଟେବୁଲ୍ ସଜା ଯାଉଥିଲା, ଭୋଜି ପାଇଁ ଚଢ଼େଇ ଘୁଷୁଡ଼ି କଟା ଚାଲୁଥିଲା, ଦ୍ୱାରସଜ୍ଜା ପାଇଁ ଫୁଲ କଟା ହେଉଥିଲା, ସେତେବେଳେ ଡଲସ୍ ରୋଜା ଓ ରେଲ୍ଲାନୋ ନିଜର ବିବାହ ପୋଷାକକୁ ପରୀକ୍ଷା କରୁଥିଲେ । ଅଇନାରେ ନିଜକୁ ଦେଖୁଥିଲେ । ଭାବୁଥିଲେ, କାର୍ନିଭାଲ୍‌ର ରାଣୀ ସିଂହାସନରେ ଆରୋହଣର ଦିନ ପରି ନିଜର ହୃଦୟକୁ ସେ ଆଉ ଠକି ଚାଲିବେ ନାହିଁ । ସେ ଜାଣିଥିଲେ ତାଙ୍କର ପ୍ରତିଶୋଧର ଯୋଜନାକୁ ସେ ଆଦୌ କାର୍ଯ୍ୟକାରୀ କରିପାରିବେ ନାହିଁ; ହତ୍ୟାକାରୀର ପ୍ରେମରେ ପଡ଼ି ଯାଇଛନ୍ତି ସେ ! କିନ୍ତୁ ସିନେଟରଙ୍କର ପ୍ରେତକୁ ନୀରବ କରାଇ ପାରିବେ ନାହିଁ । ଫିଙ୍ଗିଦେଲେ ତରବାରି, କଇଁଚିଟିଏ ଧରି ଚାଲିଗଲେ ଏତେ ବର୍ଷ ଧରି ଖାଲି ପଡ଼ିଥିବା ତୃତୀୟ ଅଙ୍ଗନର ସେହି କୋଠରୀକୁ ।

ଟାଡିସ୍ ସେସ୍‌ପେଡ଼େ ତାଙ୍କୁ ଖୋଜିଲେ । ସବୁଆଡ଼େ ଡାକ ପକାଇଲେ ପାଗଳ ପରି । କୁକୁରମାନଙ୍କର ଭୁକା ଏଥର ତାଙ୍କୁ ନେଇଗଲା ମହଲର ଶେଷ ପ୍ରାନ୍ତକୁ । ମାଳୀ ସାହାଯ୍ୟରେ ଗୋଇଠା ମାରି ଭାଙ୍ଗି ପକାଇଲେ ବନ୍ଦ ଦରଜାକୁ, ଧାଇଁ ଗଲେ କୋଠରୀ ଭିତରକୁ ଯେଉଁଠାରେ ସେ ଦିନେ ଦେଖିଥିଲେ ମଲ୍ଲୀ ଫୁଲ ମୁକୁଟ ସୁଶୋଭିତ ସେହି ପରୀକୁ । ସେ ଦେଖିଲେ ସେହିଠାରେ ଡେଲ୍‌ଓ ରୋଜାଙ୍କୁ ଠିକ୍ ଯେପରି ତାଙ୍କ ଜୀବନର ପ୍ରତ୍ୟେକ ରଜନୀର ପ୍ରତ୍ୟେକ ସ୍ୱପ୍ନରେ ସେ ଦେଖୁଥିଲେ ତାଙ୍କୁ – ସେହି ରକ୍ତାକ୍ତ ଅର୍ଗାଞ୍ଜି ପୋଷାକ ପରିହିତା ବାଳିକା । ସେ ଜାଣିଗଲେ ତାଙ୍କୁ ନବେ ବର୍ଷ ବଂଚିବାକୁ ହେବ । ନିଜ ପାପର ପ୍ରାୟଶ୍ଚିତ୍ତ କରିବାକୁ ତାଙ୍କର ହୃଦୟକୁ ଛୁଇଁଥିବା ଏକମାତ୍ର ସେହି ନାରୀର ସ୍ମୃତିକୁ ପାଥେୟ କରି ତାଙ୍କୁ ନବେବର୍ଷ ବଂଚିବାକୁ ପଡ଼ିବ ।

■■■

*ଅନୁବାଦ :* **ଗୁରୁଚରଣ ବେହେରା**

# ଲୁଓ ସୁ

ଲୁଓ ସୁ ଚୀନ୍‌ର ଜଣେ ସୁପରିଚିତା ଲେଖିକା । ପ୍ରାକ୍ ବିପ୍ଳବ ଚୀନ୍‌ର ସେ ଥିଲେ ବାମାବାଦର ଆଦ୍ୟ ପ୍ରବକ୍ତା । ସିଆଚୀନ୍ ରାଜ୍ୟରେ ତାଙ୍କର ଜନ୍ମ । ପାଠପଢ଼ା ପାଇଁ ୧୯୨୯ରେ ସେ ଫ୍ରାନ୍‌ସ ଯାତ୍ରା କରନ୍ତି । ସେଇଠି ତାଙ୍କର ପରିଚୟ ହୁଏ ସମକାଳୀନ ବିଶ୍ୱସାହିତ୍ୟର ମହାନ୍ ଲେଖକମାନଙ୍କ ସହ । ଚାରିବର୍ଷ ପରେ ସେ ନିଜ ଦେଶକୁ ଫେରି ଆସନ୍ତି । ପ୍ରଥମେ ସେ ରୋମାଁରୋଲା ଓ ଅନ୍ୟ କେତେକ ବିଦେଶୀ ଲେଖକମାନଙ୍କ ରଚନାକୁ ଚୀନ୍ ଭାଷାକୁ ଅନୁବାଦ କରନ୍ତି । ତାଙ୍କର ପ୍ରଥମ ମୌଳିକ ରଚନା 'ଟ୍ୱାଇସ୍ ମ୍ୟାରେଡ୍ ଓମ୍ୟାନ୍' ଉପନ୍ୟାସ ୧୯୩୬ରେ ପ୍ରକାଶିତ ହୋଇ ଖୁବ୍ ଲୋକପ୍ରିୟ ହୋଇଥିଲା । ବିଂଶ ଶତାବ୍ଦୀର ଆଦ୍ୟ ପାଦରେ ଚୀନ୍ ଭଳି ଏକ କୃଷିଭିତ୍ତିକ ସାମନ୍ତବାଦୀ ସମାଜରେ ନାରୀର ସ୍ଥିତି, ତା'ର ଭାଗ୍ୟ, ଯନ୍ତ୍ରଣା, ପୁଣି ସ୍ୱାଧୀନତା– ଏସବୁକୁ ନେଇ ତାଙ୍କ କାହାଣୀ ସବୁ ଗଢ଼ି ଉଠିଛି । ୧୯୩୭ ମସିହାରେ ଲବଣ ଶିଳ୍ପରେ କାମ କରୁଥିବା ଶ୍ରମିକମାନଙ୍କ ଜୀବନକୁ ଆଧାର କରି ଗୋଟିଏ ଉପନ୍ୟାସ ଆରମ୍ଭ କରିଥିଲେ । ଦୁର୍ଭାଗ୍ୟ ବଶତଃ କିଛି ଦିନ ପରେ ଏକ ପ୍ରସବକାଳୀନ ଯନ୍ତ୍ରଣା ସମୟରେ ତାଙ୍କର ମୃତ୍ୟୁ ଘଟିଥିଲା । ନାରୀ ଜୀବନ, ତା'ର ଅନଗ୍ରସରତା; ପୁଣି ସବୁ ଦୁର୍ଭାଗ୍ୟ ଭିତରେ ସ୍ୱାଧୀନଭାବେ ବଂଚିବାର ଆକର୍ଷଣ – ଏହା ହିଁ ତାଙ୍କ କାହାଣୀର ମୂଳ କଥା । ତାଙ୍କ ଲିଖିତ 'ଅଣ୍ଟ ଲିଉ'ର ଓଡ଼ିଆ ଭାଷାନ୍ତର – ଲିଉ ମାଉସୀ ।

# ଲିଉ ମାଉସୀ

ସେଦିନ ମୋ ନିଦ ଭାଙ୍ଗିଗଲା, ଗାଈଆଳ ପିଲା ପଡ଼ିଆ ଉପରକୁ ଗାଈ ଅଡ଼ାଇ ନେବାବେଳେ ବୋଲୁଥିବା ଗୀତରେ ନୁହେଁ, ବା ଆମ ଘରର ଜଣେ କାଲାଲୋକ ଯେକି ମୋ ମା'କୁ ସବୁବେଳେ ବଡ଼ପାଟିରେ କଥା କୁହେ, ତା' ପାଟିରେ ବି ନୁହେଁ । ଏହା ଥିଲା ଆଶ୍ଚର୍ଯ୍ୟଜନକ ଅଜଣା ସ୍ୱରଟିଏ ।

'କ'ଣ ସିଏ ଏଡ଼େ ବଡ଼ ହୋଇ ଗଲାଣି ? ତାକୁ ନିଦରୁ ଉଠା ।'

ମୁଁ ବିରକ୍ତ ହୋଇ ମୋ କୋଠରୀ ଭିତରେ କିଏ ପାଟି କରୁଛି ବୋଲି ଦେଖିବାକୁ ଆଖି ଖୋଲିଲି । ମଇଳା ଲୁଗା ପିନ୍ଧି ମଧ୍ୟବୟସ୍କା ସ୍ତ୍ରୀ ଲୋକଟିଏ ମୋ ବିଛଣା କଡ଼ରେ ଠିଆ ହୋଇଥିଲା । ତା'ର ଚେପ୍‌ଟା ମୁହଁରେ ବସନ୍ତର ଗାଢ଼ ଦାଗ । ମୁଣ୍ଡରେ ଗୋଛାଏ ବାଳ । ଓଠରେ ଭୟମିଶା ପାକୁଆ ହସ ।

ମୁଁ ଭାବିଲି, ଏଇ ଅନାକର୍ଷଣୀୟ ଅସୁନ୍ଦର ମୁହଁଟିକୁ ମୁଁ ଦେଖିଛି । ମାତ୍ର ସେ କିଏ ମୁଁ ଜାଣିପାରିଲି ନାହିଁ ।

ମୁଁ ନୀରବରେ ତାକୁ ଚାହିଁ ରହି ମୋ ସ୍ମୃତିକୁ ଉଖାରୁଥିଲି ।

'ମୁଁ ପରା ଲିଉ ମାଉସୀ... ମୁଁ ଜାଣିଛି ତମେ ମାଉସୀକୁ ଭୁଲି ଯାଇଛ ।' ସେ କହିଲା । ସେ ଯେମିତି ମୋ ଭାବନାକୁ ପଢ଼ି ପାରୁଥିଲା ।

'ଆଠବର୍ଷ ତଳେ ମୁଁ ତମକୁ ଦେଖିଥିଲି । ତମେ ଏତେ ବଡ଼ ହୋଇଗଲଣି । ମୁଁ ଯଦି ତମକୁ ରାସ୍ତାରେ ଦେଖିଥାନ୍ତି, ତେବେ ଆଦୌ ଚିହ୍ନି ପାରି ନଥାନ୍ତି ।'

'କ'ଣ ? ତୁ ଲିଉ ମାଉସୀ ? ପିଲାଦିନେ ଯିଏ ମୋର ସବୁ ଯତ୍ନ ନେଉଥିଲା !'

ମୁଁ ବିଛଣାରୁ ତଳକୁ ଡେଇଁ ପଡ଼ିଲି । ମୋ ମୁହଁ ଉତ୍ତେଜନାରେ ଲାଲ୍ ପଡ଼ି ଯାଇଥିଲା ।

ପିଲାଙ୍କର ଅନେକ ଛୋଟ ଛୋଟ ଘଟଣା ମନେରହେ । କିନ୍ତୁ ଯାହା ମନେ ରଖିବା ଉଚିତ, ତାହା ସେମାନେ ଭୁଲି ଯାଆନ୍ତି । ମୋତେ ଏକଦା ଅତ୍ୟନ୍ତ ସ୍ନେହ କରୁଥିବା ଏଇ ସ୍ତ୍ରୀ ଲୋକଟିକୁ ମୁଁ କିପରି ଭୁଲିଗଲି ? ମୁଁ କି କୃତଘ୍ନ !

ମୁଁ ତା' ପାଖକୁ ମାଡ଼ିଯିବା ମାତ୍ରେ ସେ ପଛକୁ ଘୁଞ୍ଚିଗଲା । ତା' ପଛରେ ଟେବୁଲ୍‌ଟିଏ ପଡ଼ିଥିଲା । ସପ୍ତାହ ଶେଷରେ ଯେତେବେଳେ ମୁଁ ଘରକୁ ଫେରେ, ସେଇ

ଟେବୁଲ୍ ଉପରେ ହିଁ ପାଠ ପଢୁଥିଲି । ସେ ତା' ଉପରେ ଆଉଜି ପଡ଼ିବାରୁ ଟେବୁଲ୍ ଉପରେ ଥିବା ଖରାଦିନିଆ ଡାଇସିଫୁଲ ଭର୍ତ୍ତି କୁଣ୍ଡଟି ଢଳି ପଡ଼ିଲା । ସେ କୁଣ୍ଡ ସଜାଡ଼ିବାକୁ ଗଲାବେଳେ ମୁଁ ସେଥିପାଇଁ ବ୍ୟସ୍ତ ନ ହେବାକୁ ତାକୁ କହିଲି ।

'ତୁ !...'

ତା' କାମ ସହଜ କରିବା ଉଦ୍ଦେଶ୍ୟରେ ମୁଁ କିଛି କହିବାକୁ ଚାହୁଁଥିଲି । କିନ୍ତୁ ମୁଁ କିଛି ଠିକ୍ କରିପାରୁ ନଥିଲି । 'ତୁ ସବୁବେଳେ ଏମିତି' ବା 'ତୁ ଆଗଭଳି ଆଉ ନାହୁଁ', କ'ଣ କହିବି ମୁଁ ଭାବି ପାରୁ ନଥିଲି ।

ହଁ, ସେ ନିଶ୍ଚିତ ଭାବେ ବଦଳି ଯାଇଥିଲା । କେବଳ ମୋ ବାପା, ମା'ଙ୍କ ଉପସ୍ଥିତି ତାକୁ ଅସ୍ୱସ୍ତିକର ଲାଗେ । ମୋ ଆଗରେ ସେ କାହିଁକି ଏଭଳି ବ୍ୟବହାର କରିବ ? ମୁଁ କ'ଣ ତା' ପାଇଁ ସେଇ ଛୋଟ ଝିଅଟିଏ ନୁହେଁ, ଯାହାକୁ ଏକଦା ସେ ଏତେ ସ୍ନେହ କରୁଥିଲା ଓ ଯାହାର ଏତେ ଯତ୍ନ ନେଉଥିଲା ? ତଥାପି ମୁଁ ଜାଣେ ଯେ ସେ ଯଦି ଗୋଟିଏ ଷ୍ଟୁଲ୍ ଉପରେ ବସି ମୋତେ କୋଳରେ ଧରି ଗୀତ ବୋଲିବାକୁ କହିଥାନ୍ତା ବା ରକ୍ତ ଜମାଟ ବାନ୍ଧିବା ଭଳି ଗପ, ଯାହା ମା' ତାକୁ ଶୁଣାଇବାକୁ ମନା କରନ୍ତି, ଶୁଣାଇବାକୁ କହିଥାନ୍ତା, ତେବେ ମୁଁ ନିଶ୍ଚୟ ବିନା ଦ୍ୱିଧାରେ ତାହା କରିବାକୁ ମନା କରି ଦେଇଥାନ୍ତି ।

ତାକୁ ଦୋଷ ଦେଇ ହେବନି । ମୋତେ ମଧ୍ୟ । ସମୟ ଓ ଘୃଣିତ ଚଳଣୀ ଆମ ଭିତରେ ଏକ ବିରାଟ ବ୍ୟବଧାନ ସୃଷ୍ଟି କରି ସାରିଥିଲା ।

ଦୀର୍ଘ ନୀରବତା ଭିତରେ ପରସ୍ପରକୁ ଚାହିଁ ରହିବାଟା ଖୁବ୍ ଅଡୁଆ ଲାଗୁଥିଲା । ମୁଁ ଭାବୁଥିଲି ମୁଁ କିଛି କଥା ଆରମ୍ଭ କରିବି, ଏହି ସମୟରେ ମା'ର ଉପସ୍ଥିତି ମୋତେ ଏ ପ୍ରକାର ପରିସ୍ଥିତିରୁ ରକ୍ଷା କରିଦେଲା ।

ସେଦିନ ମା' ଖୁବ୍ ଭଲ ମିଜାସ୍‌ରେ ଥିଲା ଓ ମୋ କୋଠରୀ ଭିତରକୁ ପଶିବାବେଳେ ମୁରକି ମୁରକି ହସୁଥିଲା ।

'ତୁ କେମିତିକା ପିଲା – ଲିଉକୁ କ'ଣ  ବସିବାକୁ କହୁନୁ ?'

ସେତେବେଳେ ପର୍ଯ୍ୟନ୍ତ ମୁଁ ଭାବିପାରି ନଥିଲି ଯେ ମୁଁ ଖଟ ଉପରେ ବସିଛି ଆଉ ଲିଉ ଘର ମଝିରେ ଠିଆ ହୋଇଛି । 'ଦେଖ, ସେ ମୋଠୁଁ କି ଡେଙ୍ଗୀ ହୋଇଗଲାଣି ।' ମା' ମୋ ଦୁଇଟି ବେଣୀର ଗଣ୍ଠିକୁ ଦେଖାଇ କହିଲେ, 'ଏମିତି ଚୁଟି ରଖିବା ସ୍କୁଲ୍ ପିଲାଙ୍କର ଗୋଟିଏ ନିଶା, ଅବଶ୍ୟ ସେମାନେ ଏମିତି କେଶ ରଖି ଖୁବ୍ ସୁନ୍ଦର ଦେଖାଯାନ୍ତି । ନୁହେଁ ?' ମା' କହି ଚାଲିଥିଲା ।

ଲିଉ ଏବେ ବି ଭୁଲି ନଥିଲା ଯେ ମା' ଯାହା କହିବେ ସେ କେବଳ ସେଥିରେ ମୁଣ୍ଡ ଟୁଙ୍ଗାରିବ । କିନ୍ତୁ ସେଦିନ ମା' କ'ଣ କହୁଥିଲେ ସେକଥା ସେ ବୋଧହୁଏ

ଶୁଣୁନଥିଲା । ସେ କେବଳ ମୋ ତାଳୁରୁ ତଳିପା ପର୍ଯ୍ୟନ୍ତ ଚାହୁଁଥିଲା । ମୋ ଭିତରେ ତା'ର ଆଠବର୍ଷ ତଳର ସେଇ ଛୋଟ ଝିଅଟିର ସତ୍ତା ଅଛି କି ନାହିଁ ସେ ଖୋଜୁଥିଲା ।

'ଏବେ ତମେ କେହି କାହାକୁ ଜାଣନା ।' ମା' ଲିଉର ଚାହାଣୀ ଦେଖି ହସିଲେ । 'ତମ ଭିତରୁ ଜଣେ ବଡ଼ ହେଲାଣି ଆଉ ଜଣେ ବୁଢ଼ୀ ହେଉଛି । ସମୟ କେତେ ଶୀଘ୍ର ଯାଉଛି ।'

ତା'ପରେ ସେ ମୋତେ କହିଲା, 'ତୋର ଖୁସି ହେବା କଥା । କାରଣ ତୁ କେବେ ଆଶା କରିନଥିବୁ ଯେ ଲିଉ ଆମର ଏ ପାହାଡ଼ଘେରା ଉପତ୍ୟକା ଭିତରକୁ ଆସିବ । ତାକୁ ଆମକୁ ଖୋଜି ପାଇବାକୁ ବହୁତ ସମୟ ଲାଗିଥିବ । ତୋର ମନେ ଅଛି, ଯେଉଁଦିନ ମୁଁ ତାକୁ ଖୁବ୍ ଗାଳି ଦେଇଥିଲି ? ସେଦିନ ତୋ ପାଇଁ ସେ ଗୁଡ଼ାଏ ପାଣିଚଣା ଆଉ ପଦ୍ମମୂଳ ଆଣିଥିଲା । ମୁଁ ତାକୁ ଘରୁ ତଡ଼ି ଦେଇଥିଲି, କାରଣ ସେ ଖୁବ୍ ମଦ ପିଉଥିଲା ।'

ମା'ଙ୍କର ଏଭଳି ସିଧା ସିଧା କଥା ମୋତେ ଅବାକ୍ କରିଦେଲା । ପାଣିଚଣା ଆଉ ପଦ୍ମମୂଳ ନାଁ ଶୁଣି କେମିତି ଲାଗିଲା । ମୋତେ ଲକ୍ଷ୍ୟ କରୁଥିବା ଦୁଇଟି ଆଖିକୁ ଏଡ଼େଇ ଯିବାକୁ ମୁଁ ଚେଷ୍ଟା କରୁଥିଲି ।

ଦମକାଏ ପବନରେ ତାଳପତ୍ର ସବୁ ମୋ ଝର୍କାରେ ପିଟି ହେଉଥିଲା । ମୁଁ ଗୋଟିଏ ପତ୍ରକୁ ଟାଣି ଟୁକୁରା କରି ଘର ଚଟାଣ ଉପରେ ପକାଇଲି ।

ହଠାତ୍ ମୋ ମନରେ ଗୋଟିଏ ପ୍ରଶ୍ନ ଉଠିଲା । 'ତୁ କେମିତି ଜାଣିଲୁ ଯେ ଆମେ ଆସି ଏଠି ରହୁଛୁ ?'

'ମୁଁ ପଚାରି ବୁଝିଲି । ତମେ ତ ଏ ଜାଗା ଛାଡ଼ି ଯାଇନ । ତେଣୁ ତୁମ ଘର ପାଇବାରେ କିଛି କଷ୍ଟ ହେଲାନି ।'

ସେ ତଥାପି ଅତ୍ୟନ୍ତ ପ୍ରଗଲ୍‌ଭା ଓ ବୁଦ୍ଧିମତୀ ଥିଲା ।

ମୁଁ ତାକୁ ଅଧିକ ପ୍ରଶ୍ନ ପଚାରିବାକୁ ଯାଉଥିଲି । ଏତିକିବେଳେ ମା' ମତେ ଲିଉ ପାଇଁ ମଦ ବୋତଲଟା ଆଣିବାକୁ ପଠେଇଲେ ।

'ମୁଁ ଜାଣେ ଏଇଟା ତତେ ସବୁଠୁଁ ଭଲ ଲାଗେ । ଯା ରୋଷେଇ ଘରେ ଖାଇଦେବୁ ।' ମା' କହିଲେ । 'ଏଇଟା ଭଲ ଭାବରେ ରନ୍ଧା ହୋଇଛି । ସବୁ ପିଇବୁନି । କିଛି ରଖିଥିବୁ । ଘରକୁ ନେଇ ତୁ ଓ ତୋର ସ୍ୱାମୀ ମିଶି ପିଇବ ।'

ଲିଉ ଚାଲିଗଲା ପରେ ମା' ମୋତେ କହିଲେ ଯେ ଲିଉ ଯାହାକୁ ବାହା ହୋଇଛି ତା'ର ପାହାଡ଼ ଉପରେ ଖଣ୍ଡିଏ ଜମି ଅଛି; ସେ ମଧ୍ୟ ପାଲିଙ୍କି ବୁହେ । ଲିଉ ଏବେ କେଉଁଠି ରହୁଛି ମା' ଜାଣି ନଥିଲେ । ତଥାପି ଏଇ ଭାଗ୍ୟହୀନ ସ୍ତ୍ରୀ ଲୋକଟି ପାଇଁ ତାଙ୍କର ଥିଲା ଅସରନ୍ତି ଅନୁକମ୍ପା ।

ଲିଉର ଅତୀତ ଜୀବନ ବିଷୟରେ ମୁଁ ଖୁବ୍ ଅଳ୍ପ କଥା ଜାଣିଥିଲି । ଏବେ ମା' ତା ବିଷୟରେ ସବୁକଥା ଆଉଥରେ କହିଲା ।

ପନ୍ଦର ବର୍ଷ ତଳେ ଲିଉକୁ ଜଣେ ତା' ଘରୁ କୌଶଳରେ ନେଇ ଆସି ଜଣେ ଧନୀ ଲୋକକୁ ଚାକରାଣୀ ଭାବେ ବିକ୍ରି କରିଦେଲା । ପ୍ରାୟ ଚାଳିଶି ବର୍ଷ ବୟସ୍କ ତା' ମାଲିକ ଦିନେ ତାକୁ ପ୍ରଚୁର ମଦ ପେଇ ଧର୍ଷଣ କରିଥିଲା । ଯେତେବେଳେ ସେ ଗର୍ଭବତୀ ବୋଲି ଜଣା ପଡ଼ିଲା, ସେତେବେଳେ ସେ ଜମିଦାର ସିଂହଦ୍ୱାର ବାଟେ ତାକୁ ଧକ୍କା ମାରି ଘରୁ ତଡ଼ିଦେଲା । ଗୋପନରେ ରାସ୍ତା କଡ଼ରେ ତା'ର ପିଲାଟିଏ ଜନ୍ମ ହେଲା । ମାତ୍ର ଜନ୍ମ ହେବାର ତିନିଦିନ ପରେ ପିଲାଟି ମରି ଯାଇଥିଲା । ଜଣେ ସହୃଦୟ ମେହେନ୍ତର ମୃର୍ଦ୍ଧାରଟିକୁ ଗୋଟିଏ ଛିଣ୍ଡା ସପରେ ଗୁଡ଼ାଇ ପୋତି ଦେଇଥିଲା । ତା'ପରେ ସେ ଲୁଗା ସିଲେଇ କରି, ବାସନ ମାଜି ବା ସହରତଳି ଅଂଚଳରେ ଭିକ ମାଗି ନିଜ ପେଟ ପୋଷୁଥିଲା । ବେଳେ ବେଳେ ସେ ଗଳି ଗଳି ବୁଲି ଜାଉ ବିକେ । ଶେଷରେ ଆମେ ତାକୁ ଚାକରାଣୀ କରି ଘରକୁ ଅଣିଲୁ । ଏହା ତା' ପାଇଁ ବଡ଼ ସୁଯୋଗଟିଏ ଥିଲା । ତା' ପାଇଁ ଜୀବନ କେଭେ଼ ଆନନ୍ଦଦାୟକ ହୋଇ ନଥିବ । ଯଦି ସେ ମଦ ପ୍ରତି ଅତ୍ୟଧିକ ଆସକ୍ତ ହୋଇନଥାନ୍ତା, ତେବେ ମା' ତାକୁ କେବେ ଘରୁ ବାହାର କରି ନଥାନ୍ତେ । ମଦ ପ୍ରତି ଅତ୍ୟଧିକ ଆସକ୍ତି ହିଁ ଥିଲା ତା'ର ସବୁଠୁଁ ବଡ଼ ଦୁର୍ବଳତା । ତଥାପି ମୋ ମା' ଥିଲେ ଖୁବ୍ ଦୟାଶୀଳା । ଆଠବର୍ଷ ତଳେ ଲିଉ ଯେତେବେଳେ ଆମକୁ ଛାଡ଼ି ଚାଲିଗଲା, ସେଦିନ କଥା ଏବେ ବି ମୋର ମନେ ପଡ଼ିଯାଏ ।

ସେଦିନ ଆଜିଭଳି ଖରାଦିନ ଥିଲା । ଦୂରରୁ ଘଡ଼ଘଡ଼ି ଗର୍ଜନ ଶୁଭୁଥିଲା । ଜୁଡାସ୍ ଗଛ ତଳେ ହଳଦିଆ ଆଉ କଳା ପିମ୍ପୁଡ଼ିମାନଙ୍କର ଯୁଦ୍ଧ ମୁଁ ଦେଖୁଥିଲି । ବାଉଁଶ କବାଟ ପଛପଟୁ ମା'ର କ୍ରୋଧିତ କଣ୍ଠସ୍ୱର ଶୁଭୁଥିଲା । ସେ ଆଉ ଜଣେ ସ୍ତ୍ରୀ ଲୋକ ସହ କଥାବାର୍ତ୍ତା କରୁଥିଲା ।

ଏତିକିବେଳେ ଲିଉ ଫାଟକ ଖୋଲି ଭିତରକୁ ଆସିଲା । ତାକୁ ଦେଖିଲେ ଜଣା ପଡୁଥିଲା ସେ ଖୁବ୍ ପିଇଛି । ସେ ହାତରେ ଦୁଇଟି ଧଳା ପଦ୍ମମୂଳ ଓ ପଦ୍ମପତ୍ରରେ ଗୁଡ଼ା ପୁଟୁଳାଟିଏ ଧରିଥିଲା । ତା' କାନ୍ଧରେ ଝୁଲୁଥିବା ମାଠିଆରେ ଚାଉଳ ରନ୍ଧା ମଦ ଥିଲା ।

ମୋ ହାତକୁ ସେ ପୁଟୁଳାଟି ବଢ଼େଇ ଦେଇ କହିଲା, 'ମୁଁ ତୋ ପାଇଁ ବଢ଼ିଆ ଖାଇବା ଜିନିଷ ଆଣିଛି । ତୁ ଏ ପାଣିଚଣା ଖାଉଥା, ମୁଁ ପଦ୍ମମୂଳ ଧୋଇ କାଟି ତୋ ପାଇଁ ଆଣୁଛି ।' ତା'ର ପାଣିଚଣା ଖାଇବାକୁ ମା' ମତେ ମନା କଲେ ।

ଯେତେବେଳେ ଲିଉ ମୋ ଖାଇବା ଜିନିଷ ଥାଳିଆରେ ଧରି ଫେରିଲା, ମା' ସଙ୍ଗରେ କଥାବାର୍ତ୍ତା କରୁଥିବା ସ୍ତ୍ରୀ ଲୋକଟି ତା' ଉପରକୁ ମାଡ଼ିଆସି ତା' କପାଳରେ

ଚାପୁଡ଼ାଏ ପକାଇଲା ଆଉ କହିଲା, 'ତୁ ଘରୁ ବାହାରି ଯା'। ତୋ ଜିନିଷପତ୍ର ବାନ୍ଧି ଆଉ କେଉଁଠି କାମ ଦେଖ। ତୋତେ ସାହାଯ୍ୟ କରିବାକୁ ମୁଁ ପାରୁ ପର୍ଯ୍ୟନ୍ତ ଚେଷ୍ଟା କଲି, କିନ୍ତୁ ତୁ ଭଲ ହେବାକୁ ଶିଖିଲୁ ନାହିଁ। ତୁ ସେଇ ହଳଦିଆ ଦୁର୍ଗନ୍ଧ ବାସୀମଦ ପିଇବା ଛାଡ଼ିଲୁ ନାହିଁ। ଏବେ ସେ ମଦ ତୁ ନିଜେ ମୁଣ୍ଡରେ ବୋହି ଏଠିକି ଆଣିଛୁ।'

ଲିଉ କିଛି କହିଲା ନାହିଁ। ମୋତେ କେବଳ ଆଣିଥିବା ପଦ୍ମମୂଳ ଖାଇବାକୁ ବାଧ୍ୟ କଲା।

ସେଇ ଥାଳିଆ ଧରିବା ଛଡ଼ା ମୋର ଅନ୍ୟବାଟ ନଥିଲା। ତାକୁ ମୁଁ ମା'କୁ ଦେଇଦେଲି। ମା' ଗୋଟିଏ ଧଳା ସିଲ୍କ ତକିଆ ଖୋଳ ଉପରେ ଏମ୍ବ୍ରୋୟଡୋରୀ ସିଲେଇ କରୁଥିଲେ। ଏଇ ଧଳା ଫୁଲଗୁଡ଼ିକ ଦେଖି ତାଙ୍କ ମୁହଁ ରାଗରେ ଆହୁରି ଫୁଲି ଯାଇଥିଲା। ସେ ମୋ ଥାଳିଆ ଧରି ଟେବୁଲ୍ ତଳକୁ ଫୋପାଡ଼ି ଦେଲେ। ତାଙ୍କ ଚାହାଣୀରେ ମୁଁ ଜଡ଼ ପାଲଟି ଯାଇଥିଲି। ଯଦିଓ ଏଥିପାଇଁ ସେ ମୋତେ ଦୋଷ ଦେଉନଥିଲେ, ତଥାପି ମୁଁ ଡରରେ ଥରୁଥିଲି। ମୁଁ ମୋ ଅପେକ୍ଷା ଲିଉ ପାଇଁ ଅଧିକ ଭୟ କରୁଥିଲି।

ରାତ୍ରି ଭୋଜନ ସମୟରେ ଲିଉ ଆମ ପାଇଁ ଅପେକ୍ଷା କରି ନ ଥିଲା ଓ ଆଶ୍ଚର୍ଯ୍ୟ କଥା ଯେ ମା' ମଧ୍ୟ ତାକୁ ଖାଇବାକୁ ଡକାଇ ପଠାଇଲା ନାହିଁ।

ମା' ଉଠି ଚାଲିଗଲା ପରେ ମୁଁ ରୋଷେଇ ଘର ଭିତରକୁ ଉଙ୍କିମାରି ଦେଖିଲି। କବାଟ ବାଡ଼େଇବାକୁ ମୋର ସାହସ ହେଲା ନାହିଁ। ଛୋଟ କଣାବାଟେ ଭିତରକୁ ଦେଖି ମୁଁ ଚାପା ଗଳାରେ ଲିଉକୁ ଡାକିଲି। ଘରର ସବୁ ଚାକରମାନେ ଗୋଟିଏ ଟେବୁଲ୍ ଚାରିପଟେ ବସିଥିଲେ। ସମସ୍ତଙ୍କ ଆଗରେ ଗୋଟିଏ ଲେଖାଏଁ ମଦଗ୍ଲାସ୍। ଲିଉ ଆଣିଥିବା ମଦହାଣ୍ଡିଟି ଟେବୁଲ୍ ମଝିରେ ଥୁଆ ହୋଇଥିଲା। ସମସ୍ତେ ଖୁସିରେ ଖାଉଥିଲେ ଓ ମଝିରେ ମଝିରେ ପିଉଥିଲେ। ସେମାନେ ଜାଣି ନଥିଲେ ଯେ କବାଟ ସେପଟେ ଛୋଟ ଝିଅଟିଏ ଠିଆ ହୋଇ ତାଙ୍କ ଭିତରୁ ଜଣକୁ କେତେ ସ୍ନେହରେ ଚାହିଁ ରହିଛି। ଲିଉର ମୁହଁ ଲାଲ୍ ପଡ଼ି ଯାଇଥିଲା। ତା ବ୍ଲାଉଜ୍‌ର ହାତ ଉପରକୁ ମୋଡ଼ି ହୋଇ ଯାଇଥାଏ ଓ ଉପରେ ପିନ୍ଧିଥିବା ଜାକେଟ୍‌ର ବୋତାମସବୁ ଖୋଲି ଯାଇଥାଏ। ତା ବେକ ପାଖ ଫାଙ୍କ ଦିଶୁଥାଏ। ସେଦିନ ପ୍ରଥମ ଥର ପାଇଁ ତାକୁ ମୁଁ ଅବ୍ୟବସ୍ଥିତ ଭାବରେ ଦେଖିଥିଲି ଓ ତା'ର ଏପରି ବ୍ୟବହାରରେ ମୁଁ ଆଶ୍ଚର୍ଯ୍ୟ ହୋଇ ଯାଇଥିଲି। ପରେ ମୁଁ ବୁଝି ପାରିଥିଲି ଯେ ଯେହେତୁ ସେ ଆଉ ଆମ ଘରେ ରହିବ ନାହିଁ, ସେ ଚିନ୍ତା କଲା ଯେ ସେ ନିଜ ଇଚ୍ଛା ଅନୁଯାୟୀ ବ୍ୟବହାର କରିବ। ଗତ ତିନିବର୍ଷ ଧରି ତାକୁ ମନେଇ ରଖିଥିବା ସବୁ ନିୟମକୁ ଧିକ୍! ଏଣୁ ଏ ଘରୁ ଯିବା ମୁହୂର୍ତ୍ତରେ ତାକୁ ଯାହା ଭଲ ଲାଗିବ ସେ କରିବ।

ଚାକରମାନଙ୍କ ଭିତରୁ ଜଣେ କହିଲା – 'ଆମ ଭିତରୁ ଜଣକୁ ତୋ ପାଇଁ ମାଲିକାଣୀଙ୍କୁ କହିବାକୁ କହ। ସେ ତୋତେ ରଖି ଦେଇ ପାରନ୍ତି।'

'କିଛି ଦରକାର ନାହିଁ । ଯେଉଁଠି ତମେ ଅଦରକାରୀ ସେଠି ଆଉ ରହିବାର ଅର୍ଥ କିଛି ହୁଏନା । ଚାକରମାନଙ୍କର ଗୋଟିଏ ପାଦ ସବୁବେଳେ ଘର ଭିତରେ ଆଉ ଗୋଟିଏ ପାଦ ଘର ବାହାରେ ଥାଏ । ଯଦି ସବୁ ଜିନିଷ ଠିକ୍ ଠାକ୍ ଚାଲେ, ତେବେ ତମେ ଘର ଭିତରେ ପଶି ନ ପାରିଲେ ଘର ବାହାରକୁ ଯିବାକୁ ପଡ଼େ ।'

'ମୁଁ ପେଟ ପାଇଁ ଆଗରୁ ଭିକ ମାଗିଛି । ଏଣୁ ଏବେ ମୋର ଡରିବାର କ'ଣ ଅଛି ? ହାତଗୋଡ଼ କାମ କରୁଥିବା ପର୍ଯ୍ୟନ୍ତ ତମେ ଯେଉଁଠି ହେଲେ ପେଟ ପୋଷି ପାରିବ । ଗୋଟିଏ ଘରୁ ବାହାରି ଗଲେ ଅନ୍ୟ ଘରେ କାମ କରିବ ।'

ମା' କାଳେ ମୋତେ ଦେଖିଦେବ ଏଇ ଡରରେ ମୁଁ ତରତରରେ ପଳାଇ ଯାଇ ତା' କୋର୍ଟ ତଳ ଧରି ଟାଣିଲି ।

'କ'ଣ ଦରକାର ?' ମା' ପଚାରିଲେ ।

'ମା', ଲିଉ ମାଉସୀ'... ମୁଁ ଦୁଇଥର କହିବା ପରେ ଯାଇ ସେ ବୁଝି ପାରିଲା ।

'ମୁଁ ତାକୁ କାଲି ଘରୁ ଚାଲିଯିବାକୁ କହିଛି । ଏମିତି ଗୋଟିଏ ସ୍ତ୍ରୀଲୋକର ଯତ୍ନରେ ମୁଁ ତୋତେ ଛାଡ଼ିବାକୁ ଚାହୁଁନି । ତୋ କଥା ବୁଝିବାକୁ ମୁଁ ଆଉ ଜଣେ ସ୍ତ୍ରୀଲୋକ ଯୋଗାଡ଼ କରିବି । ତା'ର ଗୋଟିଏ ଦୁର୍ବଳତା ହେଲା ଯେ ସେ ପିଏ । ମତେ ତା' ପାଇଁ ଦୁଃଖ ଲାଗୁଛି । ଯଦିଓ... । ଆମର ତା' ଉପରେ ଯାହା ଟଙ୍କା ବାକି ଅଛି ସେ ସବୁ ମୁଁ ଛାଡ଼ିଦେବି । ତାକୁ ଯିବାବେଳେ ମୁଁ ମାସକର ଅଧିକ ଦରମା ଦେବି ଆଉ ହଳେ ଡ୍ରେସ୍ ବି ଦେବି ।'

ତା' ପରିଦିନ ମୁଁ ଉଠିଲା ବେଳକୁ ଲିଉ ଘର ଛାଡ଼ି ଚାଲିଗଲାଣି ।

ସେଦିନରୁ ଆଜକୁ ପ୍ରାୟ ଆଠବର୍ଷ ବିତିଗଲାଣି ।

ମୁଁ ସ୍ୱପ୍ନରେ ବି ଭାବି ନଥିଲି ଯେ ସେ ଆମକୁ ଆଉ ଦେଖା କରିବାକୁ ଆସିବ । ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ତା' ସହିତ ଖୁସି ବି ଲାଗିଲା ।

ଯଦି ତାକୁ ମା' ବାହାର କରି ଦେଇନଥାନ୍ତା, ତେବେ ସେ ଆଜି ଏତେ ମଇଳାଲୁଗା ପିନ୍ଧି ଏମିତି ମୁରକୁଟିଆ ଦେଖା ଯାଉନଥାନ୍ତା । ମୁଁ ଏଥିପାଇଁ ମା'କୁ ବି ସମ୍ପୂର୍ଣ୍ଣ ଦୋଷୀ କରି ପାରୁ ନଥିଲି । ମା' ତାକୁ ଆମ ଘରେ ରହିବାକୁ ଦେଇଥାନ୍ତା କି ?'

ଲିଉ ଖାଇସାରି ଫେରିବା ପରେ ମୁଁ ପଚାରିଲି, 'ତୁ ପେଟପୂରା ଖାଇଛୁ ତ ?'

'ବହୁତ ଭଲ ଲାଗିଲା । ପ୍ରାୟ ଦୁଇବର୍ଷ ହେବ ଧଳାଭାତ ଖାଇ ନଥିଲି ।'

'ତୋର ସବୁ ଭଲ ତ ?'

'କେମିତି ହେଲେ ଚଳିଯାଉଛି। ଭଲରେ ଚଳିବା ନ ଚଳିବାର କିଛି ଫରକ ନାହିଁ। ଭଲରେ ନ ଚଳିଲେ ବି ତମକୁ ବଂଚିବାକୁ ପଡ଼ିବ।

ମୁଁ କିଛି ସମୟ ନୀରବରେ ରହିଲି।

'ମୋ ପଚାରିବାର ଉଦ୍ଦେଶ୍ୟ ହେଲା ଯେ ତୁ ଦୁଇବେଳା ଠିକ୍‌ରେ ଖାଇବାକୁ ପାଉଛୁ ତ ?'

'ନା। ସେ ଯାହା ରୋଜଗାର କରି ଆଣେ ତା ପାଇଁ ନିଅଣ୍ଟ। ମୁଁ ଆମର ପାହାଡ଼ ଉପରେ ଥିବା ସେଇ ଜମି ଖଣ୍ଡିକରେ ଚଳେ। ପେଟ ପୋଷିବାକୁ ସବୁଦିନେ ଜଙ୍ଗଲରୁ ଜାଳେଣୀ କାଠ ସଂଗ୍ରହ କରେ। ଯେତେବେଳେ କାଠ ମିଳେନା ମୁଁ ମଜୁରୀ ଲାଗେ। ସତୁରୀ ଅଶି କାଟିଲ୍ ପର୍ଯ୍ୟନ୍ତ ଭାର ମୁଁ ବୋହିପାରେ।'

'ତୋ ସ୍ୱାମୀ ତୋ ପ୍ରତି ଭଲ ବ୍ୟବହାର କରେ ତ ?'

'ମନ୍ଦ ନୁହେଁ। ତମ ଘରୁ ବାହାରି ଯିବା ପର ଠାରୁ ମୁଁ ତିନିଥର ବାହା ହେଲିଣି। ସମସ୍ତେ ମତେ ବାଡ଼ାନ୍ତି। ମୁଁ ଯେତେବେଳେ ଦେଖିଲି ତା' ସଙ୍ଗରେ ଚଳିପାରିବି ନାହିଁ, ସେତେବେଳେ ଘରୁ ପଳାଇଯାଇ ବର୍ତ୍ତମାନର ଲୋକଟିକୁ ବାହା ହେଲି।'

'ଏ ଲୋକଟି କ'ଣ ତତେ ବାଡ଼ାଏ ?' ମୁଁ ଶିଘ୍ର ପଚାରିଲି।

'ତମେ କ'ଣ ଭାବୁଛ ? ସବୁ ପୁରୁଷ ତାଙ୍କ ସ୍ତ୍ରୀମାନଙ୍କୁ ବାଡ଼ାନ୍ତି।'ସେ ମୋ ଆଡ଼କୁ ଅନେଇ ଟିକେ ହସିଦେଲା ଯେମିତି ସେ କହିବାକୁ ଚାହୁଁଥିଲା, 'ତମ ବାପା କ'ଣ ତମ ମା'ଙ୍କୁ ବାଡ଼ାନ୍ତି ନାହିଁ ?'

ତା'ପରେ ସେ କହିଲା, 'ମୋ ପାଇଁ ଅସହ୍ୟ ବୋଧ ହେଲେ ବା ନିଜକୁ ସମ୍ଭାଳି ନ ପାରିଲେ ମୁଁ ସବୁବେଳେ ଛାଡ଼ି ପଳାଇ ଯାଇ ପାରିବି।'

ଅନ୍ଧାର ମାଡ଼ି ଆସୁଥିଲା। ସେ ଯିବାକୁ ବ୍ୟସ୍ତ ହୋଇ ପଡ଼ିଲା।

'ରାତି ହୋଇଗଲାଣି। ପୁଣି ବର୍ଷା ହେଲା ଭଳି ଜଣା ପଡୁଛି। ମୋତେ ପାଞ୍ଚ ଲିରୁ ଅଧିକ ବାଟ ଯିବାକୁ ପଡ଼ିବ। ମୁଁ ଘରକୁ ଫେରିଗଲେ ଦୁଇଟା କୁକୁଡ଼ାଛୁଆ ରଖି ବଢ଼େଇବି। ତମେ ଆଉ ମାଲିକାଣୀ ହେମନ୍ତ ଋତୁରେ ଥଣ୍ଡା ପଡ଼ିଲେ ଆମ ଘରକୁ ଖାଇବାକୁ ଆସ।' ତା'ପରେ ସେ ମୁଣ୍ଡ ହଲେଇ କହିଲା, 'ମୋ ଘର କୁକୁଡ଼ା ଭାଡ଼ିଠାରୁ ଅଧିକ ଭଲ ନୁହେଁ। ତମେ ତ ଆସିବନି।'

'ଆଉ ଟିକିଏ ରହ। ତତେ ମୋର ଆହୁରି ପଚାରିବାକୁ ଅଛି। ତୁ କ'ଣ ଏମିତି ରହିଥିବୁ ? କେଉଁଠି କାମଦାମ ଦେଖୁନୁ ?'

'କି କାମ ଦେଖିବି ? ତମ ପରିବାରରେ ବି ତ ମୋ' ଭଳି ଗୋଟିଏ ଭିକାରୁଣୀର ସ୍ଥାନ ନାହିଁ। ତା'ଛଡ଼ା ମୋର ବି ବଣୁଆ ଜନ୍ତୁଙ୍କ ଭଳି ବୁଲିବାରେ ଅଭ୍ୟାସ ହୋଇଗଲାଣି। ମୋ ହାତ ଆଉ କୌଣସି ସୂକ୍ଷ୍ମକାମ କଲା ଭଳି ଅବସ୍ଥାରେ ନାହିଁ।

ଏମିତି ଭଲରେ ଅଛି... ଜୀବନରେ ଯାହା ଘଟୁଛି ତାକୁ ଗ୍ରହଣ କରିନେବା ହିଁ ଭଲ । ଯାହା ହେଲେ ବି ମୁଁ ଭୋକରେ ମରିବିନି ।'

ମୋର ତାକୁ ଆଉ ଅଧିକ କିଛି ପଚାରିବାର ନଥିଲା । ମା' ତାକୁ ଥାଳିଏ ଧଳାଭାତ ଆଉ ବୋତଲରେ ରହିଥିବା ଅବଶିଷ୍ଟ ମଦ ଧରେଇ ଦେଇଥିଲା ।

କିଛି ଦିନ ପରେ ମୁଁ ପାଖ ସହରକୁ ପଢ଼ିବାକୁ ଚାଲିଗଲି । ଆମ ପାଇଁ ଯତ୍ନରେ ମୋଟା ସୋଟା କରି ବଢ଼େଇ ଥିବା କୁକୁଡ଼ା ଖାଇବାକୁ ମା' ତା' ଘରକୁ ଯାଇଥିଲା କି ନାହିଁ, ସେ ବିଷୟରେ ମୋତେ କିଛି କହି ନଥିଲା ।

ତା' ପରବର୍ଷ ଯେତେବେଳେ ମୁଁ ଘରକୁ ଫେରିଲି, ମୁଁ ଶୁଣିଲି– ଲିଉ ତା' ସ୍ୱାମୀକୁ ଛାଡ଼ି ପୁଣି କୁଆଡ଼େ ଚାଲିଯାଇଛି ! ସେ କେଉଁଠିକି ଗଲା ସେକଥା କେହି ଜାଣି ନଥିଲେ ।

ମୁଁ ବିଶ୍ୱାସ କରେ ଯେ ସେ ଏବେ ବି ବଂଚିଛି । ମୋ ଅନ୍ତର ଭିତରୁ ମୁଁ ତା'ର ମଙ୍ଗଳ ମନାସୁଛି, କାରଣ ଜୀବନ କ'ଣ ସେ ବୁଝେ ।

■■■

*ଅନୁବାଦ* **ସଂଗ୍ରାମ ଜେନା**